# ଆରିଷ୍ଟୋଟ୍ଲ

(ଖ୍ରୀ:ପୂ: ୩୮୪–୩୨୨)

ରବୀନ୍ଦ୍ର ପ୍ରସାଦ ପଣ୍ଡା





ଟାଇମ୍ ପାସ୍

# ଆରିଷ୍ଟୋଟ୍ଲ

(ଜିଜ୍ଞାସାର ବୟଃସନ୍ଧି)

ରଚନା : **ରବୀନ୍ଦ୍ରପ୍ରସାଦ ପଣ୍ଡା**

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଏ/୯, ଭୌମ ନଗର, ୟୁନିଟ୍- ୪, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨୦୦୯



ମୁଦ୍ରଣ
**ଦିବ୍ୟ ମୁଦ୍ରଣୀ**
୫୮/୬୦, ଦିବ୍ୟ ବିହାର, ସାମନ୍ତରାପୁର
ଭୁବନେଶ୍ୱର-୨
ମୂଲ୍ୟ – ପଞ୍ଚସ୍ତରୀ ଟଙ୍କା ମାତ୍ର

# Aristotle

(Adolescence of Inquiry)

by

**RABEENDRA PRASAD PANDA**

Published by
**LARK BOOKS**
Subarnarekha Chambers
A/9, Bhouma Nagar
Unit-4, Bhubaneswar

First Edition ■ 2009



Printed by : ***DIVYA MUDRANI***
58/60, Divya Vihar, Samantarapur,Bhubaneswar-2
Phone : 0674-2340136

Rupees Seventy five only

ISBN-81-7375-167-6

The Philosophers have only *interpreted* the world in various ways; the point is to change it.

***- Karl marx***

ସ୍ୱତନ୍ତ୍ର ପ୍ରଦେଶ ହେବାକୁ ଯାଉଛି ଯେତେବେଳେ ଓଡ଼ିଶା, ବିଶ୍ୱକୁ ବଦଳେଇବା ଭଳି ଅଜବ କାମକୁ ଅଣ୍ଟାଭିଡ଼ି ବାହାରି ପଡ଼ିଥିଲେ ଯେଉଁ ତିନିଜଣ ଦୁଃସାହସୀ ଯୁବକ ଦର୍ଶନର ଏଇ ବିପରୀତ ପ୍ରରୋଚନାରେ, ସେଇ

ଭଗବତୀଚରଣ ପାଣିଗ୍ରାହୀ,
ପ୍ରାଣନାଥ ପଟ୍ଟନାୟକ, ଓ
ଗୁରୁଚରଣ ପଟ୍ଟନାୟକଙ୍କ

ସ୍ମୃତି ଉଦ୍ଦେଶ୍ୟରେ

# ସୂଚୀ

## ।। ଏକ ।।

ପ୍ଲାତୋଙ୍କ ଅକାଦେମିରେ ପାଠପଢ଼ିଚନ୍ତି ଏକାଦିକ୍ରମେ କୋଡ଼ିଏବର୍ଷ ମାତ୍ର ଆରିଷ୍ଟୋଟ୍ଲ୍ (ଖ୍ରୀଷ୍ଟପୂର୍ବ ୩୮୪-୩୨୨) ଆଥେନ୍ସର ଅଧିବାସୀ ନୁହେଁ; ଆସିଥିଲେ ମ୍ୟାସିଡନିଆରୁ । ବୟସ ସେତେବେଳକୁ ଅଠର । ପ୍ଲାତୋଙ୍କ ମୃତ୍ୟୁ (ଖ୍ରୀଷ୍ଟପୂର୍ବ ୩୪୮-୭) ପର୍ଯ୍ୟନ୍ତ ରହିଯାଇଚନ୍ତି ଆଥେନ୍ସରେ । ଲେଖାଲେଖି ଆରମ୍ଭକଲେ ଯେତେବେଳେ, *ମେଟାଫିଜିକ୍ସର* ପ୍ରଥମ ବାକ୍ୟରେ କହିଲେ : 'ଜାଣିବାକୁ ଆଗ୍ରହ ମଣିଷର ସହଜାତ' । କିନ୍ତୁ ଅନିତ୍ୟ ଏଇ ସଂସାରରେ ଏ ଆଗ୍ରହ, ସବୁ ମଣିଷଙ୍କୁ ଅଥୟକରେ କଣ ସମପରିମାଣରେ ? ପୁଣି, ସହଜାତ ସ୍ୱଭାବନେଇ ଯେକୌଣସି ପ୍ରାଣୀ ଜନ୍ମହୋଇଚି କହିଲେ, ସଠିକ୍‌ଭାବେ ବୁଝାଏ ଅବା କଣ ? ଯଦିବା କିଛି ବୁଝାଏ, ମଣିଷର ସ୍ୱଭାବ ଅନ୍ୟ ପ୍ରାଣୀଙ୍କ ପ୍ରତିତୁଳନାରେ ଅଲଗା ନା ଅଭିନ୍ନ ? ଏବଂ ଯଦି ଅଲଗା, ବୋଧଗମ୍ୟ ହୋଇପାରେ ତା ପକ୍ଷରେ କି ପ୍ରକାର ଜଗତ୍ ? ପ୍ରଣାଳୀବଦ୍ଧ ଅନୁଚିନ୍ତନ ଦ୍ୱାରା ସେ ଜଗତ୍‌କୁ ଉପଲବ୍ଧି କରିବାକୁ କି ଭାବରେ ପ୍ରସ୍ତୁତ କରିବ ନିଜକୁ ? ସ୍ଥୂଳତଃ, ଏଇ ପ୍ରଶ୍ନଗୁଡ଼ିକର ଉତ୍ତରଦେବାକୁ ଚେଷ୍ଟାକରିଚନ୍ତି ଆରିଷ୍ଟୋଟ୍ଲ୍; କିନ୍ତୁ ବିସ୍ମୃତ ହେଲେ ଚଳିବ ନାହିଁ ଯେ ଗ୍ରୀକ୍-ମନନର ସୃଷ୍ଟିଶୀଳ କାଳଖଣ୍ଡର ଅନ୍ତିମ ପର୍ବରେ ତାଙ୍କ ଆବିର୍ଭାବ; ଅଥଚ ମୃତ୍ୟୁରୁ ଦୁଇହଜାର ବର୍ଷ ପର୍ଯ୍ୟନ୍ତ ତାଙ୍କ ସମକକ୍ଷ କୋଉ ଭାବୁକଙ୍କୁ ପ୍ରସବ କରିପାରିନାହିଁ ପୃଥିବୀ । ମାତ୍ର ମହାମତି ବର୍‌ଟ୍ରାଣ୍ଡ୍ ରସେଲ୍‌ଙ୍କ ଅଭିମତରେ, ଅନବଚ୍ଛିନ୍ନ ଏ ଆଧିପତ୍ୟ, ଗୀର୍ଜାର ଅନୁଶାସନ ଭଳି, ବିଜ୍ଞାନ ଓ ଫିଲଜଫିର ଅଗ୍ରଗତିକୁ କରିଚି ପଦେପଦେ ପ୍ରତିହତ ।

ଆଥେନ୍ସ ଛାଡ଼ିବା ଉତାରୁ ଆରିଷ୍ଟୋଟ୍ଲ୍ କେତେବର୍ଷ ଅତିବାହିତ କରିଚନ୍ତି ଦେଶଭ୍ରମଣରେ ଏବଂ ଲେଉଟିଆସି ବିବାହକରିଚନ୍ତି ହର୍‌ମିଆସ୍ ନାମକ ପ୍ରଜାପୀଡ଼କ ନପୁଂସକର ଭଉଣୀ କିମ୍ବା ଝିଆରୀକୁ । ତହିଁଉତାରୁ ଖ୍ରୀଷ୍ଟପୂର୍ବ ୩୪୩ରେ ନିଯୁକ୍ତହୋଇଚନ୍ତି ମ୍ୟାସିଡନିଆର ଯୁବରାଜ ଆଲେକ୍‌ଜାଣ୍ଡାର୍‌ଙ୍କ ଗୃହଶିକ୍ଷକ । ଯୁବରାଜଙ୍କୁ ବୟସ ସେତେବେଳକୁ ତେର । ଷୋଳବର୍ଷରେ ପଡ଼ିବାରୁ ପିତା ଫିଲିପ୍ ତାଙ୍କୁ ପ୍ରାପ୍ତବୟସ୍କ ଘୋଷଣାକରି, ନିଜ ଅନୁପସ୍ଥିତିରେ ରାଜକାର୍ଯ୍ୟ ନିର୍ବାହକରିବାକୁ ଦାୟିତ୍ୱ ଦେଇଚନ୍ତି । ସ୍ୱାଭାବିକଭାବେ ତେଣୁ ଗୁରୁ-ଶିଷ୍ୟ ସମ୍ପର୍କ ବିଷୟରେ କୌତୂହଳ ଜନ୍ମିପାରେ; ମାତ୍ର

ଗାଲଗପ ଛଡ଼ା ଅଧିକ କିଛି ଜଣାପଡ଼ିନାହିଁ । ଚିଠିପତ୍ର ମିଳିଚି ଅବଶ୍ୟ; ସବୁଗୁଡ଼ାକ ସାବ୍ୟସ୍ତହୋଇଚି ଜାଲ୍ କିମ୍ବା ନ୍ୟସ୍ତସ୍ୱାର୍ଥଙ୍କ ଉଦ୍‌ଭାବନ । ତେବେ, ଆରିଷ୍ଟୋଟ୍ଲ ଓ ଆଲେକ୍‌ଜାଣ୍ଡାର୍, ଉଭୟଙ୍କ ସ୍ତାବକ ଏକମତ ଯେ, ଶିଷ୍ୟ ହୋଇଥିଲେ ବିଶେଷଭାବେ ପ୍ରଭାବିତ; ଏପରିକି, ହେଗ୍ଲ ମଧ ଭାବିଚନ୍ତି, ଫିଲଜଫିର ଫଳିତ ପ୍ରୟୋଗର ସାକ୍ଷ୍ୟବହନକରୁଚି ଗ୍ରୀକ୍‌ବୀରଙ୍କ ବ୍ୟାବହାରିକ କୃତ୍ୟସୂଚି । ଅଥଚ, ଭାଷ୍ୟକାର ବେନ୍ ଲେଖିଚନ୍ତି, It would be unfortunate if philosophy had no better testimonial to show for herself than the character of Alexander.... Arrogant, drunken, cruel, vindictive and grossly superstitious, he united the vices of a Highland chieftain to the frenzy of an Oriental despot । ବେନ୍ ହୁଏତ ଅଭ୍ରାନ୍ତ; କିନ୍ତୁ ଆଲେକ୍‌ଜାଣ୍ଡାର୍‌ଙ୍କ ଚରିତ୍ର ଅନୁରୂପ ହୋଇନଥିଲେ ହେଲେନୀୟ ସଭ୍ୟତାର ମହିମା ଧରାବକ୍ଷରୁ ପୋଛି ହୋଇଯାଇଥାନ୍ତା ଅବିଳମ୍ବେ । ଆରିଷ୍ଟୋଟ୍ଲଙ୍କ ସହିତ ସମ୍ପର୍କକୁ ଅତିରଞ୍ଜିତ କରିବା ଅନାବଶ୍ୟକ, କାହିଁକିନା, ରାଜପୁତ୍ର ଥିଲେ ଉଚ୍ଚାଭିଳାଷୀ ଓ ଆବେଗପ୍ରବଣ; ଏପରିକି, ବାପକୁ ବି ଖାତିର୍‌କରୁ ନଥିଲେ ଯୌବନରେ । ଏଭଳି ଛାତ୍ରର ବିଦ୍ୟାନୁରାଗ ଗଭୀରହେବା ଅପ୍ରତ୍ୟାଶିତ । ମାଷ୍ଟର୍ ପାଖରେ ନିୟମିତ ନବସିଲେ ଖେଚଡ଼ହେବ ବୋଲି ରାଜପୁରୀକୁ ବାପ ଡାକିଆଣିଥିଲେ ଦାର୍ଶନିକ, ବିଶେଷତଃ ଆରିଷ୍ଟୋଟ୍ଲଙ୍କ ପିତା ଥିଲେ ଯେହେତୁ ରାଜବୈଦ୍ୟ । ଛାତ୍ରକୁ ଅଗୋଚର ନୁହେଁ ଏକଥା । ତା ଛଡ଼ା, ଆରିଷ୍ଟୋଟ୍ଲଙ୍କ ଧାରଣା (ଦ୍ର. *ଏଥିକ୍ସ* ), କୌଣସି ରାଜ୍ୟର ପ୍ରଜାସଂଖ୍ୟା ଏକଲକ୍ଷରୁ ଅଧିକ ହେବା ଅସମୀଚୀନ, ଏବଂ ମଧପନ୍ଥାହିଁ ଶାସନର ଯଥାର୍ଥ ମାନଦଣ୍ଡ । ଛାତ୍ର କିନ୍ତୁ ସ୍ୱପ୍ନଦେଖୁଚି, ଦେଖଇ ନେତ୍ର ଯାହା ଚଉଦିଗର/ସେସବୁର ହେବି ମୁଁ ଏକାଧୀଶ୍ୱର । ଶିକ୍ଷକଙ୍କୁ ବିଦ୍ୱାନ୍ ଗଣିବ ଅବା କାହିଁକି ? ତେବେ ଏକଥା ମଧ ସତ ଯେ, ଆଥେନ୍ସ ପ୍ରବର୍ତ୍ତନକରିଥିଲା ଯୋଉ ସଭ୍ୟତା-ଭବ୍ୟତା, ମନନର ଆଭିଜାତ୍ୟ, ସାଂସ୍କୃତିକ ସଂଯମ, ଆଲେକ୍‌ଜାଣ୍ଡର୍ ସଂଭ୍ରମକରୁଥିଲେ ସେ ଉତ୍ତରାଧିକାରକୁ; ମାତ୍ର ସେଥିରେ ରହିଥିଲା ଅନ୍ତରିକତା ପରିବର୍ତ୍ତେ ଆତ୍ମମ୍ଭରିତା । କାହିଁକିନା, ମହାବୀର ଓ ତାଙ୍କ ସେନାଧକ୍ଷ ସବୁବେଳେ ଚେଷ୍ଟାକରିଚନ୍ତି ଦେଖାଇବାକୁ ଯେ ବାର୍‌ବାରିଆନ୍ (ଅଣଗ୍ରୀକ୍) ଙ୍କ ଅପେକ୍ଷା ସେମାନେ ସଭ୍ୟ ଓ ଶିକ୍ଷିତ । ହୋଇପାରେ ଉନ୍ନାସିକତା; କିନ୍ତୁ ସେ ଉନ୍ନାସିକତା ଆରିଷ୍ଟୋଟ୍ଲଙ୍କ ଠାରୁ ପ୍ରାପ୍ତ, ଶିକ୍ଷାରୁ ପ୍ରାପ୍ତ ନୁହେଁ ।

ବରଂ ଆଶ୍ଚର୍ଯ୍ୟହେବା କଥା, ଇଉରୋପ-ଆଫ୍ରିକା-ଏସିଆକୁ ପଦାନତ କରିଥିବା ଏଇ ଛାତ୍ର, ଆରିଷ୍ଟୋଟ୍ଲଙ୍କ ତତ୍ତ୍ୱଚର୍ଚ୍ଚାସବୁ ବିନ୍ଦୁମାତ୍ର ପ୍ରଭାବିତ କରିପାରିନାହିଁ । ରାଜନୀତି ବିଷୟରେ ଚିନ୍ତାକଲାବେଳେ ଆରିଷ୍ଟୋଟ୍ଲ ସମ୍ପୂର୍ଣ୍ଣ ବିସ୍ମୃତରହିଚନ୍ତି ଯେ ନଗର-ରାଷ୍ଟ୍ରର ଯୁଗ ସରିଯାଇଚି, ସେ ଜାଗା ଦଖଲକରିଚି ସାମ୍ରାଜ୍ୟ । ସମ୍ଭବତଃ ଶେଷାବଧି ଭାବିଚନ୍ତି

ତାଙ୍କର ଏଇ ଦିଗ୍‌ବିଜୟୀ ଛାତ୍ରଟି ସତକୁ ସତ ସ୍ଥୂଳବୁଦ୍ଧି, that idle and headstrong boy, who never could understand anything of philosophy। ସ୍ପଷ୍ଟତଃ, ଦୁହିଁଙ୍କ ଭବଜଗତ ଥିଲା ଜମିନ୍-ଆସ୍‌ମାନ୍। ଖ୍ରୀଷ୍ଟପୂର୍ବ ୩୨୩ରେ ବ୍ୟାବିଲୋନ୍‌ରେ ଅସୁସ୍ଥହୋଇ ମରିଚନ୍ତି ଆଲେକ୍‌ଜାଣ୍ଡର୍; କିନ୍ତୁ ୩୩୫ରୁ ୩୨୩ ଯାଏଁ ଆଥେନ୍ସରେ ରହିଯାଇଚନ୍ତି ଆରିଷ୍ଟୋଟ୍‌ଲ୍। ଏଇ ବାରବର୍ଷ ଭିତରେ ବସାଇଚନ୍ତି ନିଜ ବିଦ୍ୟାଳୟ ଏବଂ ଅଧିକାଂଶ ବହି ବି ଲେଖିଚନ୍ତି ସେଇ ଅବକାଶରେ। ଆଲେକ୍‌ଜାଣ୍ଡର୍‌ଙ୍କ ଦିଗ୍‌ବିଜୟ କି ଅକାଳମୃତ୍ୟୁ ତାଙ୍କୁ ବିବ୍ରତକରିନାହିଁ ତିଳେମାତ୍ର। ଆଲେକ୍‌ଜାଣ୍ଡର୍ ଗ୍ରୀକ୍‌ଜଗତରୁ ତିରୋହିତ ହେବା ସଙ୍ଗେ ସଙ୍ଗେ ଆଥେନ୍ସ କରିଚି ବିଦ୍ରୋହ, ଖାଲି ଆଲେକ୍‌ଜାଣ୍ଡର୍‌ଙ୍କ ବିରୋଧରେ ନୁହେଁ, ତାଙ୍କ ସହିତ ସଂପୃକ୍ତ ସକଳ ବ୍ୟକ୍ତି ହୋଇଚନ୍ତି ବିଦ୍ରୋହର ଶରବ୍ୟ। ଆରିଷ୍ଟୋଟ୍‌ଲ୍ ମଧ ଅଭିଯୁକ୍ତ ହୋଇଚନ୍ତି; ମାତ୍ର ଆଦିଗୁରୁ ସୋକ୍ରେଟିଜ୍‌ଙ୍କ ପଦାଙ୍କ ଅନୁସରଣ ନକରି, ମହାଜ୍ଞାନୀ ପଳାୟନ କରିଚନ୍ତି ଆଥେନ୍ସରୁ। ଅବିଳମ୍ବେ (ଖ୍ରୀଷ୍ଟପୂର୍ବ ୩୨୨) ତାଙ୍କୁ ମଧ ଡାକିନେଇଚି ମରଣ, ଆଲେକ୍‌ଜାଣ୍ଡର୍ ମରିବାର ଠିକ୍ ବର୍ଷକ ଉତାରୁ।

ଦାର୍ଶନିକ ଭାବରେ ପୂର୍ବସୂରୀଙ୍କ ଠାରୁ ଆରିଷ୍ଟୋଟ୍‌ଲ୍ ଏକେବାରେ ଅଲଗା; ଭାବଲେଶହୀନ ନିରାସକ୍ତ ବୃତ୍ତିଜୀବୀ; ଅନୁପ୍ରାଣିତ ପ୍ରଫେଟ୍ ନୁହେଁ। କାହିଁକିନା, ତାଙ୍କ ସମୟରୁ ପ୍ରଫେଟ୍‌ମାନଙ୍କ ଯୁଗ ସରିଯାଇ ଆରମ୍ଭହୋଇଛି ପ୍ରଫେସର୍‌ମାନଙ୍କ ଯୁଗ। ଯା କହିବେ, ବୁଝାଇ କହିବେ; ବକ୍ତବ୍ୟକୁ ନାନା ପ୍ରସ୍ଥ ଓ କ୍ରମରେ ସଜାଇ କହିବେ। କହିବାବେଳେ ଖଣ୍ଡନକରିବେ ପ୍ରଚଳିତ ଧାରଣା, ମିଶିବନାହିଁ ସେଥିରେ ପାନାସକ୍ତର ଅତ୍ୟୁତ୍‌ସାହ, ଆଲୋଚନାକୁ ଶୃଙ୍ଖଳିତ କରିବ ପେସାଦାରୀ ଦକ୍ଷତା ଓ ପର୍ଯ୍ୟବେକ୍ଷଣଲବ୍ଧ ତଥ୍ୟ। ମୁଗ୍ଧକରିବାକୁ ମନକରିବେନାହିଁ ଗୁରୁ ପ୍ଲାତୋଙ୍କ ଭଳି। ଏକମାତ୍ର ଆବେଦନ କାଣ୍ଡଜ୍ଞାନ ପ୍ରତି। ବରଂ ଭାବାବେଶରେ ଯଦି କୋଉଠି ଗଦ୍‌ଗଦ, ତା ସ୍ୱାଭାବିକ ପ୍ରବଣତା ନୁହେଁ, ପ୍ଲାତୋଙ୍କ ପାଖରୁ ପ୍ରାପ୍ତ ଶିକ୍ଷାର ଅବଶେଷ। ଆବେଗ ଯେମିତି ନାହିଁ, ଧର୍ମୀୟ ରହସ୍ୟମୟତା ମଧ ସେମିତି। ପୂର୍ବସୂରୀଙ୍କ ତ୍ରୁଟିବିଚ୍ୟୁତି ଥିଲା ସେମାନଙ୍କ ଯୌବନର ଦ୍ୟୁତିରେ ଉଜ୍ଜ୍ୱଳ, ଯୋଉ ଯୌବନ ଚାହିଁଚି ଅସମ୍ଭବକୁ କରିବ ସମ୍ଭବପର। ଅଥଚ ଆରିଷ୍ଟୋଟ୍‌ଲ୍ ଯୋଉଠି ବାଟହୁଡ଼ିଚନ୍ତି, ହୁଡ଼ିଚନ୍ତି ବୟସଦୋଷରୁ। ଅପରିପକ୍ୱତା କାରଣରୁ ନୁହେଁ। ଅଭ୍ୟସ୍ତ ସଂସ୍କାରରୁ ମୁକୁଳାଇ ପାରିନାହାନ୍ତି ମନକୁ। ବିଶ୍ଳେଷଣ କିନ୍ତୁ ଅନ୍ତର୍ଭେଦୀ, ଅନୁପୁଙ୍ଖ ପ୍ରଶସ୍ତ, ଯଦିଓ ବୃହଦ୍ କୋଉ ନିର୍ମାଣଥିଲା ସାଧ୍ୟାତୀତ। କାହିଁକିନା, ଚିନ୍ତାର ଭିତ୍ତି ମୌଳିକ ସ୍ୱଚ୍ଛତା ଉପରେ ଅଧିଷ୍ଠିତ ନୁହେଁ ଯେମିତି ନଚିକେତା-ସୁଲଭ ବୈଶ୍ୱାନର ସେମିତି ବାଟକଢ଼ାଇ ନେଇଯାଏନା ଆଗକୁ। ଅଥବା, ସିସିଫସ୍‌ର ଦାନବୀୟ ପ୍ରତିସ୍ପର୍ଦ୍ଧା।

ସେଥିପାଇଁ, ତାଙ୍କ ଅଧିବିଦ୍ୟା (ମେଟାଫିଜିକ୍ସ)କୁ କହିହେବ ପ୍ଲାତୋଙ୍କ 'ଥିୟରି ଅବ୍ ଆଇଡିଆଜ୍'ର ବିଗଳିତ ସଂସ୍କରଣ। କାଣ୍ଡଜ୍ଞାନ ଦ୍ୱାରା ବିଗଳିତ; ଫିଲ୍‌ଇଫି

ଦ୍ୱାରା ନୁହେଁ । 'ଆଇଡିଆ' ବିପକ୍ଷରେ ଯୋଉ ଯୁକ୍ତି ଦେଖାଇଚନ୍ତି, ତା ଅବଶ୍ୟ ସଙ୍ଗତ; କିନ୍ତୁ ସେଥିରୁ ଅଧିକାଂଶ ଆସିଚି ପ୍ଳାତୋଙ୍କ ପର୍‌ମେନିଡିକ୍ ଡାୟଲଗ୍‌ରୁ । ହେଲେସୁଦ୍ଧା, ଆରିଷ୍ଟୋଟ୍ଲ ଯୋଉ 'ତୃତୀୟ ମାନବ' ଆଇଡ଼ିଆର ଅବତାରଣା କରିଚନ୍ତି, ପ୍ଳାତୋଙ୍କ 'ଫର୍ମ' ଧାରଣା ଦେହରେ ଯୁକ୍ତକରୁଚି ଅଭିନବ ମାତ୍ରା । ଦର୍ଶନ ହେଉ କି ବିଜ୍ଞାନ, ନିର୍ଦ୍ଦିଷ୍ଟ ତଥ୍ୟକୁ ଭିତ୍ତିକରି ପ୍ରଚଳନକରେ ସର୍ବସାଧାରଣ ତତ୍ତ୍ୱ । ତତ୍ତ୍ୱ ତେଣୁ ବିମୂର୍ତ୍ତ ଯଦିଓ ତଥ୍ୟର ଭିତ୍ତି ପର୍ଯ୍ୟବ୍ୟକ୍ଷଣ । ପ୍ଳାତୋ କଳ୍ପନାକରିଛନ୍ତି ଏପରି ଏକ ସ୍ୱର୍ଗୀୟ କାରିଗର ଯିଏ ଜଗତର ସମସ୍ତ ସ୍ଥାବର-ଜଙ୍ଗମକୁ ଦେଇଚି ରୂପ, ଆକାର ବା 'ଫର୍ମ' । ଅର୍ଥାତ୍ ମଣିଷ ଯାହା ସୃଷ୍ଟିକରେ ବିବାକ୍ ସେହି ସ୍ୱର୍ଗୀୟ କାରିଗର ଦେଇଥିବା ରୂପର ଅକ୍ଷମ ଅନୁକରଣ । ତାହେଲେ, 'ଫର୍ମ' କଥାଟା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ, ବିମୂର୍ତ୍ତ-ଆଇଡ଼ିଆ । କାହିଁକିନା, ଖଟ ଆମେ ତିଆରିକରିଛୁଁ ସତ, ମାତ୍ର ଖଟ ବା ଶେଯ ଧାରଣାଟା ଆସିଛି ମନନରୁ, ଇନ୍ଦ୍ରିୟଗ୍ରାହ୍ୟ ତଥ୍ୟରୁ ନୁହେଁ । ବିମୂର୍ତ୍ତ ଧାରଣାଟା ସେଥିପାଇଁ ଦୁନିଆଯାକର ଶଯ୍ୟା ପ୍ରତି ପ୍ରଯୋଜ୍ୟ; ଅର୍ଥାତ୍ 'ୟୁନିଭର୍ସାଲ୍' ବା ନିଖିଳ; 'ଇଣ୍ଡିଭିଡୁଆଲ୍' ବା ନିର୍ଦ୍ଦିଷ୍ଟ ନୁହେଁ । ନିର୍ଦ୍ଦିଷ୍ଟ ଓ ନିଖିଳ ପ୍ରତ୍ୟୟ ସାଙ୍ଗକୁ ଆରିଷ୍ଟୋଟ୍ଲ ଯୋଡ଼ିଛନ୍ତି 'ତୃତୀୟ ମାନବ' ଆଇଡିଆ । ଅର୍ଥାତ୍, ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷର ଚିହ୍ନାୟନ 'ମାନବ' ହେଲେସୁଦ୍ଧା ମାନବ କହିଲେ ଯୋଉ ବିମୂର୍ତ୍ତ ଆଇଡିଆ ମନକୁ ଆସୁଛି, ତା ଏକ ସର୍ବସାଧାରଣ ଚିହ୍ନାୟନ । ମାତ୍ର ଆରିସ୍ତତ୍ଲଙ୍କ ଧାରଣା, ନିର୍ଦ୍ଦିଷ୍ଟ ଓ ନିଖିଳର ଅନ୍ୱୟ ବା ଇଉନିଟି ଆସୁଚି ତୃତୀୟ ଏକ ଅବବୋଧରୁ, କାହିଁକିନା, ଜୀବପିଣ୍ଡ (ମାନବ) ଓ ଆଇଡ଼ିଆ (ମାନବ) ଅଭିନ୍ନ ଅସ୍ତିତ୍ୱ ନୁହେଁ । ମଣିଷ ଯେହେତୁ ଏକ ଜୀବପିଣ୍ଡ, ମନୁଷ୍ୟେତର ପ୍ରାଣୀଜାତିଠାରୁ ଶରୀରଧର୍ମ ତାର ଅଲଗା ନୁହେଁ । ସେହି ବ୍ୟଞ୍ଜନାରେ ମଣିଷ ଅଂଶତଃ ପଶୁ, କିନ୍ତୁ ବିଜ୍ଞାନ ଦର୍ଶନ ପ୍ରଭୃତି ଚର୍ଚ୍ଚାକରେ ଯୋଉ ପ୍ରାଣୀପ୍ରଜାତି, ଅର୍ଥାତ୍ ଯାର ପ୍ରାଣଧାରଣ ସହିତ ମନନ ଚିନ୍ତନ ଓତଃପ୍ରୋତ, ସିଏ ଜଡ଼ପିଣ୍ଡ (=ମାନବ) ନୁହେଁ କି ବିମୂର୍ତ୍ତ ପ୍ରତ୍ୟୟ (=ମାନବ) ନୁହେଁ; ତୃତୀୟ ଏକ ସତ୍ତା । ସେଇ ତୃତୀୟ ସତ୍ତାକୁ ଚିହ୍ନାଇଦିଏ ଅନ୍ତର୍ନିହିତ 'ସବ୍‌ସ୍ଟାନ୍ସ' ।

'ସବ୍‌ସ୍ଟାନ୍ସ' କହିଲେ ସାଧାରଣତଃ ମନକୁ ଆସିବ 'ମଣିଷପଣିଆ', କାହିଁକି ନା, ମଣିଷ ଚରିତ୍ରରେ କି ଗୁଣାଗୁଣ ଆଦର୍ଶ ସ୍ଥାନୀୟ, ସେ ବିଷୟରେ କାଣ୍ଡଜ୍ଞାନ ସମ୍ପନ୍ନ ପ୍ରତ୍ୟେକ ଲୋକ ଆଶୈଶବ ଅବହିତ । ଆରିଷ୍ଟୋଟ୍ଲ ମାନିବେନାହିଁ, କାହିଁକି ନା, ପ୍ରତ୍ୟେକ ମଣିଷ ଜଗତରେ ଅନୁପମ, ଇଉନିକ୍ । ତାର ଦ୍ୱିତୀୟ କୋଉ ସଂସ୍କରଣ ଅଚିନ୍ତନୀୟ । 'ସବ୍‌ସ୍ଟାନ୍ସ' ରୂପକ ଗୁଣର ଶତକଡ଼ା ଶହେଭାଗ ତେଣୁ ମାନବ ପ୍ରଜାତିର ଅନ୍ୟ ସଦସ୍ୟଙ୍କ ସହିତ ସିଏ ଭାଗକରି ନିଏନା । ଇତର-ବିଶେଷ ରହିଯାଏ । ଅବଶ୍ୟ ପର୍ଯ୍ୟବେକ୍ଷଣର ପରିଣାମ; ଏଥିରୁ ବାହାରିଚି ଅଧିବିଦ୍ୟା । ବହୁସଂଖ୍ୟକ ଲୋକଙ୍କ ଗୁଣ ଧର୍ମ ଉଦ୍ଦେଶ୍ୟ ଇତ୍ୟାଦି ଯଦି ଏକାରକମ ହୁଏ, ପ୍ରେଡିକେଇଟ୍ ଗୁଡ଼ାକ ସୂଚନାକରିବ

ସାଦୃଶ୍ୟ । ସେ ସାଦୃଶ୍ୟ ଦେହବିଶିଷ୍ଟ କୋଉହେଲେ କର୍ତ୍ତା (ସବ୍‌ଜେକ୍ଟ)ର ପ୍ରେଡିକେଟ୍ ହୋଇପାରେନା, ନାମ-ରୂପ ସାଦୃଶ୍ୟ ଯେହେତୁ ଉଦ୍ଦେଶ୍ୟ-ବିଧେୟ ସାଦୃଶ୍ୟ ନୁହେଁ, ହୋଇପାରେନା । ସମ୍ବନ୍ଧଟା ତେଣୁ ସମ୍ପୂର୍ଣ୍ଣ ଭାବାତ୍ମକ; ଅର୍ଥାତ୍ ବିମୂର୍ତ୍ତ । ଏବଂ ବିମୂର୍ତ୍ତ ହୋଇଥିବାରୁ, ଇଣ୍ଡିଭିଡୁଆଲ୍ ନୁହେଁ, ଇଉନିଭର୍ସାଲ୍ । ଯୁକ୍ତିଟା ନିଚ୍ଛକ କାଣ୍ଡଜ୍ଞାନ ଯଦିଚ ନିର୍ଦ୍ଦୋଷ । କିନ୍ତୁ ଆରିଷ୍ଟୋଟ୍ଲ୍ ଏଥିରୁ କି ଆଧିବିଦ୍ୟାର ସନ୍ଧାନ ପାଇଲେ, ସ୍ପଷ୍ଟ କହିନାହାନ୍ତି । କହିନାହାନ୍ତି ବୋଲି, ସ୍ୱଚ୍ଛତାର ଅଭାବ ମଧ୍ୟଯୁଗରେ ନାନାଦି ବିତଣ୍ଡାର ଖୋରାକ୍ ହୋଇଚି ସଂଜ୍ଞାବାଦୀ ଓ ବାସ୍ତବବାଦୀ ଶିବିର ଭିତରେ, ସପ୍ତଦଶ ଶତକର ଗାଲିଲେୟଙ୍କ ମେଦିନୀଦୃଷ୍ଟି ଦର୍ଶନଚିନ୍ତାରୁ ମେଟାଫିଜିକ୍ସକୁ ନିଷ୍କାସିତ କରିଦେବା ପର୍ଯ୍ୟନ୍ତ । 'ମେଟାଫିଜିକ୍ସ' ଓଡ଼ିଆ ତର୍ଜମାରେ ଅଧିବିଦ୍ୟା ବା ପରାବିଦ୍ୟା ।

'ତୃତୀୟ ମାନବ' ଅବବୋଧ କାଣ୍ଡଜ୍ଞାନର ନାମାନ୍ତର ହେଲେସୁଦ୍ଧା, ଗଢ଼ଣରେ ଯଥେଷ୍ଟ ଜଟିଳ । କାହିଁକି ନା, ଲଜିକ୍ ବାହାରକରିଚନ୍ତି ଆରିଷ୍ଟୋଟ୍ଲ୍ ପ୍ରଥମ । ପ୍ଲାଟୋ ଯେ ଲଜିକ୍ ଜାଣିନଥିଲେ, ତା ନୁହେଁ; ମାତ୍ର କାଣ୍ଡଜ୍ଞାନ ସାଙ୍ଗରେ ତାଙ୍କ ଦର୍ଶନଚିନ୍ତାର ସମ୍ପର୍କ ଇଡ଼ା ଆଉ ଖଡ଼ା । ଅଥଚ ପ୍ଲାଟୋଙ୍କୁ ଆଦ୍ୟବିନ୍ଦୁ ନକଲେ ଆରିଷ୍ଟୋଟ୍ଲଙ୍କ ଅଧିବିଦ୍ୟା ମାଟି ପାଇବନାହିଁ ପାଦତଳେ, ଆବ୍‌ଷ୍ଟ୍ର୍ୟାକ୍ସନ୍ ଗୁଡ଼ାକ ଲାଗିବ ସତେଅବା ପଣ୍ଡିତମନ୍ୟର ବାଗାଡ଼ମ୍ବର, ଅବୋଧ ପରିଭାଷାରେ ପ୍ଲାଟୋଙ୍କ ଅନୁଧାବନ ମାତ୍ର ! ରଚନାର ନିର୍ଦ୍ଦିଷ୍ଟ କୋଉ ଅନୁଚ୍ଛେଦକୁ ନିଦର୍ଶନ କରିବା ଦରକାର ନାହିଁ, କାହିଁକିନା, ବେଳକୁ ବେଳ ପରିବର୍ତ୍ତିତ ବା ସଂଶୋଧିତ ହୋଇଯିବ ବକ୍ତବ୍ୟ, ପ୍ରସଙ୍ଗର ପ୍ରେକ୍ଷିତ ବଦଳିଯିବ ଘନଘନ ସେଥିପାଇଁ, ଆଗେ ଦେଖିବା ଦରକାର, ନିଖିଳ ବା ଇଉନିଭର୍ସାଲ୍ ଆଇଡିଆ ପ୍ରେକ୍ଷିତରେ ପଦାର୍ଥ ଓ ଆକୃତି ସଂପର୍କିତ ତତ୍ତ୍ୱାବଳୀର ପ୍ରାସଙ୍ଗିକତା । ପ୍ରୟାସର ଅର୍ଦ୍ଧାଂଶ ଅବଶ୍ୟ, ଅଧିବିଦ୍ୟାର ଭିତ୍ତି ଯେ ନିଚ୍ଛକ କାଣ୍ଡଜ୍ଞାନ, ସେଇ କଥାଟାକୁ ଉପଲବ୍ଧି, ବିଶେଷତଃ ଯେହେତୁ ଅଲୌକିକ ରହସ୍ୟ-ଉଦ୍‌ଘାଟନ ନୁହେଁ, ଯୁକ୍ତି ଦ୍ୱାରା ଜଗତକୁ ଓ ତହିଁରେ ମଣିଷର ସ୍ଥିତି ଓ ପରିସ୍ଥିତିକୁ ବୁଝିହେବ - ଏଇଥିଲା ଆରିଷ୍ଟୋଟ୍ଲଙ୍କ ପ୍ରତିପାଦ୍ୟ । କିଛିବାଟ ଯିବାପରେ 'ନିଖିଳ' ମନେହେବ ତତ୍ତ୍ୱ ହିସାବରେ ସରଳ, କାହିଁକିନା, ପ୍ଲାଟୋଙ୍କ ପ୍ରଭାବ ଯୋଉଠି ଅର୍ଥାରୋପକୁ ରଞ୍ଜିତକରିଚି, ଚିହ୍ନଟକରିବା ଦୁଃସାଧ ନୁହେଁ । ଯେପରି ଭାଷାକୁ ଗଠିତକରୁଚି ନାମବାଚକ ବିଶେଷ୍ୟ ଏବଂ ବିଶେଷ୍ୟର ବିଶେଷଣ; ଅଥବା ନାମବାଚକ ବିଶେଷ୍ୟ ଚିହ୍ନିତକରେ ସଚରାଚରେ ବସ୍ତୁ ବା ବ୍ୟକ୍ତିବିଶେଷକୁ । କିନ୍ତୁ ଏଭଳି ଢେର ବ୍ୟକ୍ତି ବା ବସ୍ତୁ ଅଛି, ଅଦ୍ୱିତୀୟ ବୋଲି ଯାର ବିଶେଷଣ ନାହିଁ । ଯେପରି ଚନ୍ଦ୍ର, ସୂର୍ଯ୍ୟ, ହିମାଳୟ କି ଗଙ୍ଗାନଦୀ । ଏକାଧିକ ବସ୍ତୁ ବା ବାକ୍ୟ ନାହିଁ ଯାହାକୁ ଚିହ୍ନିତକରିବାକୁ ଏଇ ବିଶେଷ୍ୟଗୁଡ଼ିକୁ ବ୍ୟବହାର କରିହେବ । ଅଥଚ ପ୍ରଜାତି ପରିଚୟକୁ ଯୋଉଠି ନିର୍ଦ୍ଦିଷ୍ଟକରେ ବିଶେଷ୍ୟ, ଯେପରି ବିଲେଇ, କୁକୁର କି ମଣିଷ, ବିଶେଷ୍ୟକୁ ବ୍ୟବହାର କରିହେବ, ବିଭିନ୍ନ ପ୍ରକାର ଚିହ୍ନାୟନ ସକାଶେ । ନାମବାଚକ ବିଶେଷ୍ୟ ହୋଇସୁଦ୍ଧା,

ସେଗୁଡ଼ିକ ନିଖିଳ ବା ଇଉନିଭର୍ସାଲ୍; ଚନ୍ଦ୍ର, ସୂର୍ଯ୍ୟ, ହିମାଳୟ ପରି ନିର୍ଦ୍ଦିଷ୍ଟ ବା ଇଣ୍ଡିଭିଜୁଆଲ୍ ନୁହେଁ । ସେହିପରି ବିଶେଷଣ । ଧଳା, ଗୋଲାକାର, କଠିନ, ଥଣ୍ଡା ଭଳି ବିଶେଷଣ ସର୍ବସାଧାରଣ ବା ନିଖିଳ, କାହିଁକି ନା, By the term 'universal' I mean that which is of such a nature as to be predicated of many subjects, by 'individual' that which is not thus predicated । ନିଖିଳ ଓ ନିର୍ଦ୍ଦିଷ୍ଟ ମଧ୍ୟସ୍ଥ ପ୍ରଭେଦ ଦର୍ଶାଇବାକୁ ଯାଇ ଆରିଷ୍ଟୋଟ୍ଲ, ଲକ୍ଷ୍ୟକରିବା କଥା, ପ୍ରୟୋଗ କରିଚନ୍ତି 'ନେଚ୍‌ର'- ଶବ୍ଦ । ଓଡ଼ିଆରେ 'ସ୍ୱଭାବ' କହିହେବ କିମ୍ବା 'ପ୍ରକୃତି'; ଯେପରି, ନିଆଁର ସ୍ୱଭାବ, ପାଣିର ସ୍ୱଭାବ । କିନ୍ତୁ ଏ ସ୍ୱଭାବ ନିର୍ଦ୍ଦିଷ୍ଟ ଭୂତ (ମ୍ୟାଟର୍)ର ଆଟ୍ରିବିଉଟ୍ ବା ବିଶେଷ ଲକ୍ଷଣ । ପର୍ଯ୍ୟବେକ୍ଷଣ ଦ୍ୱାରା ଲକ୍ଷଣଗୁଡ଼ିକୁ ଚିହ୍ନଟ କରାଯାଇଚି ବୋଲି ଭୂତ ଉପରେ କରାଯାଇଚି ଆରୋପ । ନିଖିଳ ହୋଇସୁଦ୍ଧା ନିର୍ଦ୍ଦିଷ୍ଟ ; ଏବଂ ନିର୍ଦ୍ଦିଷ୍ଟ ଓ ନିଖିଳ ମଧ୍ୟସ୍ଥ ଅନ୍ୱୟ (ଇଉନିଟି) ମଧ୍ୟ ସୁସ୍ପଷ୍ଟ, ଯା ଏକ ତୃତୀୟ ସତ୍ତା । ଆରିଷ୍ଟୋଟ୍ଲ ତା ପାଇଁ ବିଶେଷ୍ୟପଦ ଖୋଜୁଚନ୍ତି, କାହିଁକିନା, ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକ ବେଳକୁ ଗ୍ରୀକ୍‌ଭାଷା ଏପରି ସମୃଦ୍ଧହୋଇନାହିଁ ଯେ ଭାବିବାମାତ୍ରେ ଶବ୍ଦ ପାଇଯିବେ ଚିନ୍ତାକୁ ଚିତ୍ରରେ ବ୍ୟକ୍ତକରିବାକୁ । ଖାଲି 'ନେଚ୍‌ର୍' ଶବ୍ଦଟାର ତ ହଜାରେ ରକମ ଅର୍ଥ ହୋଇପାରେ ।

ନାମବାଚକ ବିଶେଷ୍ୟ ଯା ଚିହ୍ନଟକରେ, ସାଧାରଣତଃ ପ୍ରକୃତି କିମ୍ବା ପୁରୁଷ; ବିଶେଷଣ ଯା ଚିହ୍ନଟକରେ, ସାଧାରଣତଃ ପ୍ରକୃତି ବା ପୁରୁଷର ଜାତିପରିଚୟ; ଯେପରି, ବ୍ୟକ୍ତିମନୁଷ୍ୟ ସକାଶେ ଜାତିପରିଚୟ 'ମାନବ'; ତା ପ୍ରକୃତିର ବିଶେଷଣ 'ମାନବିକ' । ସେଇ ବର୍ଗପରିଚିତି ସାଧାରଣ; ଅର୍ଥାତ୍ ବିଶେଷ ନୁହେଁ । ବିଶେଷ ହୋଇଥିଲେ, ନାମବାଚକ ବିଶେଷ୍ୟ ଥାଆନ୍ତା; ନାହିଁ ବୋଲି, ଆରିଷ୍ଟୋଟ୍ଲଙ୍କ ପରିଭାଷାରେ ସେଗୁଡ଼ିକ 'ଏହି' ବା 'ସେହି' । ଏଗୁଡ଼ିକ ସର୍ବନାମ । ଅର୍ଥାତ୍, ନିର୍ଦ୍ଦିଷ୍ଟ ସ୍ୱଭାବ (ଆରିଷ୍ଟୋଟ୍ଲଙ୍କ ପରିଭାଷାରେ 'ସବସ୍ଟାନ୍ସ') ଯଦି ଏହି ବା ସେହି ହୁଏ, ତାର ସର୍ବମାନ୍ୟ ବିଶେଷଣ ହେବ 'ଏହିପରି' ବା 'ସେହିପରି' । ଅସଲ ସାରବତ୍ତା (=ସବସ୍ଟାନ୍ସ) ସାଧାରଣ ବା ଇଉନିଭର୍ସାଲ୍ ହୋଇପାରେନା; ତେଣୁ ବିଶେଷଣ ନୁହେଁ । 'ଏହିପରି' ବା 'ସେହିପରି' ତେଣୁ ବ୍ୟକ୍ତକରିପାରେ କେବଳ ପ୍ରକାରଭେଦ, ସବସ୍ଟାନ୍ସର ପ୍ରକୃତି ନୁହେଁ କି ନିର୍ଦ୍ଦିଷ୍ଟ ଉପସର୍ଗ ନୁହେଁ । ଯେପରି, 'ଫର୍ମ' ବୁଝାଇବାକୁ ଯାଇ ପ୍ଲାଟୋ ଯୋଉ ବିଛଣାର ଉଦାହରଣ ଦେଇଛନ୍ତି, ତା ଗୋଟିଏ 'ଏହି' । ସ୍ୱର୍ଗୀୟ ଆକୃତିର ମାନବିକ ସଂସ୍କରଣ; କିନ୍ତୁ ଇନ୍ଦ୍ରିୟଗ୍ରାହ୍ୟ; ତେଣୁ ଇଉନିଭର୍ସାଲ୍ । ଅସଲ ଜିନିଷ (ସବସ୍ଟାନ୍ସ) କିନ୍ତୁ ନିର୍ଦ୍ଦିଷ୍ଟ; ଏହି କି ସେହି ନୁହେଁ । ଆରିଷ୍ଟୋଟ୍ଲଙ୍କ ଅବବୋଧରେ, ସବସ୍ଟାନ୍ସ ବା ସାରବତ୍ତା ଯେହେତୁ ଏକ ଓ ଏକମାତ୍ର ବ୍ୟକ୍ତି ବା ବସ୍ତୁର ନିହିତ ବୈଶିଷ୍ଟ୍ୟ, ହୋଇପାରେନା ନାମବାଚକ ବିଶେଷ୍ୟ; ଏବଂ ଯେହେତୁ ସେ ବୈଶିଷ୍ଟ୍ୟ ଅନ୍ୟ କାହାରି ନୁହେଁ, ବିଶେଷଣ ମଧ୍ୟ

ସର୍ବସାଧାରଣ ନୁହେଁ, କାହିଁକି ନା, ...since that is called universal which is such as to belong to more than one thing, ତାର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ; ନିର୍ଦ୍ଦିଷ୍ଟ ପ୍ରକୃତି/ପୁରୁଷ ମାଧ୍ୟମରେ ପ୍ରତୀତହୁଏ ମାତ୍ର । ଅର୍ଥାତ୍ ଜୀବଜଗତରେ ମଣିଷ ଯେ ସ୍ୱତନ୍ତ୍ର ଓ ବିଶିଷ୍ଟ, ପର୍ଯ୍ୟବେକ୍ଷଣରୁ ଉପଲବ୍ଧିକଲେ ସୁଦ୍ଧା, ତା ପାଇଁ ଏକ ସର୍ବମାନ୍ୟ ସୂତ୍ର ଠାବକରିବାକୁ ଯାଇ ଧନ୍ଦିହେଉଚନ୍ତି ଆରିଷ୍ଟୋଟ୍ଲ ; ବ୍ୟାକରଣ ବେଶିବାଟ ନେଇଯାଇ ପାରୁନାହିଁ । ଅଥଚ ସାଧାରଣ ସୂତ୍ର କାଢ଼ିନପାରିଲେ ସଂଜ୍ଞାବଦ୍ଧ କରିହେବନାହିଁ ବୈଶିଷ୍ଟ୍ୟକୁ ।

ସେଥିପାଇଁ ଉପରକୁ ଦିଶୁଚି ସମସ୍ୟା ଗୁରୁତର ନୁହେଁ, ମାତ୍ର ଯଦି କୁହାଯାଏ, 'ତାସ୍‌ଖେଳଟା ବିବାକ୍ ଅଳସୁଆଙ୍କ ଆଡ୍ଡା', ଅନେକ ଲୋକ ମାନିଯିବେ । ମାତ୍ର ସେଥିରୁ ଯଦି କେହି ଅନୁମାନକରେ ଯେ ଜୁଆଡ଼ି ଖେଳଛାଡ଼ି ଉଠିଗଲେ ସୁଦ୍ଧା, ତାସ୍ ଜାଗାରେ ତାସ୍ ରହିଥିବ, ଆରିଷ୍ଟୋଟ୍ଲ କହିବେ, ଲୋକଟା ନିର୍ବୋଧ । ସେମିତି ଯୌନତା । ନାରୀ-ପୁରୁଷ (=ପ୍ରକୃତି-ପୁରୁଷ) ଜଗତରେ ଅଛନ୍ତି ବୋଲି ସଙ୍ଗମର ଧାରଣା ଆସୁଚି ମନକୁ । ମାତ୍ର ଆରିଷ୍ଟୋଟ୍ଲ କହିବେ, ନାରୀ-ପୁରୁଷ ନଥଲେ ବି ଯୌନତା ରହିବ ବହାଲ୍ ତବିୟତ୍ । ଅଥବା ମାଧୁର୍ଯ୍ୟ; ମହୁ କି ଗୁଡ଼ ଅଛି ବୋଲି, ମଧୁର ଭଳି ଧାରଣା ରହିଚି କିମ୍ୱା ଲାଲ୍ ରଙ୍ଗ; ଲାଲରଙ୍ଗ ପଦାର୍ଥ ଅଛି ବୋଲି, ରହିଚି ରକ୍ତବର୍ଣ୍ଣ । କିନ୍ତୁ ଆରିଷ୍ଟୋଟ୍ଲଙ୍କ ପରାବିଦ୍ୟା କହିବ, ଯୌନତା ସହିତ ନାରୀପୁରୁଷ ସମ୍ପର୍କ, ମାଧୁର୍ଯ୍ୟ ସହିତ ମହୁର ସମ୍ପର୍କ, କିମ୍ୱା ଜବାଫୁଲ ସହିତ ଲାଲ୍‌ରଙ୍ଗର ସମ୍ପର୍କ ବିଶେଷ୍ୟ–ବିଶେଷଣ ସମ୍ପର୍କ ନୁହେଁ, କାହିଁକି ନା, ପ୍ରେଡିକେଟ୍‌ଗୁଡ଼ାକ ପାରସ୍ପରିକ ନୁହେଁ କି ପରିପୂରକ ନୁହେଁ । ତାସ୍ ନଥିଲେ ବି ଜୁଆଡ଼ି ରହିବେ, ମିଠାଜିନିଷ ବି ପାଗଯୋଗ ବଦଳିଗଲେ ଖଟା ହେଇଯାଇପାରେ, ମାତ୍ର ମାଧୁର୍ଯ୍ୟ ରହିଥିବ ଅକ୍ଷୁର୍ଣ୍ଣ; ରକ୍ତବର୍ଣ୍ଣ ଓଠ ଖରା ତେଜରେ ଶେତା ପଡ଼ିଯାଇପାରେ, ଓଠ କିନ୍ତୁ ରହିଥିବ ଓଠ । ଏଇଭଳି, ବିଭିନ୍ନି ଉଦାହରଣ ଦ୍ୱାରା ପ୍ରମାଣକରିହେବ ଯେ, ବିଶେଷଣ ଯୋଉ ଅର୍ଥ ପ୍ରକାଶକରେ, ତାର ସ୍ୱାଧୀନ ଅସ୍ତିତ୍ୱ ନାହିଁ; ଅସ୍ତିତ୍ୱ ନିର୍ଭରକରୁଚି ନାମବାଚକ ବିଶେଷ୍ୟର ମର୍ମ ଉପରେ; ନାମବାଚକ ବିଶେଷ୍ୟର ମର୍ମହିଁ ପ୍ରେଡିକେଟ୍‌ର ଉପଲକ୍ଷ୍ୟ । ଅର୍ଥାତ୍, ବିଶେଷ୍ୟ ଓ ବିଶେଷଣ ମଧ୍ୟସ୍ଥ ସମ୍ପର୍କ ପ୍ରେଡିକେଟ୍ ନୁହେଁ, କାହିଁକିନା, ନାମବାଚକ ବିଶେଷ୍ୟ ଯେମିତି ବିଶେଷଣ ହୋଇପାରେନା, ସେମିତି ସବ୍‌ସ୍ଟନ୍ସ ହୋଇପାରେନା ଉପସର୍ଗ । ଏ ବିବେଚନା, ସ୍ପଷ୍ଟତଃ, ନିରସ ପାଣ୍ଡିତ୍ୟ; ଢାଙ୍କିପକାଇଚି କାଣ୍ଡଜ୍ଞାନକୁ । ତତ୍ତ୍ୱରେ ରହେ ସାଧାରଣତଃ ନିୟମନିଷ୍ଠା, ବାହୁଲ୍ୟହୀନ ଭାଷାପ୍ରୟୋଗ ।

ଧରିନିଆଯାଉ, ତାସ୍ ଟିକ୍ଷିପାରିବନାହିଁ ଜୁଆଡ଼ି ନଥିଲେ; କିନ୍ତୁ ଆସନଜମାଇ ବସିପାରିବ 'ଏହି' ବା 'ସେହି', ଜୁଆଡ଼ି ଥାଉ କି ନଥାଉ । ତାସ୍ ନଖେଳିଲେ ବି ଏହି/ସେହି–ର ଅସ୍ତିତ୍ୱ ବିପନ୍ନହେବନାହିଁ । ମାତ୍ର ଏହି ବା ସେହିକୁ କିଛିନାକିଛି କରିବାକୁ

ପଡ଼ିବ, କାମ ନକଲେ ଅସ୍ତିତ୍ୱ ଉପରେ ଲାଗିଯିବ ପ୍ରଶ୍ନଚିହ୍ନ; ଅକର୍ମକ ବ୍ୟକ୍ତି ବା ବସ୍ତୁର ଅସ୍ତିତ୍ୱ କଳ୍ପନା ମାତ୍ର । ରକ୍ତବର୍ଣ୍ଣର ଅସ୍ତିତ୍ୱ ମଧ୍ୟ କୋଉନାକୋଉ ଆଧାର ବା ଉପଲକ୍ଷ୍ୟ ବିନା ସମ୍ଭବପର ନୁହେଁ; କିନ୍ତୁ ନିର୍ଦ୍ଦିଷ୍ଟ ଏହି/ସେହି ଭଳି ଧାରକ (ସବ୍‌ଜେକ୍ଟ) ନଥାଇ ସୁଦ୍ଧା ଲାଲ୍‌ରଙ୍ଗ ଆସିପାରେ ଧାରଣାକୁ । ସେହିପରି, ସବ୍‌ଜେକ୍ଟ୍ (ପାତ୍ର, କର୍ତ୍ତା, ବିଷୟ, ଉପଲକ୍ଷ୍ୟ)ର ଅସ୍ତିତ୍ୱ ମଧ୍ୟ ଗୁଣ-ଧର୍ମ ଧାରଣା ବିନା ଅଚିନ୍ତନୀୟ; ଅଥଚ 'ଏହି' ବା 'ସେହି' ଭଳି ଅନନ୍ୟ ପ୍ରେଡିକେଟ୍‌କୁ ବାଦ୍‌ଦେଇ ସବ୍‌ଜେକ୍ଟର ଅସ୍ତିତ୍ୱ ସମ୍ଭବପର । ବସ୍ତୁ ଓ ଗୁଣ ମଧ୍ୟସ୍ଥ ପ୍ରଭେଦ ସେଥିପାଇଁ ବିଚାର ବିଭ୍ରମ । ପ୍ରଭେଦ ମନକୁ ଆସୁଚି ଭାଷାବ୍ୟବହାର ଯେହେତୁ ଯଥାଯଥ ନୁହେଁ । ଭାଷାବ୍ୟବହାର ବିଧିକୁ ବ୍ୟାକରଣରେ କୁହାଯାଏ ପଦବିନ୍ୟାସ ବା ସିଣ୍ଟାକ୍ସ । ସେଥିରେ ନାମବାଚକ ଶବ୍ଦ ରହିଚି ଯେମିତି, ବିଶେଷଣ ସେମିତି; ଦୁହିଙ୍କ ମଝିରେ ରହିଚି ସମ୍ବନ୍ଧ-ପଦ । ଯେପରି, ରାମ ଚଲାକ/ଯଦୁ ହୁଣ୍ଡା; କିମ୍ବା ରାମ ଯଦୁଠୁଁ ଡେଙ୍ଗା । ରାମ ଆଉ ଯଦୁ ନାମବାଚକ ଶବ୍ଦ; ଚଲାକ୍ ଓ ହୁଣ୍ଡା ବିଶେଷଣ, ଡେଙ୍ଗା ସମ୍ବନ୍ଧପଦ । ମେଟାଫିଜିକ୍ସକୁ ଦିଶିବ ଅନ୍ୟରକମ: ରାମ ଆଉ ଯଦୁ ହେଲେ 'ସବ୍‌ଷ୍ଟାନ୍ସ', ଚଲାକ ଓ ହୁଣ୍ଡା 'ଇଉନିଭର୍ସାଲ୍' । ସମ୍ବନ୍ଧପଦକୁ ଅଧିବିଦ୍ୟା ଅବଶ୍ୟ ଅଗ୍ରାହ୍ୟକରେ, ନହେଲେ ବାହାରିବ କିମ୍ଭୂତକିମାକାର ଅର୍ଥ । ଆଧିଭୌତିକ ପାର୍ଥକ୍ୟ ସାଙ୍ଗରେ ପଦବିନ୍ୟାସଗତ ପାର୍ଥକ୍ୟକୁ ମଧ୍ୟ ଯୋଡ଼ିହେବ; ମାତ୍ର ପ୍ରକ୍ରିୟାଟା ଏମିତି ଅଷ୍ଟବକ୍ର ଯେ ପରିଣାମ ହେବ କୃତ୍ରିମ ପରିଭାଷା; ଯେପରି, ହଂସ=ଆତ୍ମା, ନିର୍ବାଣ=ମରଣ, ପୁରୁଷ=ପ୍ରାଣ, ଇତ୍ୟାଦି । ଏପରି ପରିଭାଷାରେ ରାମ କି ଯଦୁ ଭଳି ନାଁ ସ୍ଥାନପାଇବନାହିଁ, କି ଚଲକ୍ ବା ହୁଣ୍ଡା ଭଳି ବିଶେଷଣ । ପ୍ରଚଳିତ ଭାଷାର ସବୁଯାକ ଶବ୍ଦ ବିଶ୍ଳେଷଣ ମାଧ୍ୟମରେ ଧାରଣକରିବେ ଏପରି ରୂପଭେକ ଯେ ଗୃହୀତ ଅର୍ଥର ଜାଗା ଦଖଲକରିବ ନିରର୍ଥକ ବାଗାଡ଼ମ୍ବର; ଯେପରି, ଅତିମାନସ, ଲୀଳା, ସମର୍ପଣ ଇତ୍ୟାଦି । ଅଷ୍ଟବକ୍ର ପ୍ରକ୍ରିୟାଟି ଉପସଂହାରରେ ନ ପହଞ୍ଚିବା ଯାଏଁ 'ନିର୍ଦ୍ଦିଷ୍ଟ' ଓ 'ନିଖିଳ' ଅବବୋଧକୁ ଅଧିକ ଘାଣ୍ଟି ଲାଭନାହିଁ, କାହିଁକିନା, ଉପସଂହାରରେ ଉପନୀତହେଲାବେଳକୁ ସବ୍‌ଜେକ୍ଟ-ପ୍ରେଡିକେଟ୍ ଏମିତି ଓଲଟପାଲଟ ହୋଇଯାଇଥିବେ ଯେ, ସବ୍‌ଷ୍ଟାନ୍ସ ହୋଇଯାଇଥିବ ନିଖିଳ, ନିଖିଳ ହୋଇଯାଇଥିବ ଅନିତ୍ୟ ।

'ସବ୍‌ଷ୍ଟାନ୍ସ' ଶବ୍ଦ ଉପଯୋଗ କରିନାହାନ୍ତି ପ୍ଲାଟୋ; ଆରିଷ୍ଟୋଟ୍ଲ ପାଇଲେ କୁଆଡୁ ? ଆସିଚି ଲାଟିନ୍‌ରୁ; ସବ୍‌ଷ୍ଟାନ୍ସ ସେଇ ଗୁଣଧର୍ମ କି ପରିମାଣ ଯଦ୍ଦ୍ୱାରା କୋଉହେଲେ ଜିନିଷକୁ ଚିହ୍ନଟକରାଯାଏ । ମାତ୍ର ଆରିଷ୍ଟୋଟ୍ଲଙ୍କ ଅବବୋଧରେ, ସବ୍‌ଷ୍ଟାନ୍ସ୍ ସେଇ ବିଭାବ, ଗୁଣଧର୍ମ କି ପରିମାଣ ବଦଳିଗଲେ ସୁଦ୍ଧା ଯା ରହିଥିବ ଅପରିବର୍ତ୍ତିତ । ପ୍ଲାଟୋ 'ଫର୍ମ୍'କୁ ଧରିନେଇଥିଲେ ସ୍ୱତଃସିଦ୍ଧ; ମ୍ୟାଟର୍‌କୁ ଫର୍ମର ବହିଃପ୍ରକାଶ; ଆରିଷ୍ଟୋଟ୍ଲ କିନ୍ତୁ ଦାବିକରିଚନ୍ତି, ତାଙ୍କ ବକ୍ତବ୍ୟ ଯେହେତୁ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣର

ପରିଣାମ, ସବ୍‌ଷ୍ଟାନ୍ସକୁ କହିହେବ ଉଭୟ ମ୍ୟାଟର୍ ଓ ଫର୍ମ୍‌ର ଇଉନିଟି । ପୁଣି, କୋଉହେଲେ ସବ୍‌ଜେକ୍ଟ ମଧ୍ୟ ଦରକାରନାହିଁ ସବ୍‌ଷ୍ଟାନ୍ସର ଅସ୍ତିତ୍ୱ ପ୍ରମାଣକରିବାକୁ, ସବ୍‌ଷ୍ଟାନ୍ସ ଯେହେତୁ ଗୁଣ, ଧର୍ମ, କି ପରିମାଣ ନୁହେଁ । ତାହେଲେ, ବର୍ଣ୍ଣନାର ଅତୀତ !

'ଇଉନିଭର୍‌ସାଲ୍' ଆଉ ଗୋଟିଏ ପ୍ରତ୍ୟୟ । ସବୁରକମ ବର୍ଗାକାର ଜିନିଷର ଆକୃତି ଏକ ଇଉନିଭର୍‌ସାଲ୍ ବା ସାଧାରଣ ଲକ୍ଷଣ । କିନ୍ତୁ ଏ ଲକ୍ଷଣ ଆରିଷ୍ଟୋଟ୍‌ଲଙ୍କ ଉଦ୍‌ଭାବନ ନା ଆବିଷ୍କାର ? କାହିଁକିନା, ଯୋଉ ଅସ୍ତିତ୍ୱର ସ୍ଥାନ-କାଳ ନିର୍ଦ୍ଦିଷ୍ଟତା ନାହିଁ, ତାକୁ କେମିତି ଠାବକରିହେବ ଏକମାତ୍ର ସାଦୃଶ୍ୟ ସାହାଯ୍ୟରେ ? ପ୍ଲାଟୋ ସାଦୃଶ୍ୟକୁ ଭାବିଚନ୍ତି ଇନ୍ଦ୍ରିୟଗ୍ରାହ୍ୟ ଜଗତ୍‌ରୁ ସ୍ୱାଧୀନ ଫର୍ମର ଲକ୍ଷଣ । ମାତ୍ର ଆରିଷ୍ଟୋଟ୍‌ଲ ସାଦୃଶ୍ୟକୁ ଯୋଡିଛନ୍ତି ବସ୍ତୁଜଗତ୍ ସାଙ୍ଗରେ । ଫିଲଜଫି ନୁହେଁ; ବସ୍ତୁଜଗତ୍‌କୁ ଯୂଥବଦ୍ଧ କରିବାର ପ୍ରବଣତା କେବଳ; ଯେପରିକି ଜଗତ୍‌ଟା ଦିଶିବ ଯୂଥବଦ୍ଧ ବସ୍ତୁସମଷ୍ଟି । ନାମବାଚକ ବିଶେଷ୍ୟ ଅନେକ ରହିଚି ଯା ବସ୍ତୁନିରପେକ୍ଷ; ଆରିଷ୍ଟୋଟ୍‌ଲ କିନ୍ତୁ ଭାବିଚନ୍ତି, ନାମବାଚକ ବିଶେଷ୍ୟ ମାତ୍ରକେ କୋଉନାକୋଉ ଜିନିଷର ଚିହ୍ନାୟନ । ସ୍ଥିତ ଜଗତର ଚିହ୍ନାୟନ । ମାତ୍ର ସ୍ଥିତ ଜଗତର ରହିଚି ଅସୀମ ସମ୍ଭାବନା, ଅନିର୍ଦ୍ଦିଷ୍ଟ ଭବିଷ୍ୟତ୍, ଏବଂ ତାକୁ ଚିହ୍ନଟକରିବା ସକାଶେ ଅଗଣିତ ନାମବାଚକ ବିଶେଷ୍ୟ ।

ସବ୍‌ଷ୍ଟାନ୍ସ ଓ ଇଉନିଭର୍ସାଲ୍ ଭଳି ଆଉ ଗୋଟିଏ ପାରିଭାଷିତ ଶବ୍ଦ : ଏସେନ୍ସ । 'ନିଖିଳ' ସହିତ ସମାର୍ଥବୋଧକ ନୁହେଁ । ଏସେନ୍ସ ବା ନିର୍ଯ୍ୟାସ ହେଉଚି, what you are by your very nature । ଏପରି ଗୁଣଧର୍ମ ଯେ ମଣିଷ ମରିବା ଯାଏଁ ଛାଡ଼ିଯିବନାହିଁ । ନିଖିଳ-ବିଷୟକ ତତ୍ତ୍ୱକୁ ଏସେନ୍ସ ଯେମିତି ସ୍ପଷ୍ଟକରି ପାରିନାହିଁ, ନିର୍ଯ୍ୟାସ-ସମ୍ବନ୍ଧୀୟ ତତ୍ତ୍ୱକୁ ମଧ୍ୟ ପ୍ରାଞ୍ଜଳ କରିପାରିନାହିଁ ସେମିତି । କିନ୍ତୁ 'ଆଇଡିଆ' ବିଷୟରେ ପ୍ଲାଟୋ ଯା ଭାବିଚନ୍ତି, ଆରିଷ୍ଟୋଟ୍‌ଲ ସେ ଭାବନାକୁ ଆଗେଇ ନେଇଚନ୍ତି; କିଛିଦୂର ଫିଲଜଫି ପକ୍ଷରେ ତା ଏକ ବିଶେଷ ପ୍ରାପ୍ତି ।

ଏସେନ୍ସ ଯେ ଖାଲି ପ୍ରାଣୀବିଶେଷକୁ କି ବସ୍ତୁବିଶେଷକୁ ଛାଡ଼ିଯିବନାହିଁ, ତା ନୁହେଁ; ପ୍ରାଣୀ ବା ପଦାର୍ଥର ପ୍ରଜାତିକୁ ମଧ୍ୟ ଛାଡ଼ିଯିବନାହିଁ । କାହିଁକିନା, ପ୍ରଜାତିର ମଧ୍ୟ ରହିଚି ନିଷ୍କର୍ଷ । ରହିଚି ବୋଲି, ପ୍ରଜାତିର ସଂଜ୍ଞାନିରୂପଣ ଏସେନ୍ସର ହିଁ ଚିହ୍ନାୟନ । ଏସେନ୍ସ ଓ ଡେଫିନିସନ୍ ତେଣୁ ଏକାକଥା । ସୋକ୍ରେଟିଜ୍‌ଙ୍କ ଲଜିକ୍ ତୁଳନାରେ ଏ ଲଜିକ୍ ତେଣୁ ପାଟିତୁଣ୍ଡ । ତା ପଛକୁ ଆସିଚି 'ଫର୍ମ୍' (ଆକୃତି) ଓ 'ମ୍ୟାଟର୍' (ପଦାର୍ଥ) ମଧ୍ୟସ୍ଥ ପାର୍ଥକ୍ୟ । ଅର୍ଥାତ୍, ଜଡ଼ ଯୋଉ ଅର୍ଥରେ ସଚେତନ ନୁହେଁ, ମ୍ୟାଟର୍ ସେଇ ଅର୍ଥରେ 'ଫର୍ମ' ନୁହେଁ । ଏ ଧାରଣା ମଧ୍ୟ କାଣ୍ଡଜ୍ଞାନପ୍ରସୂତ । ମାତ୍ର ନିଖିଳ-ବିଷୟକ ତତ୍ତ୍ୱ ତୁଳନାରେ ପ୍ଲାଟୋଙ୍କ ପ୍ରଭାବ ଏଠି ଅଭ୍ରାନ୍ତ; । ଯେପରି, ମାର୍ବ୍ଲପଥରରେ ତିଆରି ମୂର୍ତ୍ତିର ଉଦାହରଣ । ମାର୍ବ୍ଲ ଏଠି ପଦାର୍ଥ (ମ୍ୟାଟର୍) । ବିନ୍ଧାଣୀ ରୂପଦେଇଚି

ପଥରକୁ; ସେଇ ରୂପ ପଥରର ଫର୍ମ୍। ଆରିଷ୍ଟୋଟ୍ଲଙ୍କ ନିଜ ଉଦାହରଣ: କିଏ ଦସ୍ତାଧାତୁରେ ଯଦି ବନାଏ ବର୍ତ୍ତୁଳ ଏକ ଗୋଲକ,ଦସ୍ତା ହେବ ମ୍ୟାଟର୍ ଆଉ ବର୍ତ୍ତୁଳତ୍ୱ ହେବ ଫର୍ମ୍। ସମୁଦ୍ର ଯଦି ନିସ୍ତରଙ୍ଗ, ପାଣି ତେବେ ମ୍ୟାଟର୍, ଆଉ ମସୃଣତା ମ୍ୟାଟର୍‌ର ଫର୍ମ୍। ବକ୍ତବ୍ୟ ଏପର୍ଯ୍ୟନ୍ତ ଜଳବତ୍ ତରଳଂ। ମାତ୍ର ଆରିଷ୍ଟୋଟ୍ଲ ଫେର୍ କହୁଚନ୍ତି, ମ୍ୟାଟର୍ ଯେ ଅନନ୍ୟ ନିର୍ଦ୍ଦିଷ୍ଟ ଜଡ଼ବସ୍ତୁ, ଏକମାତ୍ର କାରଣ ଆକୃତିର ବିଚକ୍ଷଣତା। ଏବଂ ସେଇ ଆକୃତିଗତ ବିଚକ୍ଷଣତା ହିଁ ପଦାର୍ଥର ସବ୍‌ଷ୍ଟାନ୍ସ। ସହଜବୁଦ୍ଧିରୁ ଉତ୍ପନ୍ନ ଏ ବ୍ୟାଖ୍ୟା ସହଜବୋଧ ଭାଷାରେ ହେବ: ଯେକୌଣସି ପଦାର୍ଥର ଅଛି ପରିବେଷ୍ଟନ ବା ଚୌହଦୀ, ସେଇ ପରିବେଷ୍ଟନହିଁ ଦେଉଚି ପଦାର୍ଥକୁ ଆକୃତି ବା ଫର୍ମ୍। ଯେପରି, ବିଭିନ୍ନ ଆକୃତିବିଶିଷ୍ଟ ପାତ୍ରରେ ରଖାଯାଇପାରେ ପାଣି; ପାଣି ସେତେବେଳେ ବୋତଲ ଗ୍ଲାସ୍ କି ପିମ୍ପା; କିନ୍ତୁ ଆଧାର ଅନ୍ତର୍ଗତ। ଅଥଚ ସବୁଯାକ ପାଣି ବିମୂର୍ତ୍ତ ଏକ ଅଖଣ୍ଡସତ୍ତା। ବିଭିନ୍ନ ଆଧାରରେ ଖଣ୍ଡିତ ନହେବା ଯାଏଁ, ମ୍ୟାଟର୍ ନୁହେଁ। ମାର୍ବ୍ଲପଥର ସେମିତି ଖଣି କି ପାହାଡ଼ରେ ସମସ୍ୱଭାବ ଅଖଣ୍ଡ। ମୂର୍ତ୍ତିରେ ରୂପ ଲାଭକଲା ବୋଲି ପଥରର ସ୍ୱଭାବ ବଦଳିଯାଉନାହିଁ। ପାଣି କି ପଥର ତେଣୁ ବିଭିନ୍ନ ଆକୃତି (ବେଷ୍ଟନ) ରେ ଖଣ୍ଡିତହେଲେ ସୁଦ୍ଧା, 'ସବ୍‌ଷ୍ଟାନ୍ସ' ରହୁଚି ଅବିଭାଜ୍ୟ। ଆକାର ବା ଆକୃତି, ବେଷ୍ଟନ କି ପରିସୀମା,ବସ୍ତୁର ପାରମାଣବିକ ଗଢ଼ଣକୁ ବଦଳାଇଦେଇ ପାରେନା। ପାରେନା ବୋଲି, ଆରିଷ୍ଟୋଟ୍ଲଙ୍କ ଭଳି କହିହେବନାହିଁ ଯେ ବସ୍ତୁର ଆକାର ହିଁ ତାର ସବ୍‌ଷ୍ଟାନ୍ସ ଅଥବା ଆକୃତି ଦିଏ ପଦାର୍ଥକୁ ଅସ୍ତିମତ୍ତା କି ସାରବତ୍ତା। ବସ୍ତୁର ପାରମାଣବିକ ଗଢ଼ଣ ବିଷୟରେ କଳ୍ପନାକରିବା ଆରିଷ୍ଟୋଟ୍ଲଙ୍କ ପକ୍ଷରେ ସମ୍ଭବପର ହୋଇନାହିଁ। ହୋଇନାହିଁ ବୋଲି, ଫର୍ମ୍‌କୁ ମନେକରିଚନ୍ତି ସବ୍‌ଷ୍ଟାନ୍ସ। ପ୍ରତିଟି ପରମାଣୁକୁ ଭାବିବୁଁ ଯଦି ଜଡ଼ପିଣ୍ଡ ଯା ଅନ୍ୟାନ୍ୟ ପରମାଣୁ ପାଖରୁ ଅଲଗା ନହେଲେ 'ମ୍ୟାଟର୍' ପଦବାଚ୍ୟ ହେବନାହିଁ, ଗୋଟାଏ 'ଫର୍ମ୍' ବା ଆକୃତି ଅନ୍ତତଃ କଳ୍ପନାକରିବାକୁ ପଡ଼ିବ। ଫିଜିକ୍ସ ସରିଯାଇ ମେଟାଫିଜିକ୍ସ କେତେବେଳେ ଆରମ୍ଭହେବ, ଖିଆଲ ରହିବନାହିଁ।

ଭାବସମ୍ପ୍ରସାରଣ କରି ଆରିଷ୍ଟୋଟ୍ଲ ଏଥର କହିବେ, ଆତ୍ମା ହେଉଚି ଜୀବପିଣ୍ଡର ଆକୃତି (ଫର୍ମ)। ଧନ୍ଦା ଭଳି ଲାଗିବ; ମାତ୍ର ଆତ୍ମା ଦେହର ଗଠନସୂତ୍ର କେବଳ, ଯୋଉ ସୂତ୍ର ଦେହକୁ ଦିଏ ଇଉନିଟି, ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ଉପସ୍ଥିତି ସତ୍ତ୍ୱେ ଦେହ ଦିଶେ ଅନନ୍ୟ ଏକକ। ଅର୍ଥାତ୍, ଫର୍ମ୍ ଏଠି shape ନୁହେଁ, ଶୃଙ୍ଖଳା ମାତ୍ର। ଯୋଉ ଶୃଙ୍ଖଳା ଜୀବପିଣ୍ଡର ରୂପ (ଉଦ୍ଦେଶ୍ୟ) କୁ କରେ ବିନ୍ୟସ୍ତ। Shape ମାନେ ଆକାରଯୁକ୍ତ, ଆକାର ନୁହେଁ। ଆତ୍ମା ହୋଇଚି ତେଣୁ ଆରିଷ୍ଟୋଟ୍ଲଙ୍କ ଅବଲୋକନରେ ଦେହର ଫର୍ମ୍। ମେଟାଫିଜିକ୍ସ ପ୍ରାକୃତିକ ଜଗତ୍‌କୁ ଚରମସତ୍ୟ ବୋଲି ସ୍ୱୀକାରକରେନା ଅବଶ୍ୟ; ପଞ୍ଚଭୂତରେ ଦେହ ତିଆରିହୋଇଥିଲେ ସୁଦ୍ଧା, ଆରିଷ୍ଟୋଟ୍ଲ ଦେଖୁଚନ୍ତି, ଦେହକୁ ବେଷ୍ଟନକରି ରଖିଚି ଆତ୍ମା। ଅବୟବ/ଇନ୍ଦ୍ରିୟକୁ ବିଜ୍ଞାନ କହୁଚି 'ଅର୍ଗାନ୍'; ସବୁରକମ

ଅର୍ଗାନ୍ ଦ୍ୱାରା ଯିଏ କର୍ମଶୀଳ , ତାକୁ 'ଅର୍ଗାନିକ୍ସ', ପ୍ରାଣୀ ବା ଜୀବପିଣ୍ଡ । ଆରିଷ୍ଟୋଟ୍ଲଙ୍କ ଦୃଷ୍ଟିରେ, କର୍ମଶୀଳତାର ଉତ୍ସ ଅବୟବ କି ଇନ୍ଦ୍ରିୟ ନୁହେଁ, ଏକମାତ୍ର ଆତ୍ମା । ଆଖିର କାମ ଦେଖିବା, କିନ୍ତୁ ଦେହରୁ ବିଯୁକ୍ତହୋଇ ଆଖି ଦେଖିପାରେନା; ଦେଖେ ଯିଏ, ସେ ଆଖି ନୁହେଁ; ସ୍ୱୟଂ ଆତ୍ମା ବା ଅର୍ଗାନିକ୍ସ । ଅନ୍ୟ ଶବ୍ଦରେ, ଫର୍ମ୍ (ଏକ୍ଷଣି ଆତ୍ମା) ହେଉଚି ସେଇ ଶକ୍ତି ଯା ବସ୍ତୁଜଗତର ଏକ ଅଂଶକୁ ଦିଏ ଇଉନିଟି ଏବଂ ଏ ଇଉନିଟି ସାଧାରଣତଃ ଅସ୍ତିତ୍ୱର ଏକମାତ୍ର କାରଣ । କିନ୍ତୁ ଇଉନିଟି ଅପେକ୍ଷା ଫର୍ମ ଅଧିକତର ଏକ ପ୍ରତୀତି; ସେଥିପାଇଁ ଅନଧିଗମ୍ୟ ।

ଯେକୌଣସି ପଦାର୍ଥର ଫର୍ମ ପ୍ରକଟକରେ ଅନ୍ତଃପ୍ରକୃତି, ପୁଣି ପ୍ରାଥମିକ ଉଦ୍ଦେଶ୍ୟ । ଫର୍ମ୍‌ର ତେଣୁ ଦେହ ଅଛି; 'ଇଉନିଭର୍ସାଲ୍'ର ଦେହ ନାହିଁ । କମାର ଯେତେବେଳେ ଦସ୍ତାରେ ବାଗେଇଲା ଗୋଲକ, ଉଭୟ ମ୍ୟାଟର୍ (ଦସ୍ତା) ଓ ଫର୍ମ୍ (ବର୍ତ୍ତୁଳ) ଆଦ୍ୟରୁ ଥିଲେ ବିଦ୍ୟମାନ, କମାର କେବଳ ଯୋଡ଼ିଦେଇଚି ଉଭୟକୁ, ଫର୍ମ୍ ତିଆରିକରିନାହିଁ କି ମ୍ୟାଟର୍ ତିଆରିକରିନାହିଁ । ସବୁ ଜିନିଷର କିନ୍ତୁ ମ୍ୟାଟର୍ ଥାଏନା; କାହିଁକିନା, ଢେର ଜିନିଷ ଜଗତରେ ନିତ୍ୟ ଓ ଶାଶ୍ୱତ; ସେଥିରେ ଜଡ଼ପିଣ୍ଡର ଅସ୍ତିତ୍ୱ ନାହିଁ । ଅଛି ଏଭଳି ନିତ୍ୟବସ୍ତୁରେ, ଯା ଅନ୍ତରୀକ୍ଷରେ କରେ ବିଚରଣ; ପାର୍ଥିବ ପଦାର୍ଥରୂପ ପରିଗ୍ରହକରି ଆପଣା ବାସ୍ତବତାକୁ ବଢ଼ାଇଦିଏ । ଯୋଉ ପଦାର୍ଥର ରୂପ ନାହିଁ, ତାର ବାସ୍ତବତା ନାହିଁ ସିନା, ଅଛି କିନ୍ତୁ ଅମିତ ସମ୍ଭାବନା । ରୂପାୟିତହେବା ସମ୍ଭାବନା । ଅର୍ଥାତ୍, ଆରିଷ୍ଟୋଟ୍ଲଙ୍କ ଅବବୋଧରେ ଫର୍ମ୍ ନିଜେ ଏକ ସତ୍‌ସ୍ୱତ୍ୱ (ଯେପରି ଆତ୍ମା); ଏବଂ ଯୋଉ ପଦାର୍ଥ (ମ୍ୟାଟର୍) ତାର ଧାରକ, ତାଠୁଁ ମଧ୍ୟ ସ୍ୱାଧୀନ (ଯେପରି ଦେହଠାରୁ ଆତ୍ମା) । ଯୋଉ ଦୋଷରେ ଆରିଷ୍ଟୋଟ୍ଲ ଅଭିଯୁକ୍ତ କରିଚନ୍ତି ପ୍ଲାଟୋଙ୍କୁ, ଏଇ ଆଇଡିଆ ଆରିଷ୍ଟୋଟ୍ଲଙ୍କୁ ଅଭିଯୁକ୍ତ କରିପାରେ ସେଇ ଦୋଷରେ, କାହିଁକିନା, ଫର୍ମ୍, ଯେକୌଣସି ଫର୍ମ୍, ତାଙ୍କ ଦୃଷ୍ଟିରେ ନିର୍ଦ୍ଦିଷ୍ଟ; ତେଣୁ ନିଖିଳ ବା ଇଉନିଭର୍ସାଲ୍ ଠାରୁ ଏକେବାରେ ଅଲଗା, ଅଥଚ ନିର୍ଦ୍ଦିଷ୍ଟର ଅନେକ ଚରିତ୍ରଲକ୍ଷଣ ପରିଦୃଷ୍ଟ ନିଖିଳ ଭିତରେ । ପୁଣି, ଫର୍ମ୍ କୁଆଡ଼େ ମ୍ୟାଟର୍ ଅପେକ୍ଷା ଅଧିକ ପ୍ରତ୍ୟକ୍ଷ । 'ଆଇଡିଆ'କୁ ଏକମାତ୍ର ସତ୍ୟ ବୋଲି ପ୍ଲାଟୋ ଯେମିତି ଖାଡ଼ାକରିଥିଲେ, ଏ ତ ତାର ପ୍ରତିଧ୍ୱନି ମାତ୍ର ! ପ୍ଲାଟୋଙ୍କ ପରାବିଦ୍ୟାର ସଂସ୍କାରସାଧନ, କୋଉହେଲେ ସଦର୍ଥରେ, କରିପାରିନାହାନ୍ତି ଶିଷ୍ୟ; ଏବଂ ପାରିନାହାନ୍ତି ବୋଲି, Eduard Zeller (1814-1908) ଲେଖିଚନ୍ତି : The final explanation of Aristotle's want of clearness of this subject (ମ୍ୟାଟର୍ ଓ ଫର୍ମ୍) is, however, to be found in the fact that he *had* only half emancipated himself, as we shall see, from Plato's tendency to hypostatise ideas. The 'Forms' had for him, as the 'Ideas' had for Plato, a

metaphysical existence of their own, as conditioning all individual things. And keenly as he followed the growth of ideas out of experience, it is none the less true that these ideas, especially at the point where they are farthest removed from experience and immediate perception, are metamorphosed in the end from a logical product of human thought into an immediate presentiment of a supersensible world, and the object, in that sense, of an intellectual intuition.

ବୁଝିବା ଦୁଷ୍କର, କି ଜବାବ ଦେଇପାରିଥାନ୍ତେ ଆରିଷ୍ଟୋଟ୍ଲ ? ଇକୋଆଲିଟି ବା ସମାନତାର 'ଆଇଡିଆ' ବ୍ୟକ୍ତକରିବାକୁ ଯାଇ ପ୍ଲାଟୋ ଅଭିଜ୍ଞତାର ଜଗତରେ ଦେଖିଚନ୍ତି ସମାନ ବୋଲି ପ୍ରତୀୟମାନ ହେଉଥିବା କୌଣସି ଦୁଇଟି ପଦାର୍ଥ ପ୍ରକୃତରେ ପରସ୍ପର ସମାନ ନୁହେଁ; ଅଥଚ ସାମ୍ୟର ଧାରଣା ଗତାନୁଗତିକ ଏକ 'ଫର୍ମ୍' । ସମାନତା ତେଣୁ ନିଖିଳ । ନିର୍ଦ୍ଦିଷ୍ଟ ନ ହୋଇ ସୁଦ୍ଧା ନିଖିଳ । ଆରିଷ୍ଟୋଟ୍ଲଙ୍କ କମାର ଯଦି ଦୁଇଟି ଦସ୍ତା ଗୋଲକ ବନାଏ, ଉଭୟର 'ଫର୍ମ୍' ସେଥିପାଇଁ ଏକାଭଳି ହେବନାହିଁ ମାପ କି ଓଜନରେ । ପ୍ରତିଟି ଗୋଲକର ବର୍ତ୍ତୁଳତାରେ ରହିବ କିଛିନାକିଛି ବିଶେଷତ୍ୱ, ଯୋଉ ବିଶେଷତ୍ୱ ନିର୍ଦ୍ଦିଷ୍ଟ ପୁଣି ଦୈହିକ; ବର୍ତ୍ତୁଳତ୍ୱର ବ୍ୟତିକ୍ରମହୀନ ବିଶ୍ୱବ୍ୟାପୀ ନିଦର୍ଶନ, ଅଥଚ ନିଜେ ବର୍ତ୍ତୁଳତ୍ୱ ନୁହେଁ । ବର୍ତ୍ତୁଳତ୍ୱ ତେଣୁ ବସ୍ତୁନିରପେକ୍ଷ ଏକ ପ୍ରତ୍ୟୟ, ଏବଂ ସେଥିପାଇଁ, ନିଖିଳ କେବଳ ଯା ପ୍ରକଟହୁଏ ନିର୍ଦ୍ଦିଷ୍ଟ ଆକୃତି ବା ମ୍ୟାଟର୍ ରୂପରେ । କିନ୍ତୁ ଆରିଷ୍ଟୋଟ୍ଲ ମାନିବେନାହିଁ । ତାଙ୍କ ପରାବିଦ୍ୟାରେ ବର୍ତ୍ତୁଳତ୍ୱ ଯେହେତୁ ଖାଲି ଆକୃତିର ବୈଶିଷ୍ଟ୍ୟ ନୁହେଁ, ଏକେବାରେ ନିଷ୍କର୍ଷ (ଏସେନ୍ସ), ଇନ୍ଦ୍ରିୟ ସକାଶେ ରହିଯିବ ଅଜ୍ଞେୟ । ବସ୍ତୁ (ମ୍ୟାଟର୍) କ୍ରମଶଃ ହୋଇଯିବ ଅପ୍ରଧାନ, ଏବଂ ଫର୍ମ ଯେହେତୁ ପଦାର୍ଥର ସଂଜ୍ଞା, ନିଷ୍କର୍ଷକୁ ଜାଣିହେବ ହୁଏତ ଏକମାତ୍ର ସଂଜ୍ଞାରୁ । ଅର୍ଥାତ୍, ଜିନିଷଗୁଡ଼ାକ ଏକେବାରେ ଅଜ୍ଞେୟହୋଇ ରହିବେନାହିଁ । ଏ ଅବବୋଧ ତାଙ୍କ ଅନ୍ୟାନ୍ୟ ଅଭିମତ ସହିତ ସଙ୍ଗତିପୂର୍ଣ୍ଣ, ଅବଶ୍ୟ ଫର୍ମ୍ ଯଦି ନିର୍ଦ୍ଦିଷ୍ଟ ବସ୍ତୁ ଦେହରେ ଅନ୍ତର୍ଭୁକ୍ତହୋଇ ରହିଥାଏ । ମାତ୍ର ଫେର୍ ଯଦି କହିବେ, ଯେତେ ପ୍ରକାର ବର୍ତ୍ତୁଳ ଜିନିଷ ଅଛି ଜଗତରେ, ସେତେ ରକମ ବର୍ତ୍ତୁଳ ଫର୍ମ୍ ମଧ୍ୟ ରହିଚି, ଫିଲଜପି ଯିବ ଓଲଟି, କାହିଁକିନା, ଫର୍ମ୍ ଆଉ ଏସେନ୍ସ ପ୍ରତିଭାତ ହେବେନାହିଁ ଅଭିନ୍ନ ଏକରୂପ ।

ଯା' ଉପରେ ଅଛି ବାସ୍ତବ ଓ ସମ୍ଭାବ୍ୟ । ମ୍ୟାଟର୍ ସହିତ ଯୋଡ଼ିହୋଇ ରହିଚି ଫର୍ମ୍‌ର ସମ୍ଭାବ୍ୟତା; ମ୍ୟାଟର୍‌ରେ ଘଟିବ ଯେତେ ପ୍ରକାର ପରିବର୍ତ୍ତନ, ସବୁଗୁଡ଼ାକ ତାଙ୍କ ଦୃଷ୍ଟିରେ 'ବିବର୍ତ୍ତନ' । କାହିଁକିନା ପରିବର୍ତ୍ତିତ ଫର୍ମ୍ କୁଆଡ଼େ ବହୁରୂପୀ, ଏବଂ

ଯୋଉ ଜିନିଷର ରୂପ ଅନେକ, ସେଇ ଜିନିଷହିଁ ବିବେଚିତହେବ ପ୍ରକୃତ ବା ବାସ୍ତବ । ଏକମାତ୍ର ଈଶ୍ୱରହିଁ ତେଣୁ ବିଶୁଦ୍ଧ ଫର୍ମ୍ ଓ ଅନାବିଳ ବାସ୍ତବ, ଏବଂ ସେଥିପାଇଁ, ଘଟେନା କେବେ ତାଙ୍କର ପରିବର୍ତ୍ତନ । ଆଶାପ୍ରଦ ଏଇ ପ୍ରତ୍ୟୟ, କାହିଁକିନା, ଈଶ୍ୱରହିଁ ଜଗତର ପରମକାରଣ । ପରମକାରଣ, କାହିଁକିନା, ଜଗତସ୍ଥିତ ସକଳବସ୍ତୁ କ୍ରମାଗତ ବିକଚିତ ହୋଇଚାଲିଚି ଏପରି ଏକ ଗନ୍ତବ୍ୟକୁ, ବିନା ବ୍ୟତିକ୍ରମରେ ଯା ପୂର୍ବାପେକ୍ଷା ଉନ୍ନତ । ଅର୍ଥାତ୍, ଆରିଷ୍ଟୋଟ୍ଲ ହିଁ ସର୍ବପ୍ରଥମ ପ୍ରବର୍ତ୍ତନକରିଚନ୍ତି ବିବର୍ତ୍ତନ ନାଁରେ ଅଗ୍ରଗତି ଓ ପ୍ରଗତିର ଧାରଣା । ବିବର୍ତ୍ତନର ଆଇଡିଆ ରହିଚି ଅସ୍ୱଷ୍ଟ, କାହିଁକିନା, ସକଳ ବସ୍ତୁରେ 'ସମ୍ଭାବନା' ନିହିତ କୋଉ ମୌଳିକ ଧର୍ମ ନୁହେଁ । ମୌଳିକ ବା ନିଷ୍କର୍ଷ ନୁହେଁ ବୋଲି, କିଛିହେଲେ ଆପେଆପେ ବଦଳିଯାଏନା । ମାର୍ବ୍ଲପଥରକୁ ଯଦି କହୁଁ ସମ୍ଭାବ୍ୟ ଏକ ମୂର୍ତ୍ତି, ବୁଝିବାକୁ ହେବ, ବଡ଼ ଗୋଟାଏ ପଥରଖଣ୍ଡ ଉପରେ ଉପଯୁକ୍ତ କାରିଗରୀ କୌଶଳ ପ୍ରୟୋଗକରି ମୂର୍ତ୍ତି ଗଢ଼ାଯାଇପାରେ । ପଥର ମନକୁମନ ମୂର୍ତ୍ତି ହୋଇଯିବନାହିଁ । କିନ୍ତୁ ଆରିଷ୍ଟୋଟ୍ଲ ମାନିବେନାହିଁ ଆପେକ୍ଷିକତା; ଅରବିନ୍ଦଙ୍କ ଭଳି ଭାବିଚନ୍ତି, ବିବାକ ଜିନିଷ ବଦଳିଯାଇପାରେ ସମ୍ଭାବନାର ସ୍ୱୟଂଚାଳିତ ବିଧାନରେ । ଏ ତତ୍ତ୍ୱଦୃଷ୍ଟି ଜମାରୁ ଅଭିଜ୍ଞତାସିଦ୍ଧ ନୁହେଁ । କେଲର୍ କହିବା ଭଳି, ଇଣ୍ଟେଲେକ୍ଚୁଆଲ୍ ଇଣ୍ଟିଉସନ୍ ।

'ମେଟାଫିଜିକ୍ସ' କହୁଛୁଁ ଯାହାକୁ, ଆରିଷ୍ଟୋଟ୍ଲ ନିଜେ ବ୍ୟବହାର କରିନାହାନ୍ତି ସେ ଚିହ୍ନାୟନ; ଲେଖିଚନ୍ତି 'ଥିୟଲଜି' । 'ଥିଅ' ମାନେ ଦେବତା; 'ଥିୟଲଜି' ମାନେ ବ୍ରହ୍ମବିଦ୍ୟା । ସେ ବିଦ୍ୟା ଯେହେତୁ ରଞ୍ଜିତକରିଚି ତାଙ୍କ ଆଧିଭୌତିକତାକୁ ଆପାଦମସ୍ତକ, ସକୌତୂହଳ ଆକର୍ଷିତ ହେବେ ଭାରତୀୟ ଅତିମାନସ-ସନ୍ଧାନୀ । ଆରିଷ୍ଟୋଟ୍ଲଙ୍କ ଧାରଣା, ଜଗତରେ ଅଛି ତିନିରକମର ସତ୍ତ୍ୱ ବା ଗୁଣଧର୍ମ-ସମ୍ପନ୍ନ ବିଷୟ : ଯା ଇନ୍ଦ୍ରିୟଗ୍ରାହ୍ୟ ତା ନଶ୍ୱର; ଯା ଇନ୍ଦ୍ରିୟଗ୍ରାହ୍ୟ, କିନ୍ତୁ ନଶ୍ୱର ନୁହେଁ; ଏବଂ ଯା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ କି ନଶ୍ୱର ନୁହେଁ । ପ୍ରଥମବର୍ଗରେ ରହିବେ ଗଛଲତା ଓ ପଶୁପକ୍ଷୀ; ଦ୍ୱିତୀୟବର୍ଗରେ ଗ୍ରହନକ୍ଷତ୍ର (ଆରିଷ୍ଟୋଟ୍ଲ ଭାବିଚନ୍ତି, ଗତିସମ୍ପନ୍ନ ହେଲେସୁଦ୍ଧା ଗ୍ରହନକ୍ଷତ୍ର ପରିବର୍ତ୍ତନର ଅଧୀନ ନୁହେଁ); ଏବଂ ଶେଷଟିରେ ଅନ୍ତର୍ଭୁକ୍ତ ମଣିଷର ଯୁକ୍ତିଗ୍ରାହ୍ୟ ଆତ୍ମା ତଥା ସ୍ୱୟଂ ଈଶ୍ୱର । ନଶ୍ୱର ମାନେ ଯାର କ୍ଷୟ ଅଛି , ଯା ପରିବର୍ତ୍ତନର ଅଧୀନ ।

ଭଗବାନ୍ ନାମଧେୟ ବିଷୟର ଲକ୍ଷଣ ଯଥାକ୍ରମେ (୧) ଆଦିକାରଣ, କାହିଁକିନା, ଜଗତରେ ନିଶ୍ଚୟ କୋଉହେଲେ ସତ୍ତା ବର୍ତ୍ତମାନ, ଯିଏ ଗତି ସଞ୍ଚାରକରୁଚି ବିବାକ ପଦାର୍ଥରେ, ଗତିଶୀଳ କରୁଚି ଜଙ୍ଗମକୁ, ନିଜେ କିନ୍ତୁ ରହୁଚି ଅଚଞ୍ଚଳ; (୨) ଏକାଧାରରେ ଚିରନ୍ତନ ଆଦିମୂଳ (ସବ୍ଷ୍ଟ୍ୟାନ୍ସ) ଓ ସତ୍ୟ (ଆ୍ୟାକ୍ଚୁଆଲିଟି); (୩) ସକଳ ବାସନାର ଲକ୍ଷ୍ୟ ଏବଂ ସକଳ ଚିନ୍ତାର ଗନ୍ତବ୍ୟ । ବାସନା ଓ ଚିନ୍ତା ଅବଶ୍ୟ ସବୁରକମ ଗତିର କାରଣ; ମାତ୍ର ଆରିଷ୍ଟୋଟ୍ଲଙ୍କ ମତରେ, ବାସନା ଓ ଚିନ୍ତା ନିଜେ ନିଶ୍ଚଳ; (୪) ଭଗବାନ୍ ଏଇ ରୀତିରେ ସ୍ଥାବରଜଙ୍ଗମ, ସମଗ୍ର ସୃଷ୍ଟିକୁ

ଆକର୍ଷଣକରନ୍ତି ପ୍ରେମଡୋରରେ; ସଂସାର ତାଙ୍କୁ ଭଲପାଏ ବୋଲି , ତାଙ୍କରି ଉଦ୍ଦେଶ୍ୟରେ ଗତିକରେ; (୫) ଅନ୍ୟ ଗତି ମଧ୍ୟ ରହିଚି; ମାତ୍ର ସେ ଗତିର ହେତୁ ଯେହେତୁ ନିଜେ ଗତିଶୀଳ, ଉପୁଜୁଚି ଅନ୍ୟ ପ୍ରକାର ଗତି, ଯେପରି କ୍ରିକେଟ-ବଲ୍ ହେଉଚି ବେଗବାନ୍, (୬) ଭଗବାନ୍ ଏକମାତ୍ର ଶୁଦ୍ଧଚେତନା, କାହିଁକିନା, ମନନ ହିଁ କର୍ମମଧ୍ୟରେ ସର୍ବଶ୍ରେଷ୍ଠ । ଭାରତୀୟ ପରିଭାଷାରେ ଯେପରି ମନନଲବ୍ଧ ଚୈତନ୍ୟହିଁ ସଚ୍ଚିଦାନନ୍ଦ । କିନ୍ତୁ, Life also belongs to God; for the actuality of thought is life, and God is that actuality; and God's self-dependent actuality is life most good and eternal. We say therefore that God is a living being, eternal, most good, so that life and duration continuous and eternal belong to God; for this *is* God (1072ᵇ). It is clear then from what has been said that there is a substance which is eternal and unmovable and separate from sensible things. It has been shown that this substance cannot have any magnitude, but is without parts and indivisible.... But it has also been shown that it is impassive and unalterable; for all the other changes are posterior to change of place (1073-e) । ଏ ଭଗବାନ ତେଣୁ ଖ୍ରୀଷ୍ଟାନ୍ଙ୍କ ଗଡ୍ ନୁହେଁ ଯାର ସଦୟ ତତ୍ତ୍ୱାବଧାନରେ ମଣିଷ ହୁଏ ଆତଯାତ । ଖ୍ରୀଷ୍ଟଧର୍ମ ଅବଶ୍ୟ ବାହାରିଚି ଆରିଷ୍ଟୋଟ୍ଲଙ୍କ ଦେହାନ୍ତର ପ୍ରାୟ ଚାରିଶ'ବର୍ଷ ଉତାରୁ । ଏ ଭଗବାନ୍ ମର୍ତ୍ତ୍ୟଲୋକକୁ ଅନାନ୍ତିନାହିଁ, କାହିଁକିନା, It must be of itself that the divine thought thinks (since it is the most excellent of things), and its thinking is a thinking on thinking (1074b) । ମର୍ତ୍ତ୍ୟଲୋକର ଅସ୍ତିତ୍ୱ ଏଭଳି ଚିନ୍ତାରେ ଧରାପଡ଼ିବନାହିଁ । ମଣିଷ ଭକ୍ତିକରିବ, କିନ୍ତୁ ଭକ୍ତ ଆଡ଼କୁ ଅନାଇବାକୁ ଫୁରୁସଦ୍ ଥିବନାହିଁ ଭଗବାନ୍ଙ୍କର ।

ଭଗବାନ୍ଙ୍କୁ ତେଣୁ 'unmoved mover' କହିଚନ୍ତି ଆରିଷ୍ଟୋଟ୍ଲ । ଏ ବର୍ଣ୍ଣନା କୋଉ ସଂଜ୍ଞା ନୁହେଁ, ଯେହେତୁ ସଂଜ୍ଞାବଦ୍ଧ କରିହେବନାହିଁ ଈଶ୍ୱରଙ୍କୁ । ପକ୍ଷାନ୍ତରେ, ଆରିଷ୍ଟୋଟ୍ଲଙ୍କ ଜ୍ୟୋତିର୍ବିଦ୍ୟା କହୁଚି, ଅନ୍‌ମୁଭ୍‌ଡ୍ ମୁଭର୍ ଆକାଶରେ ବି ଅଛନ୍ତି, ଜଣେ ନୁହେଁ, ୪୫ କି ୪୭(1074ᵃ) । ଭଗବାନ୍ଙ୍କ ସାଙ୍ଗରେ ସମ୍ପର୍କ ଅବଶ୍ୟ ପରିଷ୍କାର ନୁହେଁ । ନିଜେ ସ୍ଥାବରଥାଇ ବିବାକ ସୃଷ୍ଟିକୁ ଗତିଶୀଳକରିବା ଦୁରୂହ ଏକ ପ୍ରତ୍ୟୟ, ବିଶେଷତଃ ପରିବର୍ତ୍ତନର କାରଣ ଯେହେତୁ ସର୍ବଦା ପୂର୍ବବର୍ତ୍ତୀ କୋଉହେଲେ କାରଣ,

ଏବଂ ସେଥିପାଇଁ, ଈଶ୍ୱର ଯଦି ମୂଳରୁ ଅଚଳ, ଜଗତ୍ ମଧ୍ୟ ରହିଥାନ୍ତା ଚିରଦିନ ଏକାପରି ଅଚଳ । ଦେଖିବାକୁ ହେବ ତେଣୁ 'କାରଣ/ହେତୁ' ବିଷୟରେ ଆରିଷ୍ଟୋଟ୍ଲଙ୍କ ପ୍ରତ୍ୟୟର ସ୍ୱଭାବ । କାରଣ ବା ହେତୁ, ତାଙ୍କ ଗଣନାରେ, ଚାରିପ୍ରକାର; ଯଥାକ୍ରମେ, ମେଟିରିଆଲ୍ (ଭୌତିକ), ଫର୍‌ମାଲ୍ (ଆକାରଗତ), ଏଫିସିଏଣ୍ଟ (ଫଳପ୍ରଦ) ଓ ଫାଇନାଲ୍ (ଚୂଡ଼ାନ୍ତ) । ଏକ୍ଷଣି , ମୂର୍ତ୍ତିଗଢ଼ିଥିବା ଘପତିକୁ କରାଯାଉ ଦୃଷ୍ଟାନ୍ତ । ମୂର୍ତ୍ତିଟିର ଭୌତିକ କାରଣ ମାର୍ବଲ୍‌ପଥର ଆକାରଗତ କାରଣ, ନିର୍ମିତ ମୂର୍ତ୍ତି ପ୍ରକଟକରିବ ଯୋଉ ଗୂଢ଼ଭାବ ବା ଏସେନ୍ସ ଫଳପ୍ରଦ କାରଣ ମାର୍ବଲ୍‌ଉପରେ ମୁଗୁର କି ଛେଣିର ପ୍ରୟୋଗ ଏବଂ ଚୂଡ଼ାନ୍ତ କାରଣ ବିନ୍ଧାଣୀ ଯୋଉ ଉଦ୍ଦେଶ୍ୟକୁ ମୁଣ୍ଡରେ ରଖି ମୂର୍ତ୍ତିଗଢ଼ିବା କାମରେ ହାତ ଲଗାଇଚି । ଆଜିକାଲିକା ଶବ୍ଦଚୟନରେ, 'କାରଣ' ଶବ୍ଦ ପ୍ରୟୋଗ କରାଯିବ କେବଳ 'ଏଫିସିଏଣ୍ଟ କଜ୍' ଅର୍ଥରେ, ଏବଂ 'ଅନ୍‌ମୁଭ୍‌ଡ୍ ମୁଭର୍' ହେବ 'ଫାଇନାଲ୍ କଜ୍' ବା ଚୂଡ଼ାନ୍ତ କାରଣ, କାହିଁକିନା, ପରିବର୍ତ୍ତନର ଅସଲ ଉଦ୍ଦେଶ୍ୟ ଆସୁଚି ଅଚଳ-ଚାଳକ ପାଖରୁ । ପରିବର୍ତ୍ତନର ଉଦ୍ଦେଶ୍ୟ ( ଶିଳ୍ପୀର ଗୂଢ଼ଭାବ) ସ୍ପଷ୍ଟତଃ ମଣିଷର ବିବର୍ତ୍ତନ; ବିକଶିତହୋଇ ଈଶ୍ୱରଙ୍କ ସମରୂପ ପ୍ରାପ୍ତି । ଆରିଷ୍ଟୋଟ୍ଲ ଧାର୍ମିକ ନଥିଲେ ମାତ୍ର ଏଇ ପ୍ରତ୍ୟୟଟା ଆଂଶିକ ଧର୍ମୀୟ । କାହିଁକିନା, ଧର୍ମୀୟ ବୟାନରେ ଈଶ୍ୱର ଚିରକାଳ ଶୁଦ୍ଧଚୈତନ୍ୟ, ପରମାନନ୍ଦ, ସିଦ୍ଧକାମ, ପୂର୍ଣ୍ଣବ୍ରହ୍ମ; ଅଥଚ ଇନ୍ଦ୍ରିୟଗୋଚର ଜଗତ୍ ଚିରକାଳ ତ୍ରୁଟିପୂର୍ଣ୍ଣ । ହେଲେସୁଦ୍ଧା, ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ରହିଚି ଜୀବନ, ବାସନା, ଭାବନା, ଆଗକୁ ଯିବାର ବ୍ୟାକୁଳତା; ଯଦିଓ ଏଗୁଡ଼ାକ ବିବାକ ଅପୂର୍ଣ୍ଣ ଓ ଆବିଳ । ପ୍ରାଣୀ ମାତ୍ରକେ ଈଶ୍ୱର-ସଚେତନ, ଅଳ୍ପ-ବିସ୍ତର । ସେଇ ଚେତନା ଯୋଗାଏ ଜୀବପିଣ୍ଡକୁ କର୍ମପ୍ରେରଣା । ଯୋଗାଏ ବୋଲି, ସକଳ କର୍ମର ଅନ୍ତିମ ଲକ୍ଷ୍ୟ ନିର୍ବିକଳ୍ପ ଈଶ୍ୱର । ପରିବର୍ତ୍ତନ ମାନେ ବସ୍ତୁଜଗତର ରୂପାନ୍ତର, ମ୍ୟାଟର୍‌କୁ ଫର୍ମ-ପ୍ରଦାନ । ଇନ୍ଦ୍ରିୟଗ୍ରାହ୍ୟହେବା କାରଣରୁ କିନ୍ତୁ ରୂପାନ୍ତରିତ ମ୍ୟାଟର୍ ବି ରହିଯିବ ଅଚେତନ, ଆଂଶିକଭାବେ ଅନ୍ତତଃ । ଈଶ୍ୱର ସେଥିପାଇଁ ଏକମାତ୍ର ଅ-ବସ୍ତୁ ବା ଅ-ଜଡ଼ । ଅଥଚ ଜଗତ୍ ଅବିରାମ ଆଗେଇ ଚାଲୁଚି ରୂପାନ୍ତରିତହେବା ପ୍ରକ୍ରିୟାରେ (evolving towards a greater degree of form ), ଏବଂ ଫଳତଃ, ଆହରଣକରୁଚି ଉତ୍ତରୋତ୍ତର ଈଶ୍ୱର-ସାରୂପ୍ୟ । ମାତ୍ର ପହଞ୍ଚିପାରିବନାହିଁ ଚୂଡ଼ାନ୍ତ ପରିଣତିରେ, କାହିଁକିନା, ବସ୍ତୁଗୁଣ ( ଜାଡ୍ୟ) ନିର୍ମୂଳ ହେବନାହିଁ କଦାପି ।

ଫିଲଜଫି ନକହି ରିଲିଜନ୍ କହିବାହିଁ ସମୁଚିତ । କିନ୍ତୁ ଏ ରିଲିଜନ୍ କ୍ରମବିବର୍ତ୍ତନ ଓ ପ୍ରଗତିର ରିଲିଜନ୍; ଈଶ୍ୱରଙ୍କ ସ୍ଥାବର ନୈତିକତା ଅପୂର୍ଣ୍ଣ ମଣିଷର ଆତ୍ମସମର୍ପଣ ଭିତରଦେଇ ଗତିଶୀଳ କରୁଚି ପୃଥିବୀକୁ । ମାତ୍ର ଧର୍ମୀୟ ବିଭାବକୁ ଛାଡ଼ିଦେଲେ ମଧ୍ୟ, ଲକ୍ଷ୍ୟକରିହେବ ଜ୍ଞାନର ଅ-ଚାଞ୍ଚଲ୍ୟ ଉପରେ ଆରିଷ୍ଟୋଟ୍ଲଙ୍କ ଗ୍ରୀକ୍‌ସୁଲଭ ଦୃଢ଼ ଆସ୍ଥା । ଜ୍ଞାନ ତାଙ୍କପାଇଁ ସ୍ଥାବର, ଅଗତିର ଗତି । କର୍ମ ଅପେକ୍ଷା ଧ୍ୟାନ ପ୍ରତି ତେଣୁ ଅଧିକ

ଆଗ୍ରହ । ପ୍ଲାଟୋଙ୍କ ଜ୍ଞାନଯୋଗ କିନ୍ତୁ ଗଣିତକୁ କରିଚି ଅବଲମ୍ବନ; କାହିଁକିନା ଗଣିତ ବୁଝାଇଦିଏ ହାରମୋନି ବା ଐକ୍ୟତାନ, ଯେପରି ଜ୍ୟାମିତି ବୁଝାଇଦିଏ ସୃଷ୍ଟିର ଶୃଙ୍ଖଳା ବା ବିନ୍ୟାସ । ଆରିଷ୍ଟୋଟ୍ଲ ଈଶ୍ୱରପ୍ରାପ୍ତି ପ୍ରଣାଳୀକୁ କରିଚନ୍ତି କିନ୍ତୁ ଜୈବିକ ( ଜ୍ୟାମିତି ଜାଗାରେ ପ୍ରାଣୀବିଜ୍ଞାନ) । ପ୍ଲାଟୋଙ୍କ ସହିତ ଏ ପାର୍ଥକ୍ୟ ଆତ୍ମ-ସମ୍ବନ୍ଧୀୟ ଅବବୋଧରେ ସୁସ୍ପଷ୍ଟ । କିନ୍ତୁ ଅମରତ୍ୱ ବା ଅମରତ୍ୱର ଭିନ୍ନ କୋଉ ସଂସ୍କରଣ, ଆରିଷ୍ଟୋଟ୍ଲଙ୍କ ଦର୍ଶନରୁ ଅବିଚ୍ଛେଦ୍ୟ କି ନୁହେଁ, ସେ ବିଷୟରେ ଐକମତ ଦେଖାଯାଏନା ମାତ୍ର ଅରବିନ୍ଦଙ୍କ ଦିବ୍ୟଜୀବନ ପ୍ରକଳ୍ପରେ ମଣିଷକୁ ଦେବୋପମ କରିବା ଉତ୍ସାହ ଆରିଷ୍ଟୋଟ୍ଲଙ୍କ ଅଧିବିଦ୍ୟାର ହିଁ ଅବଦାନ । ଗ୍ରୀକ୍‌ଭାଷାରେ ବ୍ୟୁତ୍ପତ୍ତି ସକାଶେ ଛାତ୍ର ଅରବିନ୍ଦଙ୍କୁ ପୁରସ୍କାର ମିଳିଚି କେମ୍ବ୍ରିଜ୍‌ରୁ ।

ଆଭେରୋଇସ୍ କହିଚନ୍ତି, ମଣିଷ ଅମର ହୋଇପାରିବ ବୋଲି କଳ୍ପନା କରିନାହାନ୍ତି ଆରିଷ୍ଟୋଟ୍ଲ; ଆଭେରୋଇସ୍‌ଙ୍କ ଶିଷ୍ୟ ଏପିକ୍ୟୁରିଆନ୍‌ଙ୍କୁ ଦାନ୍ତେ କିନ୍ତୁ ଦେଖିଥିଲେ ନରକ-କୁଣ୍ଡରେ । ଆରିଷ୍ଟୋଟ୍ଲଙ୍କ ମତବାଦ ତେଣୁ ଏତେ ଜଟିଳ ଯେ ସହଜରେ କରିହେବ ବିପରୀତବ୍ୟାଖ୍ୟା; ତେବେ *ଅନ୍ ଦି ସୋଅଲ୍* ଗ୍ରନ୍ଥରେ ନିଜେ ସ୍ପଷ୍ଟକରିଦେଇଚନ୍ତି ଯେ ଆତ୍ମାକୁ ବେଷ୍ଟନ କରିରଖିଚି ଦେହ; ତେଣୁ ଦେହର ବିନାଶ ସଙ୍ଗେ ସଙ୍ଗେ ଆତ୍ମା ବି ହୁଏ ବିନଷ୍ଟ । ଆତ୍ମାର ଦେହାନ୍ତର ଗମନ ଭଳି ପିଥାଗୋରୀୟ ପ୍ରସ୍ତାବକୁ କଟାକ୍ଷ ମଧ୍ୟ କରିଚନ୍ତି ଆରିଷ୍ଟୋଟ୍ଲ (407ᵇ) : It indubitably follows that the soul is inseparable from its body (413ᵃ); ମାତ୍ର ତତ୍କ୍ଷଣାତ୍ ଯୋଡ଼ିଦେଇଚନ୍ତି : Or at any rate certain parts of it are । ଏ ଅବଲୋକନରେ ଦେହ ମ୍ୟାଟର୍ ଆଉ ଆତ୍ମା ଫର୍ମ୍ : the soul must be a substance in the sense of the form of a material body having life potentially within it. But substance is actuality, and thus soul is the actuality of a body as above characterised (412ᵃ) । ପୁଣି, ଆତ୍ମା is substance in the sense which corresponds to the definitive formula of a thing's essence. That means that it is the 'essential whatness' of a body of the character just assigned (ମାନେ, ପ୍ରାଣବନ୍ତ ଦେହ) 412ᵇ । The soul is the first grade of actuality of a natural body having life potentially in it. The body so described is a body which is organised (412ᵃ) । To ask whether soul and body are one is as meaningless as to ask whether the wax and the shape given it by the stamp are one

(412ᵇ)। Self-nutrition is the only psychic power possessed by plants (413ᵃ)। The soul is the final casue of the body (414ᵃ) । ଗହନ ପାଠ !

ଲକ୍ଷ୍ୟକରିବା କଥା, ଇଂରେଜୀ ଉଦ୍ଧୃତିରେ 'ଆ୍ୟାକ୍‌ଚୁଆଲ୍' ଓ 'ପୋଟେନ୍‌ସିଆଲ୍' ଭଳି ବିଶେଷଣ ବ୍ୟବହୃତ ହୋଇଚି 'ଆତ୍ମା'ର ଅବସ୍ଥା ଦର୍ଶାଇବା ସକାଶେ । ଆକ୍‌ଚୁଆଲ୍ ମାନେ ନିଜ ସ୍ୱଭାବ ବା ଏସେନ୍ସକୁ ବହନକରି ଯୋଉ ଆତ୍ମା ପରିଣତି ଆଡ଼କୁ ଗତିକରୁଚି । ପୋଟେନ୍‌ସିଆଲ୍ ମାନେ ଯୋଉ ଆତ୍ମା ଗତିହୀନ, କିନ୍ତୁ ଆକ୍‌ଚୁଆଲ୍ ହେବା ସମ୍ଭାବନା ତା ଭିତରେ ସୁପ୍ତ ରହିଚି, ବାସ୍ତବରେ କି ପରିଣତିରେ ପହଞ୍ଚିବ, ଜଣାପଡୁନାହିଁ, କାହିଁକିନା, ଏସେନ୍ସ ସେଠି ପ୍ରକଟ ନୁହେଁ । ଯନ୍ତା କି ଫାଶ ଭଳି ଏଇ ପ୍ରତ୍ୟୟ, କାହିଁକିନା, ଆତ୍ମା ଗଛ ହେବ କି ପତଙ୍ଗ ହେବ କି ମଣିଷ ହେବ, ଅନିଶ୍ଚିତ । ଆରିଷ୍ଟୋଟ୍‌ଲ୍ ଜୀବବିଦ୍ୟା ଚର୍ଚ୍ଚାରୁ ଏଭଳି ନାନାଦି ଆନୁମାନରେ ପହଞ୍ଚିଚନ୍ତି, କାହିଁକିନା, ଡିଏନ୍‌ଏ କି ଜିନିଷ ମାଲୁମ୍ ନଥିଲା । ଡିଏନ୍‌ଏ ମଲିକିଉଲ୍ କହିଦେଇପାରିବ ତଥାକଥିତ ଆତ୍ମା କି ରୂପ (ଦେହ) ପରିଗ୍ରହ କରିପାରେ ।. ମୋଟ୍ କଥା, ଆରିଷ୍ଟୋଟ୍‌ଲ୍ ଦର୍ଶନବିଦ୍ୟାକୁ ଯେପରି ଫଳିତ ବିଜ୍ଞାନର ଆସନରେ ବସାଇବାକୁ ଚାହିଁଚନ୍ତି, ମୂଳରୁ ତା ମେଟାଫିଜିକ୍ସ ପଦବାଚ୍ୟ ନୁହେଁ; କାଣ୍ଡଜ୍ଞାନ ଭଳି କୁସଂସ୍କାର ହୁଏତ ।

ଏ ବହିରେ କିନ୍ତୁ ଆତ୍ମା ଆଉ ଚିତ୍ତ ଭିତରେ ଯୋଉ ପାର୍ଥକ୍ୟ ନିର୍ଦ୍ଦେଶକରିଚନ୍ତି ଆରିଷ୍ଟୋଟ୍‌ଲ୍, ଚିତ୍ତ ପାଇଚି ଆତ୍ମା ଉପରେ ପ୍ରାଧାନ୍ୟ, କାହିଁକିନା, ମନ କୁଆଡ଼େ ଦେହ ଉପରେ ସେତେବେଶି ନିର୍ଭରକରେନା, ଯେତେ କରିଥାଏ ଆତ୍ମା । ଆତ୍ମା ସହିତ ଜୀବପିଣ୍ଡର ଅଙ୍ଗାଙ୍ଗୀଭାବ ବୁଝାଇସାରି ଫେର୍ କହିଚନ୍ତି,The case of the mind is different; it seems to be an independent substance implanted within the soul and to be incapable of being destroyed (408ᵇ) । ତା ଛଡ଼ା, we have no evidence as yet about mind or the power to think; it seems to be a widely different kind of soul, differing as what is eternal from what is perishable, it alone is capable of existence in isolation from all other psychic powers. All the other parts of soul, it is evident from what we have said, are, in spite of certain statements, to the contrary, incapable of separate existence (413ᵇ ) । ତେଣୁ, ଆତ୍ମାରେ ସ୍ଥିତହେଲେସୁଦ୍ଧା, ଆତ୍ମାଠାରୁ ସାମର୍ଥ୍ୟରେ ମନ ସ୍ୱାଧୀନ ଓ ଅଧିକ ଶକ୍ତିଶାଳୀ, କାହିଁକିନା, ଆତ୍ମା ଭଳି ଦେହର ଆବରଣ ନୁହେଁ ମନ; ସ୍ୱାଧୀନ ଅବସ୍ଥାନରୁ ଗଣିତ ଓ ଦର୍ଶନ ବିଷୟରେ

ଚିନ୍ତାକରିପାରେ । ମନର ଯା ଉପଲକ୍ଷ୍ୟ, କାଳସୀମାରେ ଆବଦ୍ଧ ନୁହେଁ ସେଥିପାଇଁ । କାଳାତୀତକୁ ଧାରଣ ଓ ବହନକରେ ବୋଲି ମନ ମଧ୍ୟ ନିଜେ କାଳାତୀତ । ଆତ୍ମା କିନ୍ତୁ ଦେହକୁ କରେ ଗତିବାନ୍, ଇନ୍ଦ୍ରିୟଗୋଚରକୁ କରେ ପ୍ରତ୍ୟକ୍ଷ । ଆତ୍ମପୁଷ୍ଟି, ଇନ୍ଦ୍ରିୟସମ୍ବେଦନ ଓ ଇଚ୍ଛାଶକ୍ତି ତାର ସ୍ୱଭାବସିଦ୍ଧ (413ª) । ମାତ୍ର ମନର କର୍ତ୍ତବ୍ୟ ମଧ୍ୟ ମହତ୍; ଯେପରି, ବିଚାରବିବେଚନା, କଳ୍ପନା, ଉଦ୍‌ଭାବନ ଓ ସିଦ୍ଧାନ୍ତଗ୍ରହଣ । ଦେହ କି ଇନ୍ଦ୍ରିୟ ସାଙ୍ଗରେ ତେଣୁ ପ୍ରତ୍ୟକ୍ଷ ସଂସ୍ରବ ନାହିଁ । ମନର କାମଗୁଡ଼ାକ ବି ଚିରକାଳୀନ । କର୍ତ୍ତବ୍ୟକର୍ମର ବିନାଶନାହିଁ ବୋଲି ମନ ପୁଣି ଅଜର ଓ ଅମର । ଅନ୍ୟ ଶବ୍ଦରେ, ଆତ୍ମାର ଅଂଶବିଶେଷ ଭାବରେ ମନ ଅମରତ୍ୱ ଦାବିକଲାବେଳେ, ଅନ୍ୟ ଅଂଶଗୁଡ଼ିକ ସେ ଦାବିରୁ ବଞ୍ଚିତ ।

ଆତ୍ମା ବିଷୟରେ ଆରିଷ୍ଟୋଟ୍‌ଲଙ୍କ ମତବାଦକୁ ବୁଝିବାକୁ ଚେଷ୍ଟାକଲାବେଳେ ସ୍ମରଣରଖିବାକୁ ପଡ଼ିବ ଯେ ଆତ୍ମା ଗୋଟିଏ 'ଫର୍ମ୍', ଦେହର ଫର୍ମ୍ । 'ଫର୍ମ୍' ଏକ ପାରିଭାଷିକ ଶବ୍ଦ । ଦେହର ଆକୃତି ସହିତ ଆତ୍ମା ଯୁକ୍ତହେବା ଉତାରୁ, ଆକାରଯୁକ୍ତ ସେଇ ଫର୍ମ୍ ମଧ୍ୟ ଆଉଏକ ଫର୍ମ୍ । ତାହେଲେ, ଆତ୍ମା ଓ ଆକାରଯୁକ୍ତ ସତ୍ତା ଭିତରେ ସମଭାବେ ଧୃତ ଅନ୍ୟ କି ଜିନିଷ ? ସମ୍ଭବତଃ, ବସ୍ତୁ (ମ୍ୟାଟର୍)କୁ ଇଉନିଟି ପ୍ରଦାନକରିବା ସାମର୍ଥ୍ୟ । ଯେପରି, ମାର୍ବଲ୍‌ମୂର୍ତ୍ତିର ଉଦାହରଣ । ଭାରତୀୟ ଦର୍ଶନରେ ମଧ୍ୟ ବିବାଦଭଞ୍ଜନ ସକାଶେ ସୁନାକୁଣ୍ଡଳ ଓ ହାଣ୍ଡିଆଟିକା ତିଆରିର ଉଦାହରଣ ଦିଆଯାଇଚି । ବଡ଼ ଚକାଏ ପଥରର ଯୋଉ ଅଂଶ, ପଛକୁ ମୂର୍ତ୍ତି ଆକୃତି ଧାରଣକରିବ, ବଡ଼ଖଣ୍ଡରୁ କାଟି ତାକୁ ଅଲଗା ନକରିବାଯାଏଁ, ଭଗ୍ନାଂଶ ଆରିଷ୍ଟୋଟ୍‌ଲଙ୍କ ଦୃଷ୍ଟିରେ ପଦାର୍ଥ (thing) ନୁହେଁ, କାହିଁକିନା, ସେଥିରେ ହେତୁଗତ ଅନ୍ୱୟ ବା ଇଉନିଟି ନାହିଁ । ବିନ୍ଧାଣୀ ତାକୁ କାଟିଚାଞ୍ଛି ରୂପ ଦେବାପରେ ପାଇଚି ଅନ୍ୱୟ, ଏବଂ ସେ ଇଉନିଟି ଆସିଚି ପଥରଖଣ୍ଡ ଆକାରଯୁକ୍ତ ହେବା କାରଣରୁ । ଏକ୍ଷଣି, ଆତ୍ମାର ଅପରିହାର୍ଯ୍ୟ ଉପାଧି, ଯା ବଳରେ ସେ ହୋଇଚି ଦେହର 'ଫର୍ମ୍', ଦେହକୁ ଦେଉଚି ଜୈବିକ ସମଗ୍ରତା । ଏବଂ, ଏ ଅନ୍ୱୟପ୍ରଦାନ ପ୍ରକ୍ରିୟାରେ ବିଭିନ୍ନ ଅଭିପ୍ରାୟ ମଧ୍ୟ ଉପାଦାନବିଶେଷ, କାହିଁକିନା,ଏକକ ଓ ବିଚ୍ଛିନ୍ନ ଅବସ୍ଥାନରେ ମଧ୍ୟ ଯେକୌଣସି ଅବୟବ ବା ଇନ୍ଦ୍ରିୟର ନିଜସ୍ୱ ଅଭିପ୍ରାୟ ଥାଇପାରେ; ମାତ୍ର ବିଚ୍ଛିନ୍ନ ଏକକ ଅବସ୍ଥାନରେ ସେ ଅଭିପ୍ରାୟ ସକ୍ରିୟ ହୋଇପାରେନା, ଆଖି ଦେଖିପାରେନା କି କାନ ଶୁଣିପାରେନା । ଏଇ ଅର୍ଥରେ, ସଙ୍ଗଠନ ବା ଆକୃତି (ଫର୍ମ୍) ପ୍ରଦାନକରେ ପ୍ରକୃତ ଅସ୍ତିତ୍ୱ (ଆକ୍ଟୁଆଲିଟି) । ଗଛବୃକ୍ଷ କି ପଶୁପକ୍ଷୀ ଉପରେ ଯା ଆରୋପକରେ ପ୍ରକୃତ ଅସ୍ତିତ୍ୱ, ଆରିଷ୍ଟୋଟ୍ଲ ତାକୁ ହିଁ କହିଚନ୍ତି 'ଆତ୍ମା' (ସୋଅଲ୍) । ମନ ଅବଶ୍ୟ ଅଲଗା ଜିନିଷ; ଦେହର ସଙ୍ଗଠନ ସକାଶେ ଅପରିହାର୍ଯ୍ୟ ନୁହେଁ । ହୁଏତ ଆତ୍ମାର ଅଂଶବିଶେଷ, କିନ୍ତୁ ପ୍ରାଣୀକୁଳର ଅତିଅଳ୍ପ ପ୍ରଜାତି ଭିତରେ ତାର ଅଧିଷ୍ଠାନ (415ª) । ସେଇ ଚିତ୍ତ, ଧ୍ୟାନଶକ୍ତି ରୂପରେ, ହୋଇପାରେନା ଗତି (ମୁଭ୍‌ମେଣ୍ଟ)ର

ହେତୁ (କଜ୍), ମାତ୍ର it never thinks about what is practicable, and never says what is to be avoided or what pursued (432ᵇ) । ଭାବିବା ସହିତ ଉପଯୋଗିତାର ତେଣୁ ସଂପର୍କ ନାହିଁ । ଭାବିବା ମାନେ ନିରାଲମ୍ବ ଏକାଗ୍ର ମନନ ।

ଅନୁରୂପ ଏକ ମତବାଦ ଅଛି *Nicomachean Ethics*ରେ (ଆରିଷ୍ଟୋଟ୍ଲଙ୍କ ପିତା ଓ ପୁତ୍ର ଉଭୟଙ୍କ ନା ଥିଲା ନିକୋମ୍ୟାକସ୍); ପରିଭାଷା ଯଦିଓ ଏକା ନୁହଁ । ଯେପରି, ଆତ୍ମାକୁ ଗଠିତକରେ ଯେତେ ଉପାଦାନ ତନ୍ମଧ୍ୟରୁ ଯୁକ୍ତି ଅନ୍ୟତମ, ଅନ୍ୟ ଉପାଦାନଯାକ ଅଯୁକ୍ତି । ଯୁକ୍ତିର ଅଛି ଫେର୍ ଦୁଇଟି ପ୍ରସ୍ଥ; ଗୋଟିଏ ପ୍ରସ୍ଥ ଉଦ୍ଭିଦ ଭଳି ବୋଧଶକ୍ତିହୀନ; ମାତ୍ର ବିବାକ ଜୀବନ୍ତ ସତ୍ତା (ଜୀବପିଣ୍ଡ) ଭିତରେ, ଏପରିକି, ଲତା ଗୁଳ୍ମ କୀଟପତଙ୍ଗ ଭିତରେ ସେ ପ୍ରସ୍ଥ ବିଦ୍ୟମାନ । ଦ୍ୱିତୀୟ ପ୍ରସ୍ଥଟି, କ୍ଷୁଧା ତୃଷା ଓ ଯୌନବାସନା ପରି ସକ୍ରିୟ (1102ᵇ) । କିନ୍ତୁ ଯୁକ୍ତିପ୍ରବଣ ଯୋଉ ଆତ୍ମା, ଚିନ୍ତାକରିବା ତା ପକ୍ଷରେ ଅନିବାର୍ଯ୍ୟ । ମନନରେହିଁ ତାର ଆନନ୍ଦ; ପୂର୍ଣ୍ଣତମ ଆନନ୍ଦ ଯଦିଓ ଅପସୃୟମାଣ ପ୍ରହେଳିକା ତା ପାଇଁ, କାହିଁକି ନା : such life would be too high for man; for it is not in so far as he is man that he will live so, but in so far as something divine present in him; and by so much as this is superior to our composite nature is its activity superior to that which is the exercise of the other kind of virtue (the practical kind). If reason is divine, then, in comparison with man, the life in accordance with it is divine in comparison with human life. But we must not follow those who advise us, being men, to think of human things, and being mortal, of mortal things, but must, so far as we can, make ourselves immortal, and strain every nerve to live in accordance with the best thing in us; for even if it be small in bulk, much more does it in power and worth surpass everything (11776) । ଯାକୁହିଁ ଅରବିନ୍ଦ କହିଚନ୍ତି ଦିବ୍ୟଜୀବନ ।

ଅନ୍ୟ ଶବ୍ଦରେ, ବ୍ୟକ୍ତିସତ୍ତା ( ଅହଂବୋଧ) ହିଁ ଜଣକୁ ଅନ୍ୟସମସ୍ତଙ୍କଠୁଁ ଅଲଗାକରି ଚିହ୍ନାଇଦିଏ । ସେଇ ଅହଂବୋଧ ( ଜୀବପିଣ୍ଡ) ଓ ତନ୍ମଧ୍ୟସ୍ଥ ଅ-ଯୁକ୍ତି ଆତ୍ମାର ଅନ୍ୟତମ ପ୍ରସ୍ଥ । କିନ୍ତୁ ଯୋଉ ଆତ୍ମାକୁ ଅଧିକାରକରିଚି ଯୁକ୍ତି, ତା ଶୁଦ୍ଧଚୈତନ୍ୟ ( ମାଇଣ୍ଡ), ଏବଂ ସେଥିପାଇଁ, ବ୍ୟକ୍ତିସତ୍ତା ଅହଂବୋଧରୁ ମୁକ୍ତ, ଅ-ବ୍ୟକ୍ତି । ଉଦାହରଣ

ସ୍ୱରୂପ, ଜଣେ ତେନ୍ତୁଳି ଖାଇବାକୁ ଭଲପାଏ, ଆଉଜଣେ ମିଶିରି; ସେଇ ପାର୍ଥକ୍ୟ ବୁଝାଇଦିଏ ସେମାନେ ପୃଥକ୍ ଦୁଇବ୍ୟକ୍ତି; ମାତ୍ର ଯେତେବେଳେ ପଣକିଆ କି ହରଣଗୁଣନ ଅଭ୍ୟାସକରିବେ,ନିୟମମାଫିକ୍ ଯଦି ଚିନ୍ତାକରନ୍ତି , ଦୁହିଁଙ୍କ ଭିତରେ ଦିଶିବନାହିଁ ବିନ୍ଦୁମାତ୍ର ପାର୍ଥକ୍ୟ । ଅଯୁକ୍ତି ହିଁ ତିଆରିକରେ ଭେଦ, ଯୁକ୍ତି ତିଆରିକରେ ଅନ୍ୱୟ (ମିଳନ) । ସେଥିପାଇଁ ଚିତ୍ତର ଅମରତ୍ୱ, ଭିନ୍ନଭିନ୍ନ ଲୋକଙ୍କ ବ୍ୟକ୍ତିଗତ ଅମରତ୍ୱ ନୁହେଁ, ଈଶ୍ୱରଙ୍କ ଅମୃତ ଅସ୍ତିତ୍ୱର ଉଦ୍‌ଭାସନ ମାତ୍ର । ସ୍ପଷ୍ଟତଃ, ବ୍ୟକ୍ତିଗତ ବନ୍ଧନମୁକ୍ତିକୁ ଆରିଷ୍ଟୋଟ୍ଲ ଅମଳ ଦେଇନାହାନ୍ତି, ଦେଇଚି ଖ୍ରୀଷ୍ଟଧର୍ମ । ଆରିଷ୍ଟୋଟ୍ଲଙ୍କ ଧାରଣା , ଯୌକ୍ତିକତା ଯଦି ନିୟାମକ, ଯୁକ୍ତି ତେବେ ବସ୍ତୁତଃ ଦିବ୍ୟଚେତନାର ପରିପ୍ରକାଶ, ଯୋଉ ଦିବ୍ୟଚେତନା ଅଜର ଅକ୍ଷୟ ଅମର । ସେ ଚେତନାକୁ ଅନ୍ତରରେ ସମୃଦ୍ଧକରିବାକୁ ମଣିଷ ଯତ୍ନକରିପାରେ, ଏବଂ ଯତ୍ନ କରିପାରିବା ତାର ଶ୍ରେଷ୍ଠ କର୍ତ୍ତବ୍ୟ (ଭର୍ଚୁ୍ୟ) । ସେ କାମରେ କୃତାର୍ଥହେବା ମାନେ ସର୍ବମାନବକୁ ଅନ୍ତଃକରଣରେ ଉପଲବ୍ଧି, ଅହଂକାରର ବିଲୟ ।

  

ଏଇ ବ୍ୟାଖ୍ୟା ଯେ ଆରିଷ୍ଟୋଟ୍ଲଙ୍କୁ ବୁଝିବାକୁ ଅମୋଘ, ସେ ରକମ ଦାବି ଅନ୍ୟାୟ କାହିଁକିନା, ଯୋଉ ବିଜ୍ଞଜନ ଭାବବାଦ ସହିତ ସେତୁ ବାନ୍ଧିବାକୁ ଉତ୍ସୁକ, ସେମାନେ ଅନ୍ତତଃ, *ମେଟାଫିଜିକ୍ସ* ଗ୍ରନ୍ଥକୁ ପଢ଼ିଚନ୍ତି ଭିନ୍ନ ପ୍ରତ୍ୟାଶାରେ । କାହିଁକିନା *ମେଟାଫିଜିକ୍ସ* ଆରମ୍ଭରେ ଆରିଷ୍ଟୋଟ୍ଲ କହିଚନ୍ତି, All men by nature desire to know. An indication of this is the delight we take in our senses; for even apart from their usefulness they are loved for themselves; and above all others the sense of sight. For not only with a view to action; but even when we are going to do anything, we prefer sight to almost everything else. The reason is that this, most of all the senses, makes us know and brings to light many differences between things । ମଣିଷ ଭିତରେ କର୍ମରତ ଅସଂଖ୍ୟ ବାସନା । ଆରିଷ୍ଟୋଟ୍ଲ ସେଗୁଡ଼ିକ ଶୀର୍ଷରେ ବସାଇଚନ୍ତି ଜିଜ୍ଞାସାକୁ । ତେବେ,ସବୁଲୋକଙ୍କ ଜୀବନରେ ଜିଜ୍ଞାସା ପ୍ରବଳ ନୁହେଁ । ତା ହେଲେ, ଜାଣିଲେ କେମିତି ଜିଜ୍ଞାସା ସର୍ବକ୍ଷଣ ଅଥୟକରୁଚି ମଣିଷକୁ ? ଜାଣିଲେ, ମଣିଷ ଯେହେତୁ ଚିରଅତୃପ୍ତ । ଚିରଅତୃପ୍ତ ମାନବ ସ୍ୱାଭାବିକଭାବେ ଖୋଜିବ ଅତୃପ୍ତିର କାରଣ, ବାସନାର ଆଧେୟ । ସେ ଆଧେୟ ଯଦି ଧନ କି କ୍ଷମତା, ତେବେ ତାଡ଼ନାକରୁନାହିଁ ଜ୍ଞାନପିପାସା । ଜ୍ଞାନ ଖୋଜେ ଲୋକ ବୁଝିପାରିବାକୁ, ଜ୍ଞାନର ଲକ୍ଷ୍ୟ ତେଣୁ ଜ୍ଞାନ ନିଜେ । ଏବଂ ସେ

ଅନ୍ୱେଷଣର ଅପରିହାର୍ଯ୍ୟ ସର୍ତ୍ତ ଅବସର । ନିତ୍ୟପ୍ରୟୋଜନର ଅଭାବ ମେଣ୍ଟାଇସାରିବା ଉତାରୁ ମଣିଷ ଖୋଜିବ ବିଜ୍ଞାନ କି ଫିଲଜପି, ପ୍ରାତ୍ୟହିକ ଜୀବନଯାତ୍ରାରେ ଯାର ଗୁରୁତ୍ୱ ସାଧାରଣତଃ ନଗଣ୍ୟ । ଯେପରି, ଇଜିପ୍ଟ୍‌ରେ ଅବସରଭୋଗୀ ଏକ ଯାଜକଶ୍ରେଣୀ ଖୋଜିପାଇଚନ୍ତି ପ୍ରଥମେ ଗଣିତ । ଅନବସ୍ତ୍ରର ସଂସ୍ଥାନ ସକାଶେ ଗଣିତ କେବେ ଦରକାର ନଥିଲା । ଜିଜ୍ଞାସା ଛଡ଼ା ଅନ୍ୟ ପ୍ରୟୋଜନ ମେଣ୍ଟାଇନାହିଁ ଗଣିତ । ପିରାମିଡ୍ ତିଆରିକରିବାକୁ ଇସ୍ରାଏଲ୍‌ରୁ ଇହୁଦୀଙ୍କୁ ବାନ୍ଧିଆଣି ଇଟା ବନାଇଚନ୍ତି କି ପଥର ବୁହାଇଚନ୍ତି । ଗଣିତ ଲାଗିଚି ପିରାମିଡ୍‌ର ଆକୃତି କଳ୍ପନାକରିବାକୁ । ଅଜ୍ଞାତ ଅଭୂତପୂର୍ବ ପ୍ରପଞ୍ଚ ପ୍ରତି ବିସ୍ମୟବୋଧ ପଞ୍ଚେନ୍ଦ୍ରିୟର ଉଦ୍ଦୀପନା, କିନ୍ତୁ ସେ ବିସ୍ମୟ ଆତ୍ମାକୁ କରେ ଯେତେବେଳ ଆଲୋଡ଼ିତ, ଇନ୍ଦ୍ରିୟର ଉଦ୍ଦୀପନା ମନେହୁଏ ଭାସମାନ ମେଘଖଣ୍ଡ । ଅନ୍ତର୍ଗୂଢ଼ ଏ ବିସ୍ମୟବୋଧର ଗତିଶୀଳତା, ଇତିହାସର ଗତିଶୀଳତାରେ ପରିଣତ ହେବାଯାଏଁ, ଚିତ୍ତ ସ୍ୱସ୍ତିପାଏନା; ମାତ୍ର ଇତିହାସର ଯୋଉ ସନ୍ଧିକ୍ଷଣରେ ଆରିସ୍ଟୋଟ୍‌ଲଙ୍କ ଆବିର୍ଭାବ, ସେ କ୍ଷଣର ଗ୍ରୀସ୍ ଖାଲି ଅବସର ଦେଇନାହିଁ , ଜାଣିବାର ବାସନାକୁ ମଧ କରିଚି ଚରିତାର୍ଥ । ବୁଝିବା ତେଣୁ ଦୁଷ୍କର, ଆରିସ୍ଟୋଟ୍‌ଲଙ୍କ ଭଳି ଈଶ୍ୱରପ୍ରାପ୍ତିର ଉପାୟ ନ ଖୋଜି, ଇଜିପ୍ଟ୍‌ର ବ୍ରାହ୍ମଣ ଖୋଜିଲେ କାହିଁକି ଗଣିତ ? ଆଲେକ୍‌ଜାନ୍ଦ୍ରିଆରୁ ବାହାରିଲେ ଟଲେମି ଆଉ ଇଉକ୍ଲିଡ୍ ?

ଆରିସ୍ଟୋଟ୍‌ଲ୍ ଜାଣନ୍ତି, ଜ୍ଞାନକୁ ମୁଣ୍ଡରେ ଧରି କେହି ଭୂମିଷ୍ଠ ହୁଏନା; କିନ୍ତୁ ସାଙ୍ଗରେ ଧରିଆସେ ଜ୍ଞାନଆହରଣର ସାମର୍ଥ୍ୟ । ସେ ପିପାସା ଓ ସାମର୍ଥ୍ୟ କ୍ରମଶଃ ବୃଦ୍ଧିପ୍ରାପ୍ତହୁଏ ବାସନାର ଆଧେୟ ହୁଏ ଯେତବେଳେ ରଶ୍ମିମନ୍ତ ଓ ବର୍ଣ୍ଣମୟ । କିନ୍ତୁ ମନୁଷ୍ୟେତର ପ୍ରାଣୀଜଗତ ସହିତ, ଇନ୍ଦ୍ରିୟଲବ୍ଧ ଅଭିଜ୍ଞତାରେ ସମଭାଗୀ ହେଲେସୁଦ୍ଧା, ସ୍ମୃତିଶକ୍ତି ମଣିଷକୁ କହିଦିଏ ଆପଣା ପ୍ରକାରଭେଦ । ସ୍ମୃତିଦ୍ୱାରା ବାହିତ ଅଭିଜ୍ଞାନର ସଂଗ୍ରହକୁ ଆରିସ୍ଟୋଟ୍‌ଲ୍ ତେଣୁ କହିଚନ୍ତି, the whole universal that has come to rest in the soul । ଅର୍ଥାତ୍, ବାରମ୍ବାର ତାକୁ ଭେଟିବା ଫଳରେ ଜାଣିପାରୁଁ, this thing we see is a man । ଏବଂ ଏଇ ଜାଣିବା ଏକ ଅଭିଜ୍ଞତା । ନିଖିଳ (ଇଉନିଭର୍ସାଲ୍) ର ପ୍ରତ୍ୟୟ ତେଣୁ ନିର୍ଦ୍ଦିଷ୍ଟ ଅଭିଜ୍ଞତା ଭିତରୁ ବାହାରିଚି; କିନ୍ତୁ ନିର୍ଦ୍ଦିଷ୍ଟରୁ ନିଖିଳରେ ପହଞ୍ଚିବା ବାଟରେ ଅଛି ଅଭିସରଣ (ଟ୍ର୍ୟାନ୍‌ଜିସନ୍); ସେ ଅଭିସରଣକୁ ଇନ୍ଦ୍ରିୟସଂବେଦନ ଧରିପାରେନା, କାହିଁକିନା, ଅଭିସରଣ ବିମୂର୍ତ୍ତ, though one perceives the particular, perception is of the universal । ଇନ୍ଦ୍ରିୟସଂବେଦନ (ଲୋକନ) ଓ ଅବଲୋକନ ମଧ୍ୟସ୍ଥ ବ୍ୟବଧାନକୁ ଘୁଞ୍ଚାଇଦିଏ ଧୀଶକ୍ତି, ଯାହାକୁ କେତେବେଳେ ଆତ୍ମା ପୁଣି କେତେବେଳେ ଚିତ୍ତ କହିଚନ୍ତି ଆରିସ୍ଟୋଟ୍‌ଲ୍ । ଅର୍ଥାତ୍,ଅ୍ୟାବ୍‌ସ୍ଟ୍ର୍ୟାକ୍‌ସନ୍ ସମ୍ଭବହୁଏ ବୁଦ୍ଧିପ୍ରୟୋଗରୁ । ଚିନ୍ତାରାଜ୍ୟରେ ଅ୍ୟାବ୍‌ସ୍ଟ୍ର୍ୟାକ୍‌ସନ୍ ସୂକ୍ଷ୍ମରୁ ଯେତେ ସୂକ୍ଷ୍ମତର ହେବ, ଆତ୍ମା ଓ ଚିତ୍ତର ଆପେକ୍ଷିକ କ୍ଷମତା ହେବ ସେତେ

ଅଧିକ ସ୍ପଷ୍ଟତର । ସେ କ୍ଷମତାକୁ ଆରିଷ୍ଟୋଟ୍ଲ କହିଚନ୍ତି *technai* ଓ *epistemai* (981a1-b10) । ଅନ୍ଧାର (ଅଜ୍ଞାନ)ରୁ ଆଲୁଅକୁ ଯିବା ପ୍ରସଙ୍ଗ ବୁଝାଇବାକୁ ଯାଇ ପ୍ଲାଟୋ ଉପଯୋଗ କରିଚନ୍ତି ଗୁମ୍ଫା ପ୍ରତୀକ; ମାତ୍ର ଗୁମ୍ଫା-ଅନ୍ଧାରରୁ ସୂର୍ଯ୍ୟାଲୋକକୁ ଯିବା ସକାଶେ ଜଡ଼ଜଗତ ମଣିଷକୁ ବାଧକରେନା; ବାଧକରେ କୌତୂହଳ । ସେଇ କୌତୂହଳ, ବିସ୍ମୟ ଭଳି ସହଜାତ ପ୍ରବଣତା । ଯେପରି, ଆକାଶର ଜ୍ୟୋତିଷ୍କ ପ୍ରତି କୌତୂହଳ, ଚନ୍ଦ୍ର-ସୂର୍ଯ୍ୟର ଗତିକ୍ରମରେ ଅଭିସରଣ ଦେଖି କାରଣ ଜାଣିବାକୁ କୌତୂହଳ । ସେଇ କୌତୂହଳ, ଆରିଷ୍ଟୋଟ୍ଲ ଭାବିଚନ୍ତି, ମନୁଷ୍ୟ ପ୍ରଜାତିକୁ କରିଚି ଆବହମାନ କାଳରୁ ଫିଲଜଫର୍ (982b) । କିନ୍ତୁ ଦର୍ଶନ ଓ ବିଶ୍ୱାସ ଏକାକଥା ନୁହେଁ, ବରଂ ଦର୍ଶନ ବିଶ୍ୱାସର ପ୍ରତୀପ । ବିଶ୍ୱାସକୁ ଭାଙ୍ଗିବାକୁ ହେଲେ ସମ୍ମୁଖୀନ ହେବାକୁ ହେବ ପ୍ରତିବନ୍ଧକ । ରିଆଲିଟି ଯଦି ଅନୁସନ୍ଧାନର ବିଷୟ, ଦାର୍ଶନିକକୁ ଆଗତୁରା ଜାଣିବାକୁ ପଡ଼ିବ ଝୁଣ୍ଟିବାର ସମ୍ଭାବନା କେତେ ଓ କୋଉଠି : one should have surveyed all the difficulties beforehand....because people who inquire without first stating the difficulties are like those who do not know where they have to go (995 a-25) । ଅନ୍ତରାୟକୁ ତୁଳନାକରିଚନ୍ତି ଗଣ୍ଠି ସାଙ୍ଗରେ; ଯୋଉ ଗଣ୍ଠିକୁ ଫିଟାଇପାରିଲେ ଘଟେ free play of thought । ମାତ୍ର *euporia*ର ଆକ୍ଷରିକ ଅର୍ଥ 'ନିର୍ବିଘ୍ନ ପର୍ଯ୍ୟଟନ'; ବିପରୀତାର୍ଥବୋଧକ ଶବ୍ଦ *aporia* । ସେ ଶବ୍ଦକୁ ବ୍ୟବହାର କରାଯାଉଚି କବିତାର ଗୁଣ ବର୍ଣ୍ଣନାକରିବାକୁ; ଆକ୍ଷରିକ ଅର୍ଥ 'ବାଟର କଣ୍ଟା' । ଅନ୍ୟ ଶବ୍ଦରେ, ଆରିଷ୍ଟୋଟ୍ଲ ଅବଲମ୍ବନ କରିଚନ୍ତି ଯୋଉ ପଦ୍ଧତି, ବିଷୟକୁ ତା ଉପସ୍ଥାପିତକରେ ଧନ୍ଦା କି ଢଗ ଛାଞ୍ଚରେ । ଯେପରି, ଜମାରୁ ଧନ୍ଦା ନହୋଇ ସୁଦ୍ଧା ଜଗତ୍ ଦିଶିବ ଗୋଲକଧନ୍ଦା ! ଧନ୍ଦାରୁ ବାହାରିଆସିବାକୁ ପଚାରିବେ ପ୍ରଶ୍ନ ପଛକୁ ପ୍ରଶ୍ନ, ଏକମାତ୍ର ଉଦ୍ଦେଶ୍ୟ ଜଗତ୍‌କୁ: କରିବେ ବୋଧଗମ୍ୟ, ସତ୍ୟକୁ ଉଦ୍‌ଘାଟନ ।

ମାତ୍ର, ବିଶ୍ୱାସ ମାତ୍ରକେ ଯେ ଅସତ୍ୟ, କହିବେନାହିଁ ସ୍ପଷ୍ଟତଃ; କାହିଁକିନା, ସତ୍ୟ ତ ସେଇ proverbial door which no one can fail to hit । ବହୁକାଳରୁ ସଞ୍ଚିତ ବିଶ୍ୱାସକୁ ପରୀକ୍ଷା ନକରି ଖାରିଜ୍ କରିହେବନାହିଁ ସେଥିପାଇଁ । ପୃଥିବୀ ମାୟାମରୀଚିକା ନୁହେଁ ଯେହେତୁ, ଶ୍ରମସାଧ ହେଲେସୁଦ୍ଧା, ବୁଝିବା ଅସାଧ ନୁହେଁ । ମାତ୍ର ମଣିଷ ଆଖିରୁ ଅନ୍ଧପୁଟୁଳି ଖୋଲିପାରିବା ଦୁଃସାଧ, For as the eyes of bats are to the blaze of day, so is the reason in our soul to the things which are by nature most evident of all (993 a-b) । ଅର୍ଥାତ୍, ଯୋଉ ଅବଲୋକନର ଉତ୍ପତ୍ତି ସ୍ୱାଭାବିକ ବିସ୍ମୟବୋଧରୁ, ତା ସୀମାନ୍ତରେ ରହିଚି ବିସ୍ମୟର ଅଭାବ (983a 13-21) । କିନ୍ତୁ ଭଗବାନ୍ ହୁଅନ୍ତି

ଯଦି ଆଦିସୂତ୍ର,ଆଦ୍ୟକାରଣ, ବିସ୍ମୟର ଅବସାନ ଘଟିବ ଅଚିରାତ୍ । ଅର୍ଥାତ୍, ଆତ୍ମଜ୍ଞାନ ଦୂରକରିଦେବ ଅନ୍ଧକାର; କିନ୍ତୁ ନିଜକୁ ବୁଝିବା ଓ ଜଗତକୁ ବୁଝିବା ଆପାତତଃ ଦୁଇ ଭିନ୍ନ ପ୍ରକଳ୍ପ । ହେଲେସୁଦ୍ଧା, ଫିଲଜଫର୍ ଦୃଷ୍ଟିରେ ପରସ୍ପର ଅନୁପୂରକ ଓ ପରିପୂରକ, କାହିଁକିନା,ବହିଃପ୍ରକୃତି ମାନବସତ୍ତାରୁ ଅଲଗା ହେଲେସୁଦ୍ଧା, ମଣିଷ ନିଜେ ପ୍ରକୃତିର ଅଂଶବିଶେଷ । ଏବଂ ସେଇ ବିଚାରରେ, ମ୍ୟାଟର୍ ଓ ଏସେନ୍ସ, କି ଫର୍ମ୍ ଓ ସବ୍‌ସ୍ଟାନ୍ସ ଭଳି ବିଭାଜନ ମଧ୍ୟ ସମସ୍ୱଭାବ । ସମସ୍ୱଭାବ, ପୁଣି ଦୁରନ୍ତ, କାହିଁକିନା, ଖାଲି ବର୍ଣ୍ଣନା ଦ୍ୱାରା ଜିଜ୍ଞାସା ନିବୃତ୍ତହୁଏନା । ନିର୍ଦ୍ଦିଷ୍ଟ ବା ସାଧାରଣ କୋଉହେଲେ କାରଣରୁ, ରୂପ ଓ ରୂପାତୀତ ଭିତରେ ଅନ୍ୱୟ କି ଐକତାନ ବିଦ୍ୟମାନ; ସେଇ ରହସ୍ୟର ଅନ୍ତର୍ଭେଦ କରିବା ସକାଶେ ବର୍ଣ୍ଣନା ଉର୍ଦ୍ଧ୍ୱକୁ ଉଠି କୌତୂହଳ ହୋଇପାରେ ତତ୍ପର । ମାତ୍ର ପଥରୋଧ କରନ୍ତି ସ୍ୱୟଂ ଆରିଷ୍ଟୋଟ୍ଲ ଅଚଳ-ଚାଳକକୁ ସମ୍ମୁଖରେ ଉଭାକରିଦେଇ । ତତ୍ତ୍ୱଶୃଙ୍ଖଳା ସେଥିପାଇଁ ଛିଦ୍ରମୟ ।

ତତ୍ପର ବୋଲି, ଆକାଶରେ ଜ୍ୟୋତିଷ୍କର ଗତି ଦେଖି ମଣିଷ ପଚାରେ, ଘୂରୁଚି କାହିଁକି ? ପୁଣି, ବିଶେଷ ରୀତିରେ ? ଅର୍ଥାତ୍,ମଣିଷ ଯା କାମନାକରେ, ସେତିକି ମାତ୍ର ଜାଣିପାରିବା ଅପେକ୍ଷା ଢେର୍ ବେଶି, ସମ୍ୟକ୍ ଉପଲବ୍ଧି । ଗ୍ରୀକ୍‌ଭାଷାରେ, *eidenai* । ଜ୍ଞାନ, ଦାର୍ଶନିକ ବିବେଚନାରେ, ପ୍ରଣାଳୀବଦ୍ଧ ସଂଗଠିତ ଉପଲବ୍ଧି, ଯେପରି ଜ୍ୟାମିତି । ପୁଣି, ଜ୍ଞାନ ମଧ୍ୟ ହୋଇପାରେ ସଂଗଠିତ ସେଇ ଉପଲବ୍ଧିକୁ ଆୟତ୍ତକରିଥିବା ଆତ୍ମାର ବିକଶିତ ପର୍ଯ୍ୟାୟ । କାହିଁକିନା, ସଂଗଠିତ ଉପଲବ୍ଧିର ସଞ୍ଚୟ ସ୍ଥୂଳରୁ ସୂକ୍ଷ୍ମ ପର୍ଯ୍ୟାୟକୁ ଆତ୍ମାକୁ ଉତ୍ତୋଳିତକରିବା ସ୍ୱାଭାବିକ । ଉପଲବ୍ଧିର ଚରିତ୍ର ଅବଶ୍ୟ ନିଖିଳ (ଇଉନିଭର୍ସାଲ୍); ଜାଣିବା ମାନେ ତେଣୁ ନିର୍ଦ୍ଦିଷ୍ଟ ତଥ୍ୟରୁ ସାଧାରଣ ସୂତ୍ରକୁ ଆରୋହଣ । ତଥ୍ୟ ଅନ୍ତରାଳରେ କର୍ମରତ 'ହେତୁ' ଓ 'ବିଧିର' ଅବଗତି । ଆରିଷ୍ଟୋଟ୍ଲ ଅବଶ୍ୟ କହିବେ, ଜଗତଟା ଖାଲି ଅନୁସନ୍ଧାନଯୋଗ୍ୟ ବସ୍ତୁ ନୁହେଁ, ଅନୁସନ୍ଧାନର ପ୍ରେରଣା ମଧ୍ୟ । କାହିଁକିନା, ଆପାତଃଦୃଷ୍ଟିରେ ଜଗତ୍ ଏକ ପ୍ରହେଳିକା, ମଣିଷ ମଧ୍ୟ ନିଜ ଆଖିକୁ ନିଜେ ଦୁର୍ଭେଦ୍ୟ । ସେଥିପାଇଁ, ଜଗତକୁ ଉପଲବ୍ଧିକରିବା ପ୍ରକ୍ରିୟାରେ ଏକାବେଳକେ ସଂଘଟିତହୁଏ ଆତ୍ମୋପଲବ୍ଧି । ଖାଲି ଆପଣା ଅନ୍ତରଭିତରକୁ ଦୃଷ୍ଟି ନିକ୍ଷେପକରି ଜାଣିହୁଏନା ଆତ୍ମପରିଚୟ । ଆତ୍ମୋପଲବ୍ଧି, ସେଥିପାଇଁ, ଆଂଶିକଭାବେ ପରୋକ୍ଷ ଉପଲବ୍ଧି । ଭିତର ଓ ବାହାର ମଧ୍ୟସ୍ଥ ଦ୍ୱିବିଭାଜନର ବିଗଳନ । ବିଜ୍ଞାନ ଯେମିତି ବିଶ୍ଳେଷଣକରେ, ସେଇ ବାଗବର୍ଗରେ ମଣିଷ ପ୍ରଥମେ ଜଗତର ଗଢ଼ଣଟାକୁ ପରିଣତକରେ ଏକ ମାନଚିତ୍ରରେ, ଏବଂ ସେଇ ପ୍ରଣାଳୀରେ ଆବିଷ୍କାରକରେ ମାନଚିତ୍ର ଭିତରେ ରହିଚି ନିଜ ଆତ୍ମାର ମାନଚିତ୍ର । ଫିଲଜଫି ତେଣୁ, ଆରିଷ୍ଟୋଟ୍ଲଙ୍କ ବିଚାରରେ, ଜଗତକୁ ପରୀକ୍ଷାକରି ଦେଖିବା ପ୍ରକ୍ରିୟାରୁ ଉଦ୍‌ଗତ ମଣିଷର ଅତିରିକ୍ତ ଅବୟବ । କାହିଁକିନା,ଗଭୀର ମନନର ସ୍ୱଭାବ ସବୁବେଳେ ପ୍ରତିଫଳନ; ଜଗତକୁ ସେଥିପାଇଁ

ଉପଲବ୍ଧି କରିହେବନାହିଁ ସମ୍ୟକ୍, ଉପଲବ୍ଧିର ଅବସ୍ଥାନ ଜଗତର ମାନଚିତ୍ରରେ ଠିକ୍ କୋଉ ଜାଗାରେ ନବୁଝିବା ପର୍ଯ୍ୟନ୍ତ । ସେଥିପାଇଁ, ଜାଣିବା/ବୁଝିବା ଇଚ୍ଛା ଓ ସେ ଉଦ୍ୟମରେ ପୂର୍ଣ୍ଣକାମହେବା ପ୍ରୟାସ ପରସ୍ପର-ନିର୍ଭର ଚଳମାନ ଏକ ପ୍ରକ୍ରିୟା ।

ଏଇ ବାଟରେ ମଣିଷ ଅର୍ଜନକରେ ଏଇ ସଚେତନତା ଯେ ଜଗତ ଓ ଜୀବନକୁ ଅନ୍ୱିତକରୁଚି ପ୍ରାଥମିକ ଏକ ସଙ୍ଗଠନସୂତ୍ର । ସୂତ୍ରର 'କାରଣ' ତେଣୁ ଆଦ୍ୟକାରଣ । ସୂତ୍ର ଓ କାରଣ ଯେହେତୁ ମହାଜାଗତିକ, ଦିବ୍ୟ ବା ଡିଭାଇନ୍ (982 b28-983 a11) ହେବା ଅବଧାରିତ । ଏ ଆବିଷ୍କାର, ମହାଜାଗତିକ ପ୍ରପଞ୍ଚର ସକ୍ରିୟ ବିବିଧତାକୁ ଏକସୂତ୍ରରେ ଗୁନ୍ଥିରଖିବା ବିଧାନ । ଆରିଷ୍ଟୋଟ୍ଲ ଏ ଆବିଷ୍କାରକୁ ଭାବିଚନ୍ତି ଏପରି ଚମତ୍କାର ଯେ ମନେହୋଇଚି ଦେବତାର ଦାନ । କାହିଁକିନା, ପ୍ରୋମେଥେଉସ୍ ସବୁଯାକ ପବିତ୍ର ଅଗ୍ନିକୁ ଦେବଲୋକରୁ ଅପହରଣ କରିପାରିଥିବା ଅସମ୍ଭବ । ଅର୍ଥାତ୍, ମଣିଷର ସ୍ୱଭାବ ଓ ଜଗତର ସ୍ୱଭାବ ଏପରି ଯେ ସମ୍ୟକ୍ ଉପଲବ୍ଧି କେବଳ ଅତିକ୍ରମ କରିପାରେ ସଂଶୟକୁ, ଉପଲବ୍ଧିର ଅନୁପ୍ରେରଣା ଯେହେତୁ ଈଶ୍ୱରକୃପା । ଅନ୍ୟ ଶବ୍ଦରେ, ଆଦିସୂତ୍ର ଓ ଆଦ୍ୟକାରଣ ବ୍ୟତିରେକେ ଈଶ୍ୱର-ଉପଲବ୍ଧି ଅସମ୍ଭବ । କାହିଁକିନା, ଏ ଉପଲବ୍ଧି ବସ୍ତୁତଃ ଭଗବାନ୍‌ଙ୍କ କୃପାଲାଭ କରିବା ସକାଶେ ଆତ୍ମୋପଲବ୍ଧି । ଅନ୍ୟଥା, ମୃତ୍ୟୁଶାସିତ ମଣିଷର ସାଧନାହିଁ ଜ୍ଞାନକୁ ଆୟତ୍ତ କରିବ, ବିଶେଷତଃ ସ୍ୱୟଂ ଭଗବାନ ଯେତେବେଳେ ଉଦାସୀନ ଓ ଜଡ଼ବତ୍ । ଜାଣିବାକୁ ଓ ବୁଝିବାକୁ ଚାହୁଁଛୁଁ ମାନେ ଅଂଶନେଉଛୁଁ ମହାଜାଗତିକ ଦିବ୍ୟ ଚେତନାରେ । ଭଗବାନ୍ ଯେହେତୁ ସକଳ ପ୍ରପଞ୍ଚର ଆଦିକାରଣ ଏବଂ ଜ୍ଞାନ ଯେହେତୁ ଅଂଶତଃ ଆତ୍ମୋପଲବ୍ଧି, ଆତ୍ମୋପଲବ୍ଧି ହିଁ ଆଦିକାରଣ ବା ଆଦିସୂତ୍ର । ଉପଲବ୍ଧି ହିଁ ତେଣୁ କର୍ମବଳ । ଏ ଉପଲବ୍ଧି ଲାଭକରିବା ମାନେ ପାର୍ଥିବସତ୍ତା ବିଷୟରେ ଜ୍ଞାନାହରଣ ନୁହେଁ, କାହିଁକିନା, ପାର୍ଥିବ ସତ୍ତାଟି ନିଜେ ସ୍ୱର୍ଗୀୟ । ଉପଲବ୍ଧି ନିଜ ଗୁଣରେହିଁ ତେଣୁ ସ୍ୱର୍ଗୀୟ । ମନନଚିନ୍ତନ ମାଧ୍ୟମରେ ସ୍ୱର୍ଗୀୟ ଏଇ ଅନୁଭବ ଯେତେବେଳେ ପ୍ରବୁଦ୍ଧକରେ, ନିଜ ସତ୍ତାର ସୀମାବଦ୍ଧତାକୁ କରିପାରେ ମଣିଷ ଅତିକ୍ରମ, ସମ୍ପୂର୍ଣ୍ଣ ଭାବେ ନ ହଲେ ବି ଅଂଶତଃ । ଏବଂ ସୀମାବଦ୍ଧତାକୁ ଅତିକ୍ରମକରିବା ପ୍ରବଣତା ମଣିଷର ସହଜାତ; ଆରିଷ୍ଟୋଟ୍ଲଙ୍କ ପରିଭାଷାରେ ପ୍ରବଣତା ହିଁ *nous*; ଇଂରେଜୀରେ reason । ଅକ୍ସଫୋଡ଼ର ବିଶେଷଜ୍ଞ ଏକ୍ଷଣି କହୁଚନ୍ତି, ରିଜ୍ନ ନୁହେଁ, intellect । *ନିକୋମାକିଏନ୍ ଏଥିକ୍ସ*ରେ ଆରିଷ୍ଟୋଟ୍ଲ ସେଥିପାଇଁ କହିଚନ୍ତି, for man, therefore, the life according to mind is best and pleasant, since mind more than anything else *is* man । ବୁଝିବା ଔତ୍ସୁକ୍ୟ ଚରିତାର୍ଥହୁଏ ଯେତେବେଳେ, ଚିତ୍ତକୁ ଇନ୍ଦ୍ରିୟଗ୍ରାହ୍ୟ ଅଭିଜ୍ଞତା ଉପରକୁ ଉଠାଇନେଇ କରିଦିଏ ଦେବୋପମ । ତଥାପି ସମ୍ଭାବନାର ପୂର୍ଣ୍ଣତମ ଉପଲବ୍ଧି ହୋଇପାରେନା, କାହିଁକିନା, ଜଗତ୍-ସଂସାରରେ ନିଜ ଆପେକ୍ଷିକ ସ୍ଥାନ ଠାବକରିବାକୁ ହେଲେ ବିଶ୍ୱପ୍ରକୃତିକୁ ମଧ୍ୟ ବୁଝିବା ଜରୁରୀ ।

ନିରାସକ୍ତଭାବେ ପ୍ରକୃତିକୁ ଉପଲବ୍ଧି କରିପାରିଲେ ଯାଇ ମଣିଷ ଉପଲବ୍ଧି କରିପାରିବ ଆପଣା ସତ୍ତାର ଆପେକ୍ଷିକ ବୈଶିଷ୍ଟ୍ୟ । ଅର୍ଥାତ୍, କାହିଁକି ସିଏ ଆଦିକାରଣ ଖୋଜେ,କାହିଁକି ଅନ୍ୟ ଜୀବପିଣ୍ଡ ଖୋଜନ୍ତିନାହିଁ; କାହିଁକି ଖୋଜିବା କାମଟା ତାକୁ କରିପାରେ ଦେବୋପମ, ଜଡ଼ଜଗଦ୍ ପଡ଼ିରହିଥାଏ ଯେତେବେଳେ ନିଶ୍ଚେତନ ? ଅନ୍ୟ ଶବ୍ଦରେ, ଅନ୍ୟମାନଙ୍କୁ ବେଗ ଆହରଣକରିବାକୁ ପ୍ରବର୍ତ୍ତାଉଥିବାବେଳେ ଆରିଷ୍ଟୋଟ୍ଲଙ୍କୁ ପ୍ରବର୍ତ୍ତାଇଚି ଜିଜ୍ଞାସା ସାରା ସଂସାରକୁ ସମଗ୍ରଭାବେ ଅଧିଗତ କରିବାକୁ । ଅଧିଗତକରିବାକୁ ଚେଷ୍ଟାକରିବାକୁ ଅନ୍ତତଃ । ଜାଣିବାର ବାସନା ତେଣୁ, ତାଙ୍କ ସକାଶେ, ନିର୍ବେଗ ଏକ ଚାଞ୍ଚଲ୍ୟ ।

ବିଦ୍ୱାନ୍ ଶେଷକୁ ଜୋର୍‌ଦେଇଚନ୍ତି ତାଙ୍କ ଶିକ୍ଷକ-ଭୂମିକା ଉପରେ । ସନ୍ଦେହନାହିଁ, ସେ ଶିକ୍ଷାର ମୂଳକଥା ହେଲା : ନିଜକୁ ଜାଣିବା ସକାଶେ ଜଗଦ୍‌କୁ ଜାଣିବା ଅବଶ୍ୟମ୍ଭାବୀ ପୂର୍ବସର୍ତ୍ତ, ଯୋଗ କି ଧ୍ୟାନ ନୁହେଁ । ପୁଣି, ଜଗଦ୍‌କୁ ଜାଣିବାକୁ ହେଲେ ନିଜକୁ ଜାଣିବା ମଧ୍ୟ ସମାନ ଗୁରୁତ୍ୱପୂର୍ଣ୍ଣ ପୂର୍ବସର୍ତ୍ତ । ଜାଣିବାର ବାସନା ଅବଶ୍ୟ ସହଜାତ ଓ ଅଦମ୍ୟ । ମନର ଗତି ତେଣୁ ପବନର ଗତିଠାରୁ ଚଞ୍ଚଳ; ମାତ୍ର ସେଇ ଆଗ୍ରହ-ଔତ୍ସୁକ୍ୟ ଅଦମ୍ୟ ବୋଲି, ଇତିହାସ ପ୍ରବାହରେ ମଣିଷ ଚାଲିଚି ଆଗକୁ ଆଗକୁ । ଏ ଉପଲବ୍ଧି ସ୍ପଷ୍ଟତଃ ଅଭିଜ୍ଞତାପ୍ରସୂତ । ଅଥଚ କୁହାଯାଉଚି ମେଟାଫିଜିକ୍ସ, କାହିଁକିନା ବୁଝିବା-ନବୁଝିବା ମଝିରେ ଆରିଷ୍ଟୋଟ୍ଲ ଆଣି ଛିଡ଼ାକରିଚନ୍ତି ଜଣେ କର୍ତ୍ତାପୁରୁଷ (ସବ୍‌ଜେକ୍ଟ), ଏବଂ ଜଗଦ୍‌ସଂସାରକୁ କରିଚନ୍ତି ସେଇ କର୍ତ୍ତାପୁରୁଷର ପ୍ରେଡିକେଟ୍ । ଢେର୍ ଆଗରୁ ରାଜପୁତ୍ର ଗୋତମ ଉଭୟ ପୁରୁଷ ଓ ପ୍ରକୃତିକୁ ପ୍ରମାଣକରିଚନ୍ତି ଅନିତ୍ୟ । ସେଇ 'କାରଣ'କୁ ବିଜ୍ଞାନ କି ଫିଲଜଫି ଅଦ୍ୟାବଧି ଖଣ୍ଡନ କରିପାରିନାହିଁ । ନଶ୍ୱର ମଣିଷକୁ ତଥାପି କଳ୍ପିତ ଦେବତା ହେବାକୁ ପ୍ରଲୋଭନ ଦେଖାଇଚାଲିଚନ୍ତି ବୁଦ୍ଧିମାନ୍, ଯେପରି ଅରବିନ୍ଦ । ତାଙ୍କ ପ୍ରତୀକ ମଧ୍ୟ ତଳକୁ-ଉପରକୁ ମୁହଁକରିଥିବା ଯୋଡ଼ାଏ ସମବାହୁ ତ୍ରିଭୁଜ । ଅଥଚ ବୁଦ୍ଧଙ୍କୁ ମଧ୍ୟ ଚାଳିତକରିଚି ଜାଣିବାର ଅଦମ୍ୟ ତାଡ଼ନା; ସେଥିପାଇଁ ମୂଲ୍ୟ ଗଣିବାକୁ ପଡ଼ିଚି ଅବଶ୍ୟ ସାରାଜୀବନ । ଯେହେତୁ ସିଷ୍ଟେମ୍-ବିଲ୍‌ଡିଙ୍ଗ୍ ଥିଲାନାହିଁ ଉଦ୍ଦେଶ୍ୟ, ଆଗରେ ଈଶ୍ୱର ନାହିଁ କି ପଛରେ ଈଶ୍ୱର ନାହିଁ,ଅଛି କେବଳ ବାସନାରୁ ମୁକ୍ତହେବା ବାସନା ।

ନିଜେ ଆରିଷ୍ଟୋଟ୍ଲ କିନ୍ତୁ ଏ ସିଷ୍ଟେମ୍‌କୁ ନାମିତକରିନାହାନ୍ତି 'ମେଟାଫିଜିକ୍ସ', ଯେପରି ମାର୍କ୍ସ କୋଉଠି ଲେଖିନାହାନ୍ତି 'କ୍ୟାପିଟାଲିଜ୍ମ' । ଭାବବାଦର ଜନକ ପ୍ଲାଟୋଙ୍କ ପାଖରୁ କୋଡ଼ିଏବର୍ଷ କାଳ ଶିକ୍ଷା ଗ୍ରହଣକରିଥିଲେ ଏକାଦିକ୍ରମେ; ମାତ୍ର ଦର୍ଶନବିଦ୍ୟାରେ ଶୃଙ୍ଖଳା ପ୍ରତିଷ୍ଠାକରିବାକୁ ପ୍ଲାଟୋ ଉପଯୋଗିକରିଥିଲେ ଅଙ୍କଶାସ୍ତ୍ର, ଯା ପୂର୍ବସୂରୀ ପିଥାଗୋରସ୍‌ଙ୍କ ପ୍ରବର୍ତ୍ତନ । ଗଣିତ ଅବଶ୍ୟ ମନନ-ପ୍ରସୂତ ବିଷୟ, କିନ୍ତୁ ଆରିଷ୍ଟୋଟ୍ଲଙ୍କ କଳ୍ପନାରେ ପ୍ରାଣୀବିଦ୍ୟା ଓ ଶରୀରତତ୍ତ୍ୱ ପାଇଚି ପ୍ରାଧାନ୍ୟ, ମନନ ଅପେକ୍ଷା ଯା

ପର୍ଯ୍ୟବେକ୍ଷଣକୁ ଦିଏ ଅଗ୍ରାଧିକାର । ପିଥାଗୋରସ୍ ବିଶୁଦ୍ଧ ବୁଦ୍ଧିବାଦୀ ଗଣିତଜ୍ଞ, କିନ୍ତୁ ଦାର୍ଶନିକ ନୁହେଁ । ମହାବିଶ୍ୱର ମୂଳତତ୍ତ୍ୱ ଖୋଜିବା ବାଟରେ ପ୍ଲାଟୋ ଗଣିତକୁ ପାଥେୟ କରିଥିଲେ ସୁଦ୍ଧା, ବିଶୁଦ୍ଧ ବୁଦ୍ଧିବାଦକୁ ଦର୍ଶନବିଦ୍ୟାର ଭିତ୍ତି ଭାବରେ ଗ୍ରହଣ କରିନାହାନ୍ତି; କରିଥିଲେ, ଭାବବାଦର ଘଟିନଥାନ୍ତା ଅଭ୍ୟୁଦୟ । ତାଙ୍କ ଭାବବାଦ କିନ୍ତୁ ରହସ୍ୟାଚ୍ଛନ୍ନ ନୁହେଁ, ଯୁକ୍ତି ଦଣ୍ଡକପାଇଁ ଛାଡ଼ିଯାଇନାହିଁ ଚିନ୍ତାପ୍ରବାହକୁ; ଛାଡ଼ିଯାଇନାହିଁ ବୋଲି, ସାମ୍ୟବାଦୀ ସମାଜର କଳ୍ପନା ପ୍ରବେଶକରିଚି ମନନଜଗଦ୍ ଭିତରକୁ । ଯୌବନର ସ୍ୱପ୍ନ ଓ ଉନ୍ମାଦନା ରହିଚି ସେଥିରେ ନିଶ୍ଚୟ; ମାତ୍ର ମଣିଷକୁ ଦେବତାକରିବା ଭଳି ପାଗଳାମି ଛୁଇଁନାହିଁ ମନକୁ ।

ଆରିଷ୍ଟୋଟଲ୍‌ଙ୍କ ମଣିଷକୁ ଦେବତା କରିବା ପ୍ରକଳ୍ପ ପ୍ରାଣୀବିଦ୍ୟାର ଅବଦାନ, ଯେପରି ପ୍ରାଣୀବିଦ୍ୟାର ଅବଦାନ ଡାର୍‌ୱଇନ୍‌ଙ୍କ ବିବର୍ତ୍ତନବାଦ । ଆରିଷ୍ଟୋଟଲ୍‌ଙ୍କ ବିବେଚନାରେ, 'ଭାବ' ବସ୍ତୁରହିଁ ଅନ୍ତର୍ଗତ, ଯେପରି, ପ୍ରାଣୀର ଦେହ ଓ ଅନୁଭବ ଯଥାକ୍ରମେ 'ବସ୍ତୁ' ଓ 'ଭାବ' । ଆକୃତିହୀନ 'ଭାବ'ର ଅସ୍ତିତ୍ୱ କାଳ୍ପନିକ । ମାଟି ପାଣି ପବନ ନିଆଁ – ଆରିସୋଟଲ୍ ସବୁଠି ଦେଖିଚନ୍ତି ଆକୃତି । ରୁକ୍ଷତା, ତାରଲ୍ୟ, ଶୈତ୍ୟ, ଉଷ୍ଣତା ଯଥାକ୍ରମେ ସେଇ ବସ୍ତୁଗୁଡ଼ିକର ଭାବ । ମୌଳିକ ଏଇ ଦ୍ରବ୍ୟଗୁଣକୁ *ସାଂଖ୍ୟସୂତ୍ର* କହିଚି 'ତନ୍ମାତ୍ରା'; ତାର ବୃଦ୍ଧି ହୁଏ, ବିକାଶ ମଧ ହୁଏ; ମାତ୍ର ସେ ବୃଦ୍ଧି ବା ବିକାଶ ଅସୀମ ନୁହେଁ କି ଅନନ୍ତ ନୁହେଁ । ଯେପରି, ପଥରରୁ ମୂର୍ତ୍ତି ବାହାରିବ, ଗଛ ନୁହେଁ । ଗଛରୁ ଜୀବଜନ୍ତୁ ବାହାରିବେନାହିଁ । ବସ୍ତୁର ତେଣୁ ଜାତି ଅଛି ଏବଂ ଜାତି ଯେହେତୁ ସାମାନ୍ୟ (ଇଉନିଭର୍ସାଲ୍), ତହିଁରେ ପରିବର୍ତ୍ତନର ସମ୍ଭାବନା ଅନୁପସ୍ଥିତ । ଆରିଷ୍ଟୋଟଲ୍‌ଙ୍କ ଚିନ୍ତାର ଏ ହେଉଚି ଅଲଂଘ୍ୟ ସୀମାବଦ୍ଧତା, କାହିଁକିନା, ଭାବଯୁକ୍ତ ତତ୍ତ୍ୱର ବିକାଶ ଯେତେ ଗଭୀର, ଭାବବିଚ୍ଛିନ୍ନ ବସ୍ତୁତତ୍ତ୍ୱ ସେତେ ଭିତରକୁ ଯାଇପାରେନା । ସେଥିପାଇଁ, ଆରିଷ୍ଟୋଟଲ୍ ବିକାଶପର୍ଯ୍ୟାୟକୁ ଏପରି ଏକ ରୂପ(ଈଶ୍ୱର)ରେ ଆଣି ଠେକାଇଚନ୍ତି, ଯା ଉପରକୁ ବିକାଶ ଆଉ ଯାଇପାରେନା । ପାରେନା ବୋଲି, ପ୍ରାଣୀ/ବସ୍ତୁତତ୍ତ୍ୱ ସେଇ ଅବ୍ୟକ୍ତ ରୂପକୁ ବ୍ୟାଖ୍ୟା କରିପାରେନା; ଭଗବାନ୍‌କୁ ଟାଣିଆଣି ଦାୟମୁକ୍ତ ହୁଏ । ପ୍ଲାଟୋଙ୍କ ଅବଲୋକନରେ ଭଗବାନ୍ ବିଧାତାପୁରୁଷ; ଆରିଷ୍ଟୋଟଲ୍‌ଙ୍କ ଭଗବାନ୍ କାଳାତୀତ ଓ ଅଚଳ । ଅବ୍ୟକ୍ତ ତାଙ୍କ ପ୍ରେମହିଁ ଜଗତକୁ କରେ ଚାଳିତ; ଅଥଚ ଭଗବାନ ନିଜେ ନୁହେଁ । *ସାଂଖ୍ୟସୂତ୍ର*ର ପୁରୁଷ–ପ୍ରକୃତି ସହିତ ସାମଞ୍ଜସ୍ୟ ମିଳିପାରେ ହୁଏତ, ସାଂଖ୍ୟ କିନ୍ତୁ ନିରୀଶ୍ୱରବାଦୀ ।

ପ୍ରାଣୀବିଦ୍ୟା ବା ଶରୀରତତ୍ତ୍ୱର ପ୍ରବର୍ତ୍ତକ ହିପୋକ୍ରଟିକ୍ (ଖ୍ରୀ.ପୂ. ୪୬୦–୩୭୭) ଥିଲେ ଚିକିତ୍ସକ; ଏବଂ ସାରା ପୃଥିବୀର ଡାକ୍ତର୍ ଯୋଉ ଶପଥ ନିଅନ୍ତି, ତାକୁ କୁହାଯାଏ 'ହିପୋକ୍ରାଟିକ୍ ଓଅଥ୍' । ଚିକିତ୍ସାପ୍ରଣାଳୀ ସହିତ ଏଥିକ୍ସକୁ ଯୁକ୍ତକରିଚନ୍ତି ହିପୋକ୍ରଟିକ୍ । ଆରିଷ୍ଟୋଟଲ୍ ପ୍ରଭାବିତ ହୋଇଥାଇ ପାରିଥାନ୍ତି, ପ୍ରାଣୀବିଦ୍ୟାଉପରେ

ଆଧ୍ୟାତ୍ମିକତା ଆରୋପ କିନ୍ତୁ ତାଙ୍କରି ଏକକ କୀର୍ତ୍ତି । ଭେଷଜରେ ନିଦାନନିରୂପଣ ଭଳି ଆରିଷ୍ଟୋଟ୍ଲ ନିରୂପଣକରିଚନ୍ତି 'କାରଣ', ଚାରିପ୍ରକାର କାରଣ : ଉପାଦାନ କାରଣ, ହାଣ୍ଡିର ଉପାଦାନକାରଣ ମାଟି; ନିମିତ୍ତକାରଣ, ଉପାଦାନକାରଣକୁ ଯିଏ ରୂପାନ୍ତରିତକରେ, ଯେପରି କୁମ୍ଭାର; ମୂଳକାରଣ, ଅର୍ଥାତ୍ ଯୋଉ ଆଇଡିଆରୁ ତିଆରିହୁଏ କାର୍ଯ୍ୟ-କାରଣ ସମ୍ବନ୍ଧ; ଏବଂ ଅନ୍ତିମ କାରଣ, ଯୋଉ ଉଦ୍ଦେଶ୍ୟକୁ ବସ୍ତୁରୂପ ଦେବା ସକାଶେ ହାଣ୍ଡିଗଢ଼ିବା ହୋଇଚି ଦରକାର । ଭାରତର ନୈୟାୟିକ ଉପାଦାନ-କାରଣ ଓ ନିମିତ୍ତ-କାରଣ ମାନିଚନ୍ତି; ମାତ୍ର ଆରିଷ୍ଟୋଟ୍ଲ କହିଚନ୍ତି, ଚାରିଟିଯାକ କାରଣ କାମରେ ନଲାଗିପାରେ ଏକାବେଳକେ । ନିଦାନ/କାରଣକୁ ପର୍ଯ୍ୟବେକ୍ଷଣ କେବଳ ଚିହ୍ନଟ କରିପାରେ; ମାତ୍ର ଇନ୍ଦ୍ରିୟ-ପ୍ରତ୍ୟକ୍ଷ ଦ୍ୱାରା ଯା ଜଣାପଡ଼ିବ, ବୁଦ୍ଧି ଓ ଯୁକ୍ତି ଦ୍ୱାରା ତାକୁ ବିଶ୍ଳେଷଣକରିବା ଦରକାର । ଏବଂ ବିଶ୍ଳେଷଣ ସକାଶେ ଯୁକ୍ତି ଅପରିହାର୍ଯ୍ୟ । ଅର୍ଥାତ୍, ପର୍ଯ୍ୟବେକ୍ଷଣ ଦେଖାଇପାରେ ବିଶେଷକୁ, ଯୁକ୍ତି କିନ୍ତୁ ଦେଖାଇବ ବିଶେଷର ସାଧାରଣ ରୂପ ଓ ଲକ୍ଷଣ । ପ୍ରଥମେ ଜ୍ଞାତ କରିବ , ତହିଁଉତାରୁ କରିବ ନିଶ୍ଚିତ । ଯେପରି, ହାଣ୍ଡିଶାଳକେ କି ମଶାଣିରେ ନିଆଁକୁ ଦେଖିହେବ ଧୂଆଁ ସାଙ୍ଗରେ, ମାତ୍ର ଯୁକ୍ତି ଦେଖାଇଦେବ ନିଆଁ ସହିତ ଧୂଆଁର ସାଧାରଣ ସମ୍ପର୍କ ।

ସେହିପରି, କ୍ୟାଟିଗରି । କ୍ୟାଟିଗରିକୁ ବୈଶେଷିକ କହିଚି 'ପ୍ରମେୟ' । ଆରିଷ୍ଟୋଟ୍ଲ ସଂଖ୍ୟା ନିରୂପଣକରିଚନ୍ତି ଦଶ : ଦ୍ରବ୍ୟ, ଗୁଣ, ପରିମାଣ, ସମ୍ବନ୍ଧ, ଦିଶା, କାଳ, ଆସନ, ସ୍ଥିତି, କ୍ରିୟା ଓ ନିଷ୍କ୍ରିୟତା । ବୈଶେଷିକରେ ଦ୍ରବ୍ୟ ଓ ଗୁଣ ଅଛି (ଛ'ଟି ଜିନିଷରେ), ଦିଶା ଓ କାଳ ଅଛି ନ'ଟି ଜିନିଷରେ । ମାତ୍ର, ବସ୍ତୁ (ବ୍ୟକ୍ତି ମଧ୍ୟ ବସ୍ତୁ) ପ୍ରତ୍ୟକ୍ଷସାଧ୍ୟ । ନୂଆକରି ସୃଷ୍ଟିହୁଏନା କି ଏକେବାରେ ଲୋପପାଇଯାଏନା । ପରିବର୍ତ୍ତନ (କ୍ଷୟ ଓ ବୃଦ୍ଧି) ଶୂନ୍ୟରୁ ଖସେନା, ପରିବର୍ତ୍ତନର ଥାଏ ମୂଳାଧାର । ମୂଳାଧାର ପରିବର୍ତ୍ତନର ଅଧୀନ ନୁହେଁ; ଯେପରି ଦୁଧରୁ ଦହି ହୁଏ କି ପାଣିରୁ ବରଫ, କିନ୍ତୁ ମୂଳାଧାର (ଦୁଧ/ପାଣି) ରହେ ଅପରିବର୍ତ୍ତନୀୟ । ଯା ଘଟେ, ତା କେବଳ ଗତି, ସ୍ଥାନରୁ ସ୍ଥାନାନ୍ତର । ଗତି ମାନେ, ଇଂରେଜୀରେ 'ମୋସନ୍' । ମାତ୍ର, ଆରିଷ୍ଟୋଟ୍ଲଙ୍କ କ୍ୟାଟିଗରି ନିଜେ ଗୋଟିଏ ଗୋଟିଏ ମୂଳାଧାର । ଯେପରି ଶରୀର ଓ ତାର ଅଙ୍ଗପ୍ରତ୍ୟଙ୍ଗ । ପାରସ୍ପରିକ ସମ୍ପର୍କ ସ୍ଥାନ-କାଳ ନିର୍ବିଶେଷରେ ଅପରିବର୍ତ୍ତନୀୟ । ଅଙ୍ଗପ୍ରତ୍ୟଙ୍ଗର ସମଷ୍ଟି ହେଲେସୁଦ୍ଧା, ଶରୀର ହିଁ ଅଙ୍ଗପ୍ରତ୍ୟଙ୍ଗକୁ ଚାଳିତକରେ । ସେଇ ଚାଳନା ବା ଗତିକୁ ପର୍ଯ୍ୟବେକ୍ଷଣ ପୂର୍ବକ ଧାରଣାକୁ ଆସିଚି ଦଶରକମ କ୍ୟାଟିଗରି; କିନ୍ତୁ ସବୁରକମ ଗତି-ଅଗତିର ମୂଳାଧାର ଯେ ଅନ୍‌ମୁଭ୍‌ଡ୍ ମୁଭର୍ ଏ ଆଇଡିଆକୁ ପାସରିଦେଲେ 'କ୍ୟାଟିଗରି, ଶବ୍ଦଟା ଭିତରୁ ଦାର୍ଶନିକତା ନିଷ୍କାସିତ ହୋଇଯିବ ଛାଏଁ ଛାଏଁ ।



## ॥ ଦୁଇ ॥

ନୈତିକତା ଓ ସଦ୍‌ଗୁଣ ଦୁଇଟି ସ୍ୱତନ୍ତ୍ର ପ୍ରତ୍ୟୟ; ମାତ୍ର ଧର୍ମବିଶ୍ୱାସ ଆରିଷ୍ଟୋଟ୍‌ଲ୍‌-ଉତ୍ତର ଜଗତରେ ସେ ପାର୍ଥକ୍ୟକୁ କରିଦେଇଚି ତୀକ୍ଷ୍ଣ ଓ ତୀବ୍ର । କବି ଚିତ୍ରକର କି ବିଜ୍ଞାନୀ ହେବାକୁ ସମାଜ ଗଣ୍ୟକରେ ସଦ୍‌ଗୁଣ ବା ବିଶେଷ ଯୋଗ୍ୟତା; ସେମାନଙ୍କ ନୈତିକତା ଈର୍ଷଣୀୟ ନହେଲେ ସୁଦ୍ଧା ସମାଜ ଭ୍ରୂକ୍ଷେପକରେନା, ଏବଂ କବି କି ବିଜ୍ଞାନୀ ଯଦି ତୀର୍ଥବ୍ରତକରି ପୁଣ୍ୟକରୁଚି ବୋଲି ଦେଖାଇହୁଏ,ଖାଲି ସେଇ କାରଣରୁ ସମାଜ ଦୃଷ୍ଟିରେ ତା ଯୋଗ୍ୟତା ମଧ୍ୟ ବଢ଼ିଯାଏନା । ଅର୍ଥାତ୍‌, ମାନସିକ ଉତ୍କର୍ଷ କି ମହତ୍ତ୍ୱ ବଳରେ ଯିଏ ବିଚକ୍ଷଣ, ନୈତିକ ଲକ୍ଷଣ ଆହରଣକରିବାକୁ ଯଦି କେବେ ତତ୍ପରହୁଏ, କେହି ଭାବେନା ତାର ଗନ୍ତବ୍ୟ ନିର୍ଘାତ୍‌ ଦେବଲୋକ (ସ୍ୱର୍ଗ) । ଗ୍ରୀକ୍‌ସମାଜ ବି ଭାବିନାହିଁ । ସମାଜାଶ୍ରିତ ମଣିଷର କର୍ତ୍ତବ୍ୟ-ଅକର୍ତ୍ତବ୍ୟ ଧାରଣା ତିଆରିହୁଏ ନିର୍ଦ୍ଦିଷ୍ଟ କର୍ମଧାରାକୁ ଅବଲମ୍ବନକରି, କର୍ମର ଉତ୍ସ ଯଦିଓ ବାସନା । ଅର୍ଥାତ୍‌, ବାସନାକୁ ଚରିତାର୍ଥ କରିବାକୁ ବିବିଧ ବିକଳ୍ପ ଭିତରୁ ମଣିଷ ବାଛେ ନିର୍ଦ୍ଦିଷ୍ଟ କର୍ମପନ୍ଥା । ଆରିଷ୍ଟୋଟ୍‌ଲ୍‌ଙ୍କ ବିଚାରରେ ସେ ନିର୍ବାଚନର ଚରିତ୍ର ନୈତିକ । ମାତ୍ର, ମୁଁ ଯଦି କବିତା ଲେଖୁନାହିଁ, ବୁଝିବା ସହଜ ଯେ ମୋତେ ଲେଖିଆସୁନାହିଁ; ମାତ୍ର ଆରିଷ୍ଟୋଟ୍‌ଲ୍‌ କହିବେ, ଲେଖିବି କି ନଲେଖିବି, ସ୍ଥିରକରିବ ମୋ ବିବେକ । ବିବେକ ଯେହେତୁ ନଲେଖିବା କାମଟାକୁ ବାଛିଚି, ପାପ-ପୁଣ୍ୟ ମାନଦଣ୍ଡରେ ମୋ ନିର୍ବାଚନ 'ଏଥିକ୍ୟାଲ୍‌' ନୁହେଁ; ଏଡ଼ାଇଯିବା ପ୍ରବଣତା କେବଳ । ପାପକର୍ମକୁ ଏଡ଼ାଇଯିବା ପ୍ରବଣତା ତେଣୁ ପୁଣ୍ୟ (ଭର୍‌ଚିଉ) ପଦବାଚ୍ୟ । ଅର୍ଥାତ୍‌ ପୁଣ୍ୟ କୋଉ ଦୃଷ୍ଟବାଦୀ ପ୍ରତ୍ୟୟ ନୁହେଁ, ପାପକୁ ଅସ୍ୱୀକାର ମାତ୍ର । ଶିକ୍ଷିତ ସ୍ୱଚ୍ଛଳ ଲୋକ ଯେ ନିରକ୍ଷର ଦରିଦ୍ରଠାରୁ, ଅଥବା ବୁଦ୍ଧିମାନ ଲୋକ ଯେ ସ୍ଥୂଳବୁଦ୍ଧି ମୂଢ଼ଠାରୁ, ହେବ ବେଶି ନୀତିବାନ୍‌ - ଏ ପ୍ରତ୍ୟାଶା ତେଣୁ ଅମୂଳକ । ଏଇ ବିଚାରର ସମ୍ପ୍ରସାରଣରେ ଅନେକ ମାନବିକ ଉତ୍କର୍ଷ, ସମାଜ ଦୃଷ୍ଟିରେ ଯା ମୂଲ୍ୟବାନ, ଏଥିକ୍ସରୁ ବାଦ୍‌ପଡ଼ିଯିବ । ଆଜିକାଲି ସେଥିପାଇଁ ମାନବିକ ଅସାମର୍ଥ୍ୟ, ଯେପରି ଦାରିଦ୍ର୍ୟ ଅଶିକ୍ଷା ଦାସତ୍ୱ ଇତ୍ୟାଦିକୁ କହୁଛୁଁ ଅବାଞ୍ଛିତ; ଆରିଷ୍ଟୋଟ୍‌ଲ୍‌ଙ୍କ ଭଳି 'ଅନୈତିକ' କହୁନାହିଁ କେହି ।

ଏଥିକ୍ସମାନେ ନୀତିସୂତ୍ର, ଯେପରି *ପଞ୍ଚତନ୍ତ୍ର* କି ହିତୋପଦେଶ ବର୍ଣ୍ଣନାକରିଚି; ଅର୍ଥାତ୍,ବ୍ୟାବହାରିକ ଜୀବନଯାତ୍ରା କି ନିତିଖିରେ ବିବେଚିତ ହେବ ନିର୍ଦ୍ଦୋଷ ଓ ଯୁକ୍ତିଯୁକ୍ତ । ଧର୍ମବିଶ୍ୱାସ ସହିତ ଯୋଗସୂତ୍ର ତେଣୁ କଷ୍ଟକଳ୍ପିତ । ଆରିଷ୍ଟୋଟ୍ଲ ଯୋଉ ସମାଜରେ ବଞ୍ଚିଥିଲେ, ନାଗରିକ-ସମାଜ ନକହି ତାକୁ ରାଜନୀତିକ ସମାଜ କହିବା ଯଥାର୍ଥ, କାହିଁକିନା, ବିନା ବ୍ୟତିକ୍ରମରେ ବିବାକ ନାଗରିକଥିଲେ ରାଷ୍ଟ୍ରପରିଚାଳନାରେ ପ୍ରତ୍ୟକ୍ଷଭାବେ ସକ୍ରିୟ । ଆରିଷ୍ଟୋଟ୍ଲଙ୍କ ନାଁରେ ତିନିତିନିଟା ପୁଥିକୁ ଏଥିକ୍ସ ବୋଲି ଚଳାଇ ଦିଆଯାଇଚି; ଶିଷ୍ୟବଚନ ମଧ୍ୟ ସ୍ଥାନପାଇଚି ଅବଧାରିତଭାବେ; ମାତ୍ର ପାଠଶୁଦ୍ଧି ପ୍ରସଙ୍ଗକୁ ଛାଡ଼ି ଏକ୍ଷଣି ଆଲୋଚନା କରାଯାଉ ଏକମାତ୍ର *ନିକୋମାକିଆନ୍* ଏଥିକ୍ସ । ଯୋଉ ଜୀବନଦୃଷ୍ଟି ସେଥିରେ ପ୍ରତିଫଳିତ, ପ୍ରଧାନତଃ ଶିକ୍ଷିତ ଓ ଅଭିଜ୍ଞ ଲୋକଙ୍କ ଅନୁସୃତ ଧ୍ୟାନଧାରଣା । ପ୍ଲାଟୋଙ୍କ ନୀତିସୂତ୍ର ଭଳି ଧର୍ମୀୟ ରହସ୍ୟ ସେ ଧାରଣାକୁ ରଞ୍ଜିତକରେନା, ଅଥବା *ରିପବ୍ଲିକ୍*ରେ ସମ୍ପତ୍ତି ବିବାହ ଓ ପରିବାର ବିଷୟରେ ଆମୂଳ ସଂସ୍କାରର ଯୋଉ ପ୍ରସ୍ତାବ ରହିଚି ,ତା ଆଭାସ ପର୍ଯ୍ୟନ୍ତ ମିଳେନା । ଯୋଉ ପ୍ରସ୍ତାବ ମିଳେ, ମଧ୍ୟବିତ୍ତଶ୍ରେଣୀ ପ୍ରତି ଉଦ୍ଦିଷ୍ଟ ସୁପରାମର୍ଶ କେବଳ । ସମାଜରେ ସମ୍ମାନିତ ପ୍ରୌଢ଼ ଅଭିଭାବକଙ୍କ ସକାଶେ ଆଚରଣବିଧି, ଯେମିତି *ଚାଣକ୍ୟନୀତି* । ସେ ବିଧାନକୁ ଶିରୋଧାର୍ଯ୍ୟ କରିଚି ଇଉରୋପ ସପ୍ତଦଶ ଶତକରୁ । କରିଚି, ଯୌବନର ବ୍ୟଗ୍ରତା ଓ ଉଲ୍ଲାସକୁ ଦମନ କରିବା ସକାଶେ । ଉପଲବ୍ଧିକ୍ଷମ ଲୋକର ଅଭିପ୍ରେତ ହୋଇପାରେନା ସେଭଳି ନୀତିଜ୍ଞାନ ।

ଆନନ୍ଦ ସନ୍ଧାନକରିବାକୁ ସମର୍ଥକରେ ଚାରିତ୍ରିକ ଉତ୍କର୍ଷ ,ଏବଂ ସଂଧାନଜନିତ କର୍ମଧାରା ଆତ୍ମାର ଆକୁଳତାରୁହିଁ ହୁଏ ଉଦ୍ଭାରିତ । ପ୍ଲାଟୋ ତେଣୁ ଆତ୍ମାକୁ ଯୁକ୍ତି ଓ ଅଯୁକ୍ତି ଭଳି ଦୁଇଭାଗରେ ବିଭକ୍ତକରିଚନ୍ତି; ଆରିଷ୍ଟୋଟ୍ଲ ସମର୍ଥନକରିଚନ୍ତି ଏ ବିଭାଜନ । ଯୋଉ ଅଂଶଟା ଅଯୁକ୍ତି,ତାର ପୁଣି ଅଛି ଦୁଇଟି ବିଭାଗ : ବର୍ଦ୍ଧମାନ କିନ୍ତୁ ନିଶ୍ଚେତନ (ଯେପରି ଉଦ୍‌ଭିଦ); ପୁଣି ପ୍ରବୃତ୍ତି ଓ ବାସନାଯୁକ୍ତ ଚେତନ (ଯେପରି, ଅବଶିଷ୍ଟ ଜୀବଜଗତ୍) । ବାସନାଯୁକ୍ତ ଚେତନ କିୟତ୍ ପରିମାଣରେ ଯୁକ୍ତିସମ୍ପନ୍ନ, କାହିଁକିନା, ଯା ପାଇବାକୁ ଇଚ୍ଛାକରେ, ସାଧାରଣତଃ ତା ଯୁକ୍ତିସାପେକ୍ଷ । ପ୍ରବୃତ୍ତିର ଏ ଶୁଦ୍ଧତା କିନ୍ତୁ ଦିବ୍ୟଚେତନା ଲାଭକରିବାକୁ ପୂର୍ବସର୍ତ୍ତ । ଯୁକ୍ତି ଯେହେତୁ ଧ୍ୟାନାଭିମୁଖୀ, ବାସନା ଅନୁପସ୍ଥିତିରେ ଯୁକ୍ତି କୌଣସି ଫଳିତ କର୍ମକୁ ଜନ୍ମଦେଇପାରେନା । ଆତ୍ମାର ଏ ଦୁଇଅଂଶର ଅନୁରୂପ ଦୁଇ ଲକ୍ଷଣ ମେଧା ଆଉ ନୈତିକତା । ମେଧାପ୍ରଧାନ ଲକ୍ଷଣ ଆସେ ଶିକ୍ଷାଦୀକ୍ଷାରୁ; ନୈତିକ ଶୁଦ୍ଧତା ଆସେ ନିତ୍ୟାଭ୍ୟାସରୁ । ନିର୍ବାଚିତ ନେତାଙ୍କ କର୍ତ୍ତବ୍ୟ ଆଚାରଶୁଦ୍ଧିରେ ଜନସାଧାରଣଙ୍କୁ ଅଭ୍ୟସ୍ତକରିବା । ଲୋକ ସମଦର୍ଶୀ ଓ ନ୍ୟାୟନିଷ୍ଠ

ହୁଅନ୍ତି କର୍ମ ବଳରେ; ଅନ୍ୟାନ୍ୟ ସଦ୍‌ଗୁଣ ମଧ୍ୟ ଅର୍ଜନକରନ୍ତି କର୍ମନିଷ୍ଠାରୁ । ଶୁଦ୍ଧ-ଆଚରଣରେ ଅଭ୍ୟସ୍ତହେବାକୁ ବାଧ୍ୟହେଲେ ଶିଶୁ ମଧ୍ୟ ବୟଃପ୍ରାପ୍ତି ବେଳକୁ ପୁଣ୍ୟକାମରେ ପାଇବେ ଆନନ୍ଦ ।

ବିଖ୍ୟାତ ଆଉ ଏକ ଅନୁଶାସନ, 'ଗୋଲ୍‌ଡେନ୍ ମିନ୍' । 'ମିନ୍' ମାନେ ମଧ୍ୟବର୍ତ୍ତୀ ଅବସ୍ଥା/ଅବସ୍ଥାନ । କୋଉହେଲେ କଥାରେ ଚରମନିଷ୍ଠା ଚରିତ୍ରର କଳଙ୍କ; ଦୁଇ ଚରମର ମଧ୍ୟବର୍ତ୍ତୀ ସ୍ଥାନହିଁ 'ମିନ୍'; ଅର୍ଥାତ୍, ସଦ୍‌ଗୁଣ । ବୁଦ୍ଧ ଢେର୍ ଆଗରୁ କହିଚନ୍ତି ,ଅତି ସର୍ବତ୍ର ବର୍ଜୟେତ୍; ଅଥବା, ଅଭ୍ୟାସରୁ ଆସେ ସଂସ୍କାର । ନୀତିନିଷ୍ଠା ବୋଲି ବିବେଚିତ ବିବିଧ ସଦ୍‌ଗୁଣକୁ ବିଶ୍ଳେଷଣକରି ଆରିଷ୍ଟୋଟ୍ଲ ମଧ୍ୟପନ୍ଥାର ଉପଯୋଗିତା ପ୍ରମାଣକରିଚନ୍ତି; ଯେପରି, ସାହସିକତାର ଅବସ୍ଥାନ ଭୀରୁତା ଓ ଦୁଃସାହସିକତା ମଧ୍ୟବର୍ତ୍ତୀ । ଉଦାରତା ବା ବଦାନ୍ୟତାର ଅବସ୍ଥାନ ଅପବ୍ୟୟ ଓ କୃପଣତା ମଧ୍ୟବର୍ତ୍ତୀ । ଆତ୍ମାଭିମାନର ଜାଗା ଆତ୍ମଶ୍ଳାଘା ଓ ଆତ୍ମଗ୍ଲାନି ମଧ୍ୟବର୍ତ୍ତୀ । ପ୍ରତ୍ୟୁତ୍ପନ୍ନମତିତ୍ୱର ଜାଗା ଭଣ୍ଡାମି ଓ ଗ୍ରାମ୍ୟ ରସିକତା ମଧ୍ୟବର୍ତ୍ତୀ । ବିନୟର ଜାଗା ଆତ୍ମବିଲୋପ ଓ ନିର୍ଲଜତା ମଧ୍ୟବର୍ତ୍ତୀ । ଏପରି ସଦ୍‌ଗୁଣ ମଧ୍ୟ ରହିଚି, ପ୍ରଦତ୍ତ ଉଦାହରଣ ସହିତ ସୁସମଞ୍ଜସ ନୁହେଁ; ଯେପରି, ସତ୍ୟନିଷ୍ଠା । ସତ୍ୟକଥନକୁ ଆରିଷ୍ଟୋଟ୍ଲ ଦେଖିଚନ୍ତି ଆସ୍ଫାଳନ ଓ କପଟବିନୟର ମଧ୍ୟବର୍ତ୍ତୀ (1108a) । ବିଚାରଟା ନିଜେ କିନ୍ତୁ କପଟବାକ୍ୟ, କାହିଁକିନା, କେହିଜଣେ ନଗରପାଳ କର୍ମକାଳ ସରିଯିବା ଉତାରୁ ଯୋଉ ବିଦାୟଭାଷଣ ଦେଇଥିଲେ, ଆରିଷ୍ଟୋଟ୍ଲଙ୍କୁ ଅନୁକରଣକରି କୁଆଡ଼େ କହିଥିଲେ, ସିଏ ଯା କରିଚନ୍ତି, ତା ପକ୍ଷପାତ ଓ ଅପକ୍ଷପାତର ମଧ୍ୟବର୍ତ୍ତୀ । ସତ୍ୟକଥନର ଏ ଦୃଷ୍ଟାନ୍ତ 'ଗୋଲ୍‌ଡେନ୍ ମିନ୍'କୁ ବିଦ୍ରୂପରେ ପରିଣତକରିଚି; ଆରିଷ୍ଟୋଟ୍ଲଙ୍କ ଅଭିମତ ନୈତିକତା ଭଳି ଗୁରୁତର ପ୍ରସଙ୍ଗରେ ସୁଦ୍ଧା ସେକାଳର ଗତାନୁଗତିକତାକୁ ଅତିକ୍ରମ କରିପାରିନାହିଁ । ଏକ୍ଷଣି ତ ମନେହେବ ରୀତିମତ ପ୍ରତିକ୍ରିୟାଶୀଳ, ବିଶେଷତଃ ଅଭିଜାତଶ୍ରେଣୀର ନୈତିକତା ହୁଏ ଯଦି ବିବେଚ୍ୟ । ନୀତିଚିବାର, ସମାନ ଅଧିକାରକୁ ସବୁଠି କରିଚି ନିୟାମକ, କାହିଁକିନା, ସମାନ ଅଧିକାର ଅନୁପସ୍ଥିତିରେ ନ୍ୟାୟବିଚାର ହୁଏ ପ୍ରହସନ । ଆରିଷ୍ଟୋଟ୍ଲ କିନ୍ତୁ ଭାବିଚନ୍ତି, ନ୍ୟାୟବିଚାର ସକାଶେ ସମାନତା ଆନୁଷଙ୍ଗିକ ମାତ୍ର; ଅପରିହାର୍ଯ୍ୟ କେବଳ ଯଥାର୍ଥ ଅନୁପାତ ଜ୍ଞାନ, ଯା ବେଳେବେଳେ ସମଦୃଷ୍ଟିର ଅନୁବର୍ତ୍ତୀ (1131 b) ।

ପିତା କି ପ୍ରଭୁ ସକାଶେ ଯା ନ୍ୟାୟସଙ୍ଗତ, ସାଧାରଣ ନାଗରିକ ସକାଶେ ପ୍ରଯୋଜ୍ୟ ହୋଇପାରେନା; କହିଁକିନା,ପୁତ୍ର ବା ଦାସ (ସ୍ଲେଭ୍) ପିତା ବା ପ୍ରଭୁର ବ୍ୟକ୍ତିଗତ ସମ୍ପତ୍ତି, ଏବଂ ନିଜ ସମ୍ପତ୍ତିକୁ କିଏ କି ଭାବରେ ଉପଭୋଗକରିବ, ସର୍ବସାଧାରଣ ବିଧାନ ସ୍ଥିରକରିପାରେନା (1134 b) । ପ୍ରଭୁ ନିଜ କ୍ରୀତଦାସର ମିତ୍ର

ହୋଇପାରେ କି ନାହିଁ, ପ୍ରଶ୍ନର ଉତ୍ତରରେ  କିନ୍ତୁ ଅନ୍ୟକଥା କହିଚନ୍ତି ଆରିସ୍ତୋଟ୍ଲ : There is nothing in common between the two parties; the slave is a living tool.....*Qua* slave, then, one cannot be friends with him. But *qua* man one can; for there seems to be some justice between any man and any other who can share in a system of law or be a party to an agreement; therefore there can also be friendship with him in so far as he is man (1161-b) । ସେହିପରି,ପୁତ୍ର ଅବାଧ ବା ବିପଥଗାମୀ ହେଲେ ପିତା ତାକୁ ପରିତ୍ୟାଗ କରିପାରେ; ମାତ୍ର କୋଉହେଲେ ପରିସ୍ଥିତିରେ ପୁତ୍ର ପରିତ୍ୟାଗ କରିପାରେନା ପିତାକୁ, କାହିଁକିନା, ପୁତ୍ର ଯା ପାଇଚି ପିତାପାଖରୁ, ତା ଅପରିଶୋଧ, ବିଶେଷତଃ ପୁତ୍ର ଯେହେତୁ ପାଇଚି ନିଜ ଅସ୍ତିତ୍ୱ (1163ᵇ) । ସମ୍ପର୍କ ଯୋଉଠି ଅସମ, ଏ ବ୍ୟବସ୍ଥା ସେଠି ସମୁଚିତ, କାହିଁକିନା, କିଏ କେତେ ଶ୍ରଦ୍ଧା ପାଇବାକୁ ଯୋଗ୍ୟ, ନିର୍ଭରକରେ ନୈତିକ ଉତ୍କର୍ଷ ଉପରେ; ଆପେକ୍ଷିକ ମୂଲ୍ୟ ବା ମୂଲ୍ୟର ଅନୁପାତ ଉପରେ । ଯେପରି, ଅଧୀନ/ଅଧସ୍ତନ ଅଧିକ ଭଲପାଇବ ( ଶ୍ରଦ୍ଧାକରିବ) ଉପରିସ୍ଥ ଲୋକକୁ; କିନ୍ତୁ ଉପରିସ୍ଥ/ଉର୍ଦ୍ଧ୍ୱତନ ଲୋକ ସେଇ ଅନୁପାତରେ ଊଣା ଭଲପାଇବ ଅନୁଗତ ଲୋକଙ୍କୁ । ଅନୁଗତ/ଅଧସ୍ତନ ହୋଇପାରେ ସ୍ତ୍ରୀ, ସନ୍ତାନ କି ପ୍ରଜା । ଶ୍ରଦ୍ଧାର ଅନୁପାତ ତେଣୁ ସ୍ୱାମୀ, ପିତାମାତା ଓ ରଜାପ୍ରତି ହେବ ଅପେକ୍ଷାକୃତ ଅଧିକ । ଆଦର୍ଶ ଯୋଉ ବିବାହ, ସେଥିରେ the man rules in accordance with worth, and in those matters in which a man should rule, but the matters that befit a woman he hands over to her (1160ᵇ) । ମାତ୍ର ସ୍ତ୍ରୀ ଯଦି ଉତ୍ତରାଧିକାର ସୂତ୍ରରେ ବାପଘର ସମ୍ପତ୍ତିର ଅଧିକାରିଣୀ ହୁଏ, ସ୍ୱାମୀ ସେଥିରେ ନାକ ଗଳାଇବାକୁ  ହକ୍‌ଦାର ନୁହେଁ ।

ଆରିସ୍ତୋଟ୍ଲଙ୍କ ଦୃଷ୍ଟିରେ ସର୍ବାପେକ୍ଷା ଯିଏ ମହାନୁଭବ, କେହିହେଲେ ସାଧୁସନ୍ଥ ନୁହେଁ,  ଧର୍ମାନୁଷଙ୍ଗ ଯେହେତୁ ମହତ୍ତ୍ୱର ଆବଶ୍ୟକ ଉପାଦାନ ନୁହେଁ । *ମେଟାଫିଜିକ୍ସ*ରେ କିନ୍ତୁ କହିଚନ୍ତି, ଈଶ୍ୱରସାନ୍ନିଧ ହିଁ ଆତ୍ମାର ଚରମ ଲକ୍ଷ୍ୟ । ଈଶ୍ୱର ନାମଧେୟ ପୁରୁଷୋତ୍ତମର ଅଷ୍ଟଐଶ୍ୱର୍ଯ୍ୟ ଭିତରେ ଅହଂକାର ଅନ୍ୟତମ;  ଆପଣା ଉପାର୍ଜିତ ଉତ୍କର୍ଷ ବିଷୟରେ ସିଏ ସଚେତନ ଓ ସତର୍କ; ଆତ୍ମଗ୍ଲାନିକୁ ତେଣୁ ପ୍ରଶ୍ରୟଦିଏନା । ବରଂ, ଅବଜ୍ଞାକରିବାକୁ କୁଣ୍ଠିତହୁଏନା, ଅବଶ୍ୟ ଅବଜ୍ଞା ଯଦି ଯଥୋଚିତ (1124ᵇ) । ମହାନୁଭବ ସେଇ ପୁରୁଷୋତ୍ତମର ବର୍ଣ୍ଣନା ଅତି ଚମତ୍କାର; କାହାରି କାହାରି ମତରେ, ବିଧର୍ମୀ ଓ ଖ୍ରୀଷ୍ଟାବ୍ଦ ନୀତିବୋଧ ମଧ୍ୟସ୍ଥ ପ୍ରଭେଦର ନିଦର୍ଶନ । ଅର୍ଥାତ୍‌, ଯୋଉ ଅର୍ଥରେ ନିଇଚନ୍ଥ –

(୧୮୪୪-୧୯୦୦) କ୍ରିଶ୍ଚାନିଟିକୁ କହିଚନ୍ତି କ୍ରୀତଦାସର ନୈତିକତା । କିନ୍ତୁ ଆରିଷ୍ଟୋଟ୍ଲଙ୍କ ତିରୋଧାନର ବହୁକାଳ ଉତାରୁ ବାହାରିଚି ଖ୍ରୀଷ୍ଟଧର୍ମ । The magnanimous man, since he deserves most, must be good in the highest degree; for the better man always deserves more, and the bestman most. Therefore the truly magnanimous man must be good. And greatness in every virtue would seem to be characteristic of the magnanimous man. And it would be most unbecoming for the magnanimous man to fly from danger, swinging his arms by his sides, or to wrong another; for to what end should he do disgraceful acts, he to whom nothing is great ?.....magnanimity, then, seems to be a sort of crown of the virtues; for it makes them greater, and it is not found without them. Therefore it is hard to be truly magnanimous; for it is impossible without nobility and goodness of character. It is chiefly with honours and dishonours, then, that the magnanimous man is concerned; and at honours that are great and conferred by good men he will be moderately pleased, thinking that he is coming by his own or even less than his own; for there can be no honour that is worthy of perfect virtue, yet he will at any rate accept it since they have nothing greater to bestow on him; but honour from casual people and on trifling grounds he will utterly despise, since it is not this that he deserves, and dishonour too, since in his case it cannot be just...power and wealth are desirable for the sake of honour; and to him for whom even honour is a little thing the others must be so too. Hence magnanimous men are thought to be disdainful. ... the magnanimous man does not run into trifling dangers,....but he will face great dangers, and when he is in danger he is unsparing of his life, knowing that there are conditions on which life is not worth having. And he is the sort of man to confer benefits, but he is ashamed

of receiving them; for the one is the mark of a superior, the other of an inferior. And he is apt to confer greater benefits in return; for thus the original benefactor besides being repaid will incur a debt to him.... It is the mark of the magnanimous man to ask for nothing or scarcely anything, but to give help readily, and to be dignified towards people who enjoy a high position but unassuming towards those of the middle class; for it is a difficult and lofty thing to be superior to the former, but easy to be so to the latter, and a lofty bearing over the former is no mark of ill-breeding, but among humble people it is as vulgar as display of strength against the weak.... He must also be open in his hate and in his love, for to conceal one's feelings i.e., to care less for truth than for what people think, is a coward's part. ....He is free of speech because he is contemptuous, and he is given to telling the truth, except when he speaks in irony to the vulgar. .... Nor is he given to admiration, for to him nothing is great. .... Nor is he a gossip; for he will speak neither about himself nor about another, since he cares not to be praised nor for others to be blamed. ...... He is one who will possess beautiful and profitless things rather than profitable and useful ones. .... Further, a slow step is thought proper to the magnanimous man, a deep voice and a level utterance. ..... Such, then, is the magnanimous man; the man who falls short of him is unduly humble, and the man who goes beyond his is vain ($1123^{b}$-$5^{a}$) । ଏଇ ଯଦି ମହାନୁଭବର ମହିମା, କେଜାଣି ଚପଳ (ଭେଇନ୍) ଲୋକଟିର ବାଗବର୍ଗ ହୋଇନଥିବ କେତେ ଲୋମହର୍ଷକ !

ମହାନୁଭବ ଲୋକଟିର ଚରିତ୍ରଚିତ୍ରଣ ଭଲ ହେଉ କି ନାକରା, ସନ୍ଦେହ ନାହିଁ, ଗ୍ରୀକ୍ ସମ୍ପ୍ରଦାୟରେ ହେଉ କି ଆଉକୋଉ ଜନଗୋଷ୍ଠୀରେ,ତାଙ୍କ ସଂଖ୍ୟା ଦି'ହାତର ଆଙ୍ଗୁଳି ସଂଖ୍ୟାକୁ ଟପିବନାହିଁ । ସେଭଳି ଚରିତ୍ରବୈଶିଷ୍ଟ୍ୟ ବିରଳ କି ଉତ୍କର୍ଷଅର୍ଜନ ଦୁଃସାଧ୍ୟ ବୋଲି ନୁହେଁ, ମହାନୁଭବତା ଅର୍ଜନକରିବା ନିର୍ଭରକରିଚି ଯେହେତୁ ଲୋକଟିର

ଅସମାନ ସାମାଜିକ ମର୍ଯ୍ୟାଦା ଉପରେ । ଏଣେ, ଆରିଷ୍ଟୋଟ୍ଲଙ୍କ ବିଚାରରେ ଏଥିକ୍ସ ରାଷ୍ଟ୍ରନୀତିର ସମ୍ପ୍ରସାରଣ ମାତ୍ର; ଆତ୍ମାଭିମାନର ପ୍ରଶସ୍ତି ଶୁଣିବା ଉତାରୁ ଆଶ୍ଚର୍ଯ୍ୟହେବା ତେଣୁ ଅନୁଚିତ ଯେ ରାଜତନ୍ତ୍ର ମଧ୍ୟ ପ୍ରତିଭାତହେବ ଶ୍ରେଷ୍ଠ ଶାସନବ୍ୟବସ୍ଥା । ତା ପଛକୁ ଅଭିଜାତତନ୍ତ୍ର । ରାଜପୁରୁଷ ଓ ଅଭିଜାତବର୍ଗ ହୋଇପାରିବେ ଅକ୍ଳେଶରେ ମହାନୁଭବ; କିନ୍ତୁ ସାଧାରଣଲୋକ କେମିତି ହୋଇପାରିବେ ମହାନୁଭବ, ଅର୍ଥାତ୍ ଶରୀର-ଶ୍ରମ ଓ ମନନର ଉତ୍କର୍ଷ କେମିତି ହୋଇପାରିବ ପରସ୍ପର ପରିପୂରକ, ମନେହୋଇନାହିଁ ଆଦୌ କୋଉ ସମସ୍ୟା ।

ନୀତିନିଷ୍ଠାର ଏ ବିବରଣରୁ ଯୋଉ ପ୍ରଶ୍ନଟି ଉଠିଆସିବ, ଅଂଶତଃ ରାଜନୀତିକ; ଅସଲ ପ୍ରଶ୍ନ କିନ୍ତୁ ଏଥିକ୍ୟାଲ୍ । ଜୀବନଚର୍ଯ୍ୟାର ଅଭିପ୍ରେତ ଜିନିଷଗୁଡ଼ାକୁ ମୁଷ୍ଟିମେୟ ଦାମ୍ଭିକଙ୍କ ଏକାଧିକାରରେ ଛାଡ଼ିଦେବାକୁ କୋଉହେଲେ ଆଦର୍ଶ ସମାଜ କରିପାରେନା ନିଜ ସଙ୍ଗଠନସୂତ୍ର । ତାହେଲେ ତ ସଂଖ୍ୟାଗରିଷ୍ଠ ଲୋକଙ୍କୁ ଭୋଗିବାକୁ ପଡ଼ିବ ଅସଙ୍ଗତ ବଞ୍ଚନା, ଯେପରି ଭୋଗିଚନ୍ତି ଗ୍ରୀକ୍ ସମାଜରେ ସ୍ଲେଭ, ନାରୀ ଓ ଅଣଗ୍ରୀକ୍ ନାଗରିକ । ପ୍ଲାଟୋ ଓ ଆରିଷ୍ଟୋଟ୍ଲଙ୍କ ଦୃଷ୍ଟିରେ କିନ୍ତୁ ଏଭଳି ପାତରଅନ୍ତର ସମାଜିକ ଶୃଙ୍ଖଳାର ସହାୟକ, କାହିଁକିନା, ବିନା ବ୍ୟତିକ୍ରମରେ ସୁଫଳଭୋଗ ସମସ୍ତଙ୍କର ପ୍ରାପ୍ୟ ହୋଇପାରେନା; ଯୋଗ୍ୟତା ଅନୁସାରେ ମିଳିବ ଫ୍ରିଡମ୍ । ନିଇଚହ୍ ମଧ୍ୟ ବ୍ୟତିକ୍ରମ ନୁହେଁ । ମାତ୍ର ଷ୍ଟୋଇକ୍, ଖ୍ରୀଷ୍ଟାନ୍ ଓ ଗଣତନ୍ତ୍ରବାଦୀ ମାନିନାହାନ୍ତି । ଅସମ୍ମତିର ଧରଣରେ ଅବଶ୍ୟ ତାରତମ୍ୟ ରହିଚି । ଷ୍ଟୋଇକ୍ଙ୍କ ଭଳି ଆଦି-ଖ୍ରୀଷ୍ଟାନ୍ ମଧ୍ୟ ଭାବିଚନ୍ତି, ଜୀବନର ପରମପ୍ରାପ୍ତି ପୁଣ୍ୟ ବା ପବିତ୍ରତା । ପୂଣ୍ୟ ଅର୍ଜନ ସକାଶେ ଦରକାର ସଦାଚାର, କାହିଁକିନା, ସାଂସାରିକ ସୁଖଦୁଃଖ ସ୍ଖଳିତ କରିପାରେନା ପୁଣ୍ୟପଥରୁ । ମଣିଷର ନୈତିକ ସ୍ଖଳନ ପାଇଁ ସାମାଜିକ ଅନ୍ୟାୟକୁ ଦାୟୀକରିବା ତେଣୁ ଉଚିତନୁହେଁ । ଅଥଚ ସାମାଜିକ ଅନ୍ୟାୟ ହିଁ ସୃଷ୍ଟିକରେ ବଞ୍ଚନା; ଆଧ୍ୟାତ୍ମିକ ଉପଲବ୍ଧି ବାଟରେ ଅନ୍ତରାୟ ହେଉ କି ନହେଉ । ଅନ୍ୟ ପକ୍ଷରେ, ଗଣତନ୍ତ୍ରବାଦୀ କହିଚନ୍ତି, ରାଜନୀତି ଯଦି ସମାଜର ସଙ୍ଗଠନସୂତ୍ର, କ୍ଷମତା ଓ ସମ୍ପତ୍ତିର ଅଧିକାର ତେବେ ରାଜନୀତିର ସାଂଘାତିକ ଉପାଦାନ । ବିଧିବ୍ୟବସ୍ଥା ଯଦି ତା ପ୍ରତି ଉଦାସୀନ,ରାଜନୀତି ହୋଇପାରେନା ଏଥିକ୍ୟାଲ୍ । ଭାରତରେ କୁହାଯାଇଛି, ଆତ୍ମା କୁଶଳେ ସର୍ବସିଦ୍ଧି; କୁଶଳ-ଅକୁଶଳ ବିବେଚନା ତେଣୁ ଆତ୍ମାର ସହଜାତ । ତଦନୁଯାୟୀ ସମାଜସଙ୍ଗଠନ ଗଢ଼ିଉଠେ କିମ୍ବା ଭାଙ୍ଗିଯାଏ । କାହିଁକିନା, 'ସିଦ୍ଧି' ଏକ ଚଳମାନ ଅନୁଭବ । ଯେପରି, ସୋକ୍ରଟିଜ୍ ଭାବିଚନ୍ତି, ଇଚ୍ଛାକରି କେହି ନୀତିଭ୍ରଷ୍ଟ ହୁଏନା ।

ଏ ଆପତ୍ତି ଆରିଷ୍ଟୋଟ୍ଲଙ୍କ ଅଭିମତର ପ୍ରତୀପ,କାହିଁକିନା, ସମ୍ପତ୍ତି ଓ କ୍ଷମତା ଯଦି ସର୍ବସାଧାରଣ (ଇଉନିଭର୍ସାଲ) ହୁଏ, ସାମାଜିକ ଅବସ୍ଥାନ ନିର୍ବିଶେଷରେ ପୁଣ୍ୟାର୍ଜନ ହୋଇଯିବ ଅନାୟାସ; କ୍ରୀତଦାସ ପାଇଁ ଯେତିକି, ଭୂସ୍ୱାମୀପାଇଁ ସେତିକି । ସମାଜର ଅଧିକାଂଶ ଲୋକ ଆତ୍ମାଭିମାନଙ୍କୁ ଭାବନ୍ତିନାହିଁ ସଦ୍‌ଗୁଣ; ମାତ୍ର ଆରିଷ୍ଟୋଟ୍ଲ 'ପ୍ରାଇଡ୍'କୁ କହିଚନ୍ତି ମହାନୁଭବତା (ମ୍ୟାଗ୍ନାନିମିଟି)ର ଲକ୍ଷଣ । ଲୋକ ଭାବନ୍ତି ବିନୟ ଏକ ସଦ୍‌ଗୁଣ; ଆରିଷ୍ଟୋଟ୍ଲ ଭାବନ୍ତି ଦୁର୍ବଳତା । ମେଧାପ୍ରସୂତ ବିଚକ୍ଷଣତା, ପ୍ଲାଟୋ ଓ ଆରିଷ୍ଟୋଟ୍ଲ ଉଭୟଙ୍କ ବିଚାରରେ, ସର୍ବଶ୍ରେଷ୍ଠ ସିଦ୍ଧି (ଭର୍ଚ୍ୟୁ); ଏବଂ ସେଭଳି ପରିଶୁଦ୍ଧି ଯେହେତୁ ସର୍ବମାନବର କାମ୍ୟ, ମେଧାର ଅନୁଶୀଳନକୁ ଅନ୍ୟାନ୍ୟ ଇତର ଉଦ୍ୟମ ପାଖରୁ ଦୂରରେ ରଖିବା ବିଧେୟ; ଅନ୍ୟଥା, ଶ୍ରମଜୀବି ଦରିଦ୍ର ସିଦ୍ଧି ଆଡ଼କୁ ମନକରିବେ ନାହିଁ । ପୁରାକାଳରେ ଜଣେ ପୋପ୍, ଏଇ କାରଣରୁ, ବ୍ୟାକରଣ ଶିଖାଇବାକୁ ବାରଣକରିଥିଲେ ବିସପ୍‌ଙ୍କୁ, କାହିଁକିନା, ଅନ୍ତରର ଅର୍ଘ୍ୟ ନିବେଦନ କରିବାକୁ ବ୍ୟାକରଣର ଭୂମିକା କୁଆଡ଼େ ଅବାନ୍ତର !

ଆରିଷ୍ଟୋଟ୍ଲଙ୍କ ବିଚାରରେ ନୀତିନିଷ୍ଠା (ଏଥିକ୍ସ) ତେଣୁ ରାଷ୍ଟ୍ରନୀତିର ପରିପୋଷକ ମାତ୍ର; ଅର୍ଥାତ୍, ଏଥିକ୍ସ ରାଜନୀତିର ଅଧସ୍ତନ । କାହିଁକିନା, ସର୍ବଶ୍ରେଷ୍ଠ ସିଦ୍ଧି (ରାଜନୀତି) ହୋଇପାରେ କେବଳ ସଂଖ୍ୟାଲଘୁ ମେଧାବୀ ଲୋକଙ୍କ କାରବାର । ଲୋକସମାଜର ଆଧାତ୍ମିକ ଉତ୍ତରଣ ଯଦି ରାଷ୍ଟ୍ରର ଲକ୍ଷ୍ୟ, ବ୍ୟକ୍ତିଗତ ସିଦ୍ଧି ଅଗ୍ରାଧିକାର ନପାଇଲେ, ଆପେକ୍ଷିକ ଅଧସ୍ତନତା ବୁଝାପଡ଼ିବ ନାହିଁ । ସାଂସ୍କୃତିକ ପରିଶୀଳନରେ ଶିକ୍ଷିତ ସଂଖ୍ୟାଲଘୁ ରହିଯିବ ନେପଥ୍ୟରେ । ତାହେଲେ, ପ୍ରାପ୍ୟ-ପ୍ରାପକ ବିବେଚନାରେ ପ୍ରତ୍ୟେକ ନାଗରିକ ହେବ ନିଃସଙ୍ଗ ଏକକ । ଏବେ ମଧ୍ୟ ଅନ୍ୟଥା ହେଉନାହିଁ । ହେଉନାହିଁ ବୋଲି, ବାହାରିଚି 'ଶାସକଶ୍ରେଣୀ' ଓ 'ସଂଖ୍ୟାଲଘୁ ସଂସ୍କୃତି' ଭଳି ଆଇଡିଆ । ଅଭିଜ୍ଞତାରୁ ଦିଶୁଚି, ନିର୍ବାଚିତ ହେଲେସୁଦ୍ଧା, ରାଷ୍ଟ୍ରପତି କି ପ୍ରଧାନମନ୍ତ୍ରୀ ସାଧାରଣଲୋକ ନୁହେଁ; ସାଧାରଣଲୋକ ମଧ୍ୟ ଚାହୁଁଚି, ନେତା ହେବେ ଅପେକ୍ଷାକୃତ ଅଧିକ ସିଦ୍ଧିସମ୍ପନ୍ନ; କାହିଁକିନା, ନେତା ଯେତେବେଳେ ପ୍ରୟୋଗକରିବେ କ୍ଷମତା, ଲାଗିବ ସତେଯେମିତି ବାପ ମାରୁଚି ପିଲାକୁ କି ମାଷ୍ଟର ଛାତ୍ରକୁ । ସାଧାରଣଲୋକ ତାଙ୍କ ଫଟୋକୁ ବି କାନ୍ଥରେ ଝୁଲାଇରଖେ ଠାକୁର କି ଗୁରୁଙ୍କ ଫଟୋ ସାଙ୍ଗରେ । ସେ ନେତା ହୁଏତ ଆରିଷ୍ଟୋଟ୍ଲଙ୍କ 'ମହାନୁଭବ' ନୁହେଁ, ମାତ୍ର ସାଧାରଣଲୋକ ପ୍ରତ୍ୟାଶାକରେ ତା ପାଖରୁ ମହାନୁଭବତା । ପ୍ରତ୍ୟାଶା ନିଶ୍ଚୟ 'ଏଥିକ୍ୟାଲ୍' ନୁହେଁ, କିନ୍ତୁ ନିର୍ଦ୍ଦୋଷ; କାହିଁକିନା, ଆରିଷ୍ଟୋଟ୍ଲ ଯୋଉ ବ୍ୟଞ୍ଜନାରେ କହିଚନ୍ତି 'ମହାନୁଭବ', ଆଧୁନିକକାଳ ସେ ବ୍ୟଞ୍ଜନାକୁ କରିଦେଇଚି ସଙ୍କୁଚିତ ।

ଏକାଳର ଭାବୁକ ଆରିଷ୍ଟୋଟ୍ଲ-ପ୍ରବର୍ତ୍ତିତ ନୀତିନିଷ୍ଠାକୁ ଗ୍ରହଣ କରିନାହାନ୍ତି, କାହିଁକିନା, ଫିଲଜଫିର କର୍ତ୍ତବ୍ୟ ସବାଆଗେ ଉତ୍କର୍ଷ (ସିଦ୍ଧି)କୁ କରିବ ସଂଜ୍ଞାବଦ୍ଧ; ତହିଁଉତାରୁ କହିବ କି ପ୍ରକାର କର୍ମଧାରା ସିଦ୍ଧିକୁ ଉପଲବ୍ଧିକରିବାକୁ ଉପଯୁକ୍ତ । ଏ ଦୃଷ୍ଟିକୋଣ ମଧ୍ୟ ଆରିଷ୍ଟୋଟ୍ଲଙ୍କ ମତବାଦାରୁ ଭିନ୍ନ ନୁହେଁ, କାହିଁକିନା,ମୂଳରୁ ତ କହିଦେଇଚନ୍ତି, ଉପଲବ୍ଧିର ବିଷୟ ଏକମାତ୍ର ଆନନ୍ଦ (ହ୍ୟାପିନେସ୍); ତାର ଶେଷତମ ସୋପାନରେ ପହଞ୍ଚିପାରେ ଏକମାତ୍ର ଫିଲଜଫର୍ । ତତ୍ତ୍ୱ ହିସାବର ଅବୈଧ ନୁହେଁ । ଏଥିକି ଯେହେତୁ ନିର୍ଦ୍ଧାରିତ ତତ୍ତ୍ୱ, ସମାଜର ଶ୍ରେଣୀବିଭାଜନ ତାର ଉପଜାତ କେବଳ । ନୈତିକ ଉତ୍କର୍ଷ 'ଉଦ୍ଦେଶ୍ୟ' ନା 'ଉପାୟ' – ସେଇ ଉପଜାତ ସ୍ଥିରକରିବ ପାର୍ଥକ୍ୟ । ଆରିଷ୍ଟୋଟ୍ଲ ନୈତିକ ଉତ୍କର୍ଷକୁ ମନେକରିଚନ୍ତି 'ଉପାୟ',ଯୋଉ ଉପାୟର 'ଉଦ୍ଦେଶ୍ୟ' ଆତ୍ମାର କୁଶଳ : The end, then, being what we wish for, the means what we deliberate and choose, actions concerning means must be according to choice and voluntary. Now the exercise of the virtues is concerned with means (113ᵇ) । କିନ୍ତୁ ସଦ୍‌ଗୁଣ (ଭର୍‌ଚିଉ), ଅନ୍ୟ ଅର୍ଥରେ , ସକଳ କର୍ମର ଉଦ୍ଦେଶ୍ୟ : Human good is activity of soul in accordance with virtue in a complete life (1098ᵃ) । ଅର୍ଥାତ୍, ମେଧାପ୍ରସୂତ ଉତ୍କର୍ଷ ହିଁ 'ଉଦ୍ଦେଶ୍ୟ'; ସଦାଚାର 'ଉପାୟ' ମାତ୍ର । ହେଲେସୁଦ୍ଧା ଭାବବାଦ କହୁଚି, ଫଳାଫଳ ଦ୍ୱାରା କର୍ମକୁ ମାପିବା ବିଷମ ପ୍ରମାଦ, କାହିଁକିନା, ଫଳାଫଳ ଭଲ ହେଉ କି ଖରାପ, କର୍ମ ନିଜ ଗୁଣରେହିଁ ଉତ୍କର୍ଷ କି ଅପକର୍ଷ । *ଗୀତା* ବି କହିଚି ଏକାକଥା । କିନ୍ତୁ ସୁଖ ଯଦି ଏକମାତ୍ର ଅଭିପ୍ରେତ, କର୍ମ (ସଦାଚାର/ ଭର୍‌ଚିଉ) ଭବସାଗର ପାରହେବା ସକାଶେ ତରଣୀ ମାତ୍ର । ଅଭିପ୍ରାୟର ଭିନ୍ନ ସଂଜ୍ଞା,ଅର୍ଥାତ୍ ସୁଖକୁ ଯଦି ସଦ୍‌ଗୁଣ ନକହୁଁ, ଅଲଗା ହେବନାହିଁ, କାହିଁକିନା, ଭର୍‌ଚିଉ ତ ଅନ୍ୟ ଜିନିଷ ( ସୁଖ)ର ବାହନ ମାତ୍ର । ଅଂଶତଃ ତେଣୁ ଆରିଷ୍ଟୋଟ୍ଲ ଏକାଳର ଭାବୁକଙ୍କ ସହିତ ଏକମତ ଯେ (୧) ଏଥିକି ଆଗେ 'ଉଦ୍ଦେଶ୍ୟ'କୁ କରିବ ସଂଜ୍ଞାବଦ୍ଧ, (୨) ଉତ୍କର୍ଷ (ଭର୍‌ଚିଉ) ହେବ ସେ ଉଦ୍ଦେଶ୍ୟକୁ ଉପଲବ୍ଧି କରିବାର 'ଉପାୟ' ।

କିନ୍ତୁ ରାଜନୀତି ସହିତ ନୀତିନିଷ୍ଠାର ସମ୍ପର୍କ ଯୋଉ ଏଥିକ୍ୟାଲ୍ ପ୍ରଶ୍ନକୁ ଜନ୍ମଦିଏ, ତା ଗୁରୁତ୍ୱ ବି ଊଣା ନୁହେଁ । ସେ ପ୍ରଶ୍ନ, ସମଗ୍ର ସହିତ ଅଂଶର ସମ୍ବନ୍ଧ । ଉପଯୁକ୍ତ କର୍ମଧାରା ଯୋଉ ଶୁଭାଶୁଭ ସକାଶେ ଉଦ୍ଦିଷ୍ଟ, ତା ଯଦି ହୁଏ ନିର୍ଦ୍ଦିଷ୍ଟ ଜନଗୋଷ୍ଠୀ କିମ୍ବା ପରିଶେଷରେ, ସମଗ୍ର ମାନବପ୍ରଜାତିର କଲ୍ୟାଣ, ସେ ମଙ୍ଗଳ ବ୍ୟକ୍ତିବିଶେଷଙ୍କ ମଙ୍ଗଳର ଯୋଗଫଳ, ନା ସାମୂହିକ ସାମାଜିକ କଲ୍ୟାଣ ? ସମଗ୍ରର ବୈଶିଷ୍ଟ୍ୟ ନା

ଅଂଶବିଶେଷର ? ଯେପରି, ମଣିଷର ସମଗ୍ର ଶରୀର; ସୁଖବୋଧ ତାର ପ୍ରତ୍ୟେକ ଅବୟବର ଅନ୍ୟତମ ଲକ୍ଷଣ; ମାତ୍ର ଆଖିର ସୁଖ କି କାନର ସୁଖ ନକହି, ବୁଝୁଛୁଁ ସାରା ଶରୀରର ସୁଖ । କାହିଁକିନା, କୌଣସି ଅବୟବ ଶରୀରରୁ ବିଚ୍ଛିନ୍ନହୋଇ ସୁଖ ଅନୁଭବ କରିପାରେନା । କୁହାଯାଇପାରେ, ସମାଜର ସଙ୍ଗଠନ ଯୋଉଠି ନିବିଡ଼ (ଯେପରି ଗ୍ରୀକ୍‌ସମାଜ), ଉତ୍କର୍ଷର ଧରଣ ସେଠି ସାମୂହିକ, ବ୍ୟକ୍ତିଗତ ନୁହେଁ । ଅର୍ଥାତ୍, ସମଗ୍ର ସହିତ ରହିଚି ଅଂଶର ସଦ୍‌ଭାବ । ଅଧିବିଦ୍ୟାର ଉପାସକ ମଧ୍ୟ କହିପାରିବେ ହେଗ୍ଲଙ୍କ ଭଳି , ଯାହା କିଛି ନିର୍ମଳ ଓ ସତ୍, ବିଶ୍ୱବ୍ରହ୍ମାଣ୍ଡର ଉପାଧି ମାତ୍ର, ନିର୍ଦ୍ଦିଷ୍ଟ ବସ୍ତୁ ବା ବ୍ୟକ୍ତିବିଶେଷର ଗୁଣାଗୁଣ ନୁହେଁ । ମାତ୍ର କହିବାକୁ ଭୁଲିବେନାହିଁ ସମ୍ଭବତଃ ଯେ, ଏ ଉପସର୍ଗ ରାଷ୍ଟ୍ର ଦେହରେ ଯେତେ ମାତ୍ରାରେ ପରିଦୃଷ୍ଟ, ପ୍ରଜା ସାଧାରଣଙ୍କ ଦେହରେ ସେତେ ନୁହେଁ । ଏ ଅନ୍ତର୍ଦୃଷ୍ଟି ମଧ୍ୟ ହେଗ୍ଲ-ଙ୍କର । ତାହେଲେ ରାଷ୍ଟ୍ରର ପ୍ରେଡିକେଟ୍ ହେବ ସେଇ ଉପାଧି ଯାହାକୁ ପ୍ରଜା ଉପରେ ଆରୋପ କରିହେବନାହିଁ; ଅଥଚ ପ୍ରଜା ହିଁ ରାଷ୍ଟ୍ରର ବିବିଧ ଅଂଶ ବା ଅଙ୍ଗ ବିଶେଷ । ଗୃହୀତ ସେଇ ଉପାଧିଗୁଡ଼ିକ ଯଥାକ୍ରମେ ଭୌଗୋଳିକ ବିସ୍ତାର, ସାର୍ବଭୌମ କ୍ଷମତା, ଲୋକବଳ ଇତ୍ୟାଦି । ଏଥିକ୍ୟାଲ୍ ଯେତେକ ପ୍ରେଡିକେଟ୍, ଏକାସାଙ୍ଗରେ ଯୁକ୍ତହେବେ ଏଇ ପ୍ରମେୟରେ, କାହିଁକିନା, ଜନ୍ମସୂତ୍ରରେ ନୁହେଁ, ଆହରଣ ସୂତ୍ରରେ କେବଳ ପ୍ରଜା ପାଇଥାଏ ଏଥିକୁ । ଜନବହୁଳ କିମ୍ବା ସୁପରିଚାଳିତ ରାଷ୍ଟ୍ରର ପ୍ରଜା ହୋଇଗଲେ ଲୋକ ଛାଏଁ ଛାଏଁ ସାର୍ବଭୌମ ହୁଏନା କି ଅନ୍ୟ ପ୍ରଜାଙ୍କଠାରୁ ବଡ଼ କି ସାନ ହୁଏନା । ଆରିଷ୍ଟୋଟ୍ଲ ନିଜେ ଅବଶ୍ୟ କହିନାହାନ୍ତି; ନ୍ୟାୟବିଚାର ବିଷୟକ ଅବବୋଧ ରହିଚି ଯଦିଓ ବ୍ୟତିକ୍ରମ । କହିଚନ୍ତି ଜର୍ମାନ୍ ଚିନ୍ତାବିଦ୍ । ଦେଖିଚନ୍ତି, ଆରିଷ୍ଟୋଟ୍ଲଙ୍କ ନୀତିସୂତ୍ରରେ ମିତ୍ରତାର ଆଲୋଚନା ସବିସ୍ତାର; ମିତ୍ରତା ଖାଲି ନୁହେଁ, ବହୁବିଧ ମାନବିକ ସମ୍ପର୍କ, ସ୍ନେହ ବା ଅନୁରାଗ ଯୋଉଠି ନୀତିନିଷ୍ଠାର ଭିତ୍ତିସ୍ତମ୍ଭ । ବନ୍ଧୁତ୍ୱ ତିଆରିହୋଇପାରେ କେବଳ ସମସ୍ୱଭାବ ଲୋକ ସାଙ୍ଗରେ; ସଂଖ୍ୟାରେ ତେଣୁ ବହୁତ ହୋଇପାରେନା, ସୁଗୁଣସମ୍ପନ୍ନ ଲୋକ ସଚରାଚର ସଂଖ୍ୟାରେ ଅନେକ ନୁହେଁ ।

ତାହେଲେ, ସୁନୀତିଦ୍ୱାରା ଶୃଙ୍ଖଳିତ ମଣିଷ ବନ୍ଧୁତ୍ୱକରିବ କାହା ସାଙ୍ଗରେ ? ସାମାଜିକ ମର୍ଯ୍ୟାଦା ଅସମାନ ହେଲେ, ବନ୍ଧୁତ୍ୱ ତିଷ୍ଠିବନାହିଁ । ପ୍ରତିପତ୍ତିରେ ଅସାମ୍ୟ ସତ୍ତ୍ୱେ ଅପର ବ୍ୟକ୍ତି ଯଦି ବିଦ୍ୟାବୁଦ୍ଧିରେ ଅପେକ୍ଷାକୃତ ଅଗ୍ରସର, ମିତ୍ରତା ହୋଇପାରେ ବାଞ୍ଛନୀୟ । କାହିଁକିନା, ତଦ୍ୱାରା 'ଭର୍‌ଟିଉ' ବଢ଼େ ସିନା କମେନା । ଆରିଷ୍ଟୋଟ୍ଲ କହିସାରିଚନ୍ତି, ଅସମ ସମ୍ପର୍କ, ଯେପରି, ପିତା-ପୁତ୍ର କିମ୍ବା ପତି-ପତ୍ନୀ, ପିତା ବା ପତିକୁ କରିବ ଅଧିକତର ଶ୍ରଦ୍ଧାର ଆସ୍ପଦ; ଈଶ୍ୱରଙ୍କ ସହିତ ମିତ୍ରସମ୍ପର୍କ ଅବଶ୍ୟ

ଅକଳ୍ପନୀୟ, କାହିଁକିନା; ସର୍ବଗୁଣାତୀତ ଅଚିନ୍ତ୍ୟ ସତ୍ତା କାହାରିକୁ ଭଲପାଇବା କି ନ ପାଇବା ଅପ୍ରାସଙ୍ଗିକ । କିନ୍ତୁ, ନିଜେ ନିଜର ବନ୍ଧୁ ହୋଇପାରେ କି ନାହିଁ ମଣିଷ ? ଆରିଷ୍ଟୋଟ୍ଲ କହିଛନ୍ତି – ହୋଇପାରେ; ଯଦି ନିଜେ ସିଏ ଭଲ ମଣିଷ; ଦୁଷ୍ଟଲୋକ ନିଜକୁ ଘୃଣାକରେ ସାଧାରଣତଃ । ଶିଷ୍ଟଲୋକ ତେବେ ନିଜକୁ ଶ୍ରଦ୍ଧାକରିବ, ମାତ୍ର ସେ ଶ୍ରଦ୍ଧା ଆତ୍ମଗୌରବ ହୋଇପାରେନା (1169ᵃ) । ଦୁଃଖଦୁର୍ଦ୍ଦଶାରେ ବନ୍ଧୁବାନ୍ଧବ ପରମ ସାନ୍ତ୍ୱନା; ମାତ୍ର ଅବଳା ରମଣୀ ଭଳି ଘଡ଼ିକିଘଡ଼ି ତାଙ୍କ ପାଖକୁ ଦୌଡ଼ିଯିବା ଆତ୍ମନିଗ୍ରହ ସାଙ୍ଗରେ ସମାନ (1117ᵇ) । ବନ୍ଧୁତ୍ୱ ତ ଖାଲି ଦୁଃଖ ଲାଘବକରିବା ସକାଶେ ଉଦ୍ଦିଷ୍ଟ ନୁହେଁ, ସୁଖସମ୍ପଦକୁ ମଧ୍ୟ ମିତ୍ର ସହିତ ଭାଗକରିଲେ ଆନନ୍ଦ ମିଳେ : No one should choose the whole world on condition of being alone, since man is a political creature and one whose nature is to live with others (1169ᵇ) । ବିବାକ ସୁପରାମର୍ଶ ଆସିଚି କିନ୍ତୁ କାଣ୍ଡଜ୍ଞାନରୁ । ଫିଲଜଫିରୁ ନୁହେଁ । ଏଥିକ୍ସ ତେଣୁ 'ଦର୍ଶନ' ପଦବାଚ୍ୟ ନୁହେଁ ।

ମିତ୍ରତା ବିଷୟକ ପରାମର୍ଶ ଏଥିକ୍ସକୁ କ୍ଷାନ୍ତକରିପାରିନାହିଁ ; ଧରିଚନ୍ତି 'ପ୍ଲେଜର୍'; ଓଡ଼ିଆରେ ପୁଲକ ବା ପରିତୋଷ । ପ୍ଲାତୋ ଉପମା ଦେଇଚନ୍ତି ତପସ୍ୟାଲବ୍ଧ ପୁଲକ ସାଙ୍ଗରେ । ଆରିଷ୍ଟୋଟ୍ଲଙ୍କ ପାଇଁ ପ୍ଲେଜର୍ କିନ୍ତୁ ସୁଖ ନୁହେଁ କି ସନ୍ତୋଷ ନୁହେଁ; ଅଥଚ ସୁଖ–ସନ୍ତୋଷ ଅଭାବରେ ପୁଲକ କି ପରିତୋଷ ସମ୍ଭବ ହୋଇପାରେନା । ତିନିରକମ ବାଟରେ ପ୍ଲେଜରକୁ ଦେଖିହେବ : (୧) ଆତ୍ମୋନ୍ନତି ପକ୍ଷରେ ପ୍ଲେଜର୍ ସହାୟକ ନୁହେଁ (୨) ପ୍ଲେଜର୍ ସାଧାରଣତଃ ଉଲ୍ଲାସ ଉତ୍ପନ୍ନ କରେ; ମାତ୍ର ଅଧିକାଂଶ କ୍ଷେତ୍ରରେ କ୍ଷତିକାରକ; (୩) ପ୍ଲେଜର୍ ପୁଲକ ହୋଇମଧ୍ୟ ସର୍ବୋତ୍ତମ ସୁଖ ନୁହେଁ । ପ୍ରଥମଟିକୁ ନାକଚ କରିଦେଇଚନ୍ତି ଏଇ ଯୁକ୍ତିରେ ଯେ ବେଦନା ଯେହେତୁ କଷ୍ଟକର, ବେଦନାର ଅନୁପସ୍ଥିତିକୁ କହୁଛୁଁ ପ୍ଲେଜର୍ । ତା ଛଡ଼ା, କୃଚ୍ଛ୍ରସାଧନ (ଯୋଗସାଧନ)ରୁ ଲବ୍ଧ ପ୍ରଶାନ୍ତି ମଧ୍ୟ ନିର୍ବୋଧର ସାନ୍ତ୍ୱନା । ବାହ୍ୟ ସ୍ୱଚ୍ଛଳତା, ହେଉପଛେ ବାହୁଲ୍ୟବର୍ଜିତ, ହୋଇପାରେ ସୁଖପ୍ରଦ; ଦୈହିକ ସୁଖବୋଧ ଭିତରେ ମଧ୍ୟ ରହିଚି ଆତ୍ମାର ତୃପ୍ତି, ଏକ ଦିବ୍ୟ–ଅନୁଭବ । ଏବଂ ସେ ଅନୁଭବ ଭିତରେ ପ୍ରଚ୍ଛନ୍ନ ରହିଚି ଆହୁରି ଉଚ୍ଚତର ଉପଲବ୍ଧିର ସମ୍ଭାବନା । ଭାଗ୍ୟହତ ନହେଲେ ସମ୍ପନ୍ନବ୍ୟକ୍ତି ସେ ପ୍ରଶାନ୍ତିରୁ ବଞ୍ଚିତହୁଏନା, କାହିଁକିନା, ଭଗବାନ୍ ସ୍ୱୟଂ ନିର୍ବିକଳ୍ପ ଅପ୍ରମତ୍ତ ସ୍ନିଗ୍ଧ ଆନନ୍ଦର ଆକର (1152-4) । **କିକୋମାକିଆନ୍ ଏଥିକ୍ସର** ଶେଷଆଡ଼କୁ ପ୍ଲେଜର୍ ପୁଣି ଫେରିଆସିଚି ବିବେଚନା ପରିଧିକୁ । ପୂର୍ବୋକ୍ତ ଅବବୋଧ ସହିତ ପ୍ରଭେଦ କିନ୍ତୁ ଯଥେଷ୍ଟ । ଯେପରି, ପ୍ଲେଜର୍ ମଧ୍ୟ ଖରାପ ହୋଇପାରେ ଓ କ୍ଷତି କରିପାରେ(1173ᵇ) । ଅର୍ଥାତ୍, ଧୀଶକ୍ତିର ଆଲୋକ ଯିଏ ପାଇଚି, କାମନାକରେନା ପ୍ଲେଜର୍ । ପ୍ଲେଜର୍‌ର ରହିବ ସେଥିପାଇଁ ପ୍ରକାରଭେଦ ।

କି ପ୍ରକାର କ୍ରିୟାକଳାପରୁ ନିର୍ଗତ ସେଇ ସୁଖବୋଧ, ସେଇ ଭେଦାଭେଦ ସ୍ଥିରକରିବ ପ୍ଲେଜର୍ ଭଲ କି ମନ୍ଦ (1175ᵇ) । ଅନେକ କଷ୍ଟ ରହିଚି, ମଣିଷ ଯାହାକୁ ସ୍ଥାନଦିଏ ସୁଖକାମନା ଉର୍ଦ୍ଧ୍ୱରେ । ଶିଶୁସୁଲଭ ନିର୍ବିକାର ଜୀବନ କଟାଇପାରିଲେ ଦିନ କଟିଯାଆନ୍ତା ନିରନ୍ତର ସୁଖାନୁଭବରେ । ସେଥିପାଇଁ ପ୍ରତ୍ୟେକ ଲୋକର ସୁଖ ଖୋଜିବାର ଉପଲକ୍ଷ୍ୟ ଓ ଧରଣ ବିବିଧ ଓ ବିଚିତ୍ର, କାହିଁକିନା, ପ୍ଲେଜର୍ ସହିତ ଯୋଡ଼ିହୋଇ ରହିଚି ଯୁକ୍ତି ବା ରିଜନ୍ ।

ଏ ଉପଲବ୍ଧିରୁ ଯୋଉ ମତବାଦ ବାହାରିଚି, ପୁରାପୁରି କାଣ୍ଡଜ୍ଞାନ ନୁହେଁ, କାହିଁକିନା, ପରିତୋଷ/ପୁଲକର ଉତ୍ସ ଯେହେତୁ ନିଷ୍ପାପ କର୍ମଧାରା, ଆରିଷ୍ଟୋଟ୍ଲଙ୍କ ବିବେଚନାରେ, ସେ ଆନନ୍ଦ ସଂମ୍ପୂର୍ଣ୍ଣ ଧ୍ୟାନାଭିମୁଖୀ । ଏବଂ ଚିନ୍ତାଭାବନା ଯେହେତୁ ସର୍ବୋତ୍ତମ କର୍ତ୍ତବ୍ୟ, ସମରବିଦ୍ୟା, ରାଜନୀତି କି ବ୍ୟାବହାରିକ କୌଣସି ଫଳିତ ବିଦ୍ୟା, କର୍ତ୍ତବ୍ୟର ହେତୁ ହୋଇପାରେନା । କାହିଁକିନା, ଏକମାତ୍ର ଧ୍ୟାନାଭିମୁଖୀ ଅର୍ନ୍ତଦୃଷ୍ଟି ଦେଇପାରେ ମନନ ସକାଶେ ଅବସର, ଏବଂ ଅବସର ହିଁ ପରିତୃଷ୍ଟିର ପ୍ରଥମ ସର୍ତ୍ତ । ବ୍ୟାବହାରିକ ସାଫଲ୍ୟ ମଧ୍ୟ ଆନନ୍ଦ ଦେଇପାରେ; ସେ ଆନନ୍ଦ କିନ୍ତୁ ମଧ୍ୟମେଧା ମଣିଷର ଅଭିଳାଷ । ମଧ୍ୟମେଧା ମଣିଷର ସୁଖଦୁଃଖ ସବୁବେଳେ ଆନୁଷଙ୍ଗିକ ଓ ଅପ୍ରଧାନ । ସର୍ବଶ୍ରେଷ୍ଠ ଯୋଉ ପୁଲକ, ଯୁକ୍ତିର ନାନାବିଧ ପ୍ରୟୋଗରୁ ଧରାପଡ଼େ ତା ବୈଚିତ୍ର୍ୟ । କାହିଁକିନା, ମୂର୍ତ୍ତିମନ୍ତ ବିଚାରଶକ୍ତିହିଁ ଯଥାର୍ଥ ମାନବ । ତେବେ, ସର୍ବକ୍ଷଣ କି ସମ୍ପୂର୍ଣ୍ଣ ଭାବାବିଷ୍ଟହୋଇ ରହିବା କୌଣସି ଲୋକ ପକ୍ଷରେ ସମ୍ଭବପର ନୁହେଁ; ଏକାଗ୍ର ଚିତ୍ତରେ ତଥାପି ଯଦି ପ୍ରବେଶକରିପାରେ ଭାବଲୋକରେ, ଚେତନା ପାଲଟିଯାଏ ସ୍ୱର୍ଗୀୟ, ହୁଏ ଦିବ୍ୟଜୀବନର ଅଂଶୀଦାର : The activity of God, which surpasses all others in blessedness, must be contemplative । କର୍ମଭେଦରେ ତେଣୁ ଫିଲଜଫର୍‌ହିଁ ଏକମାତ୍ର ଦେବୋପମ, ମଣିଷଙ୍କ ଭିତରେ ଶ୍ରେଷ୍ଠ ଓ ସୁଖୀ : He who exercises his reason and cultivates it seems to be both in the best state of mind and most dear to the gods. For if the gods have any care for human affairs, as they are thought to have, it would be reasonable both that they should delight in that which was best and most akin to them (i.e. reason) and that they should reward those who love and honour this most, as caring for the things that are dear to them and acting both rightly and nobly. And that all these attributes belong most of all to the philosopher is manifest. He, therefore,

is the dearest to the gods. And he who is that will presumably be also the happiest; so that in this way too the philosopher will more than any other be happy (1179ª) ।

ଏ ଅନୁଚ୍ଛେଦ ଆରିଷ୍ଟୋଟ୍ଲଙ୍କ ନୀତିସୂତ୍ରର ଉପସଂହାର ବସ୍ତୁତଃ; ତହିଁଉତାରୁ ଯେତେ ପ୍ୟାରାଗ୍ରାଫ୍, ସୂଚନାକରେ ଏଥିକ୍ସରୁ ରାଷ୍ଟ୍ରନୀତିକୁ ଅଭିସରଣ । ଏକ୍ଷଣି ଭାବିଦେଖିବା କଥା, ନୀତିସୂତ୍ରର ଦୋଷଗୁଣ । ଗ୍ରୀକ୍‌ଦର୍ଶନରେ, ଅନ୍ୟ ସବୁ ବିଷୟରେ ଅଗ୍ରଗତି ହୋଇଥିବା ସତ୍ତ୍ୱେ, ଏଥିକ୍ସ କୋଉହେଲେ ଅଭିନବତ୍ୱ ଅର୍ଜନକରି ପାରିନାହିଁ । ଏପରିକି, ବିଜ୍ଞାନମନସ୍କତା କହିଲେ, ଗ୍ରୀକ୍‌ଭାବୁକ ଯୋଉ ଦୃଷ୍ଟାନ୍ତ ରଖିଯାଇଚନ୍ତି, ଏଥିକ୍ସ ଭିତରେ ତାର କ୍ଷୀଣତୋୟା ଧାରା ପର୍ଯ୍ୟନ୍ତ ଦେଖିବାକୁ ମିଳେନା । ସେଥିପାଇଁ, ପ୍ରାଚୀନ ବୋଲି ଅବଜ୍ଞା ନକରି, ଏବେ ଯାହାକୁ ଏଥିକ୍ସ କହୁଛୁଁ, ତା ସହିତ ଆରିଷ୍ଟେଟ୍ଲଙ୍କ ନୀତିବୋଧକୁ ମିଳାଇ ଦେଖିବା ଦରକାର । ଜ୍ୟୋତିର୍ବିଦ୍ୟା ବିଷୟକ ଆଲୋଚନାକୁ, ଏକାଳର ଜ୍ଞାନ ସହିତ ତୁଳନାକରି ନିଃସଙ୍କୋଚରେ କହିହେବ ଆରିଷ୍ଟୋଟ୍ଲ ବିଭ୍ରାନ୍ତ; ସେଇ ଅର୍ଥରେ, ତାଙ୍କ ଏଥିକ୍ସକୁ ଭୁଲ୍ କି ଠିକ୍ କହିବା ଉଚିତ ହେବନାହିଁ । ସାଧାରଣଭାବେ, ଆରିଷ୍ଟୋଟ୍ଲ ହୁଅନ୍ତୁ କି ଅନ୍ୟ ଦାର୍ଶନିକ, ନୀତିସୂତ୍ର ପ୍ରେକ୍ଷିତରେ ଅନ୍ତତଃ ତିନିଟି ପ୍ରଶ୍ନ ଅନିବାର୍ଯ୍ୟ: (୧) ସୂତ୍ରଗୁଡ଼ିକର ଆନ୍ତର୍ସମ୍ପର୍କ ସଙ୍ଗତିପୂର୍ଣ୍ଣ କି ?; (୨) ଅଥବା, ଭାବୁକର ଅବଶିଷ୍ଟ ମତବାଦ ସହିତ ପ୍ରସ୍ତାବିତ ନୀତିସୂତ୍ରର ଗଠନଗତ ସମ୍ବନ୍ଧ ସ୍ୱଚ୍ଛ ନା ଅସ୍ପଷ୍ଟ ?; (୩) କର୍ତ୍ତବ୍ୟ-ଅକର୍ତ୍ତବ୍ୟ, ପାପ-ପୁଣ୍ୟ, ଯୁକ୍ତି-ସଂସ୍କାର ଭଳି ସମସ୍ୟା ଏବେ ବି ରହିଚି; ପୁଣି ରହିଚି ମଧ୍ୟ ନୈତିକତା ଅନୁଭବ; ପ୍ରବର୍ତ୍ତିତ ଏଥିକ୍ସ ସେଇ ସମସ୍ୟା ଗୁଡ଼ିକ ପ୍ରତି କେତେଦୂର ପ୍ରାସଙ୍ଗିକ ?

ତାହେଲେ ଆରିଷ୍ଟୋଟ୍ଲଙ୍କ ଏଥିକ୍ସରୁ ବାହାରିବ କି ରକମ ଉତ୍ତର ? ପ୍ରଥମ ଦୁଇପ୍ରଶ୍ନର ଉତ୍ତର ଯଦି ହୁଏ ନାସ୍ତିବାଚକ, ପ୍ରମାଣ କରିଦେଇହେବ ତୁମୁଳ ବିଭ୍ରାନ୍ତି । କିନ୍ତୁ ତୃତୀୟ ପ୍ରଶ୍ନଟିର ଉତ୍ତର ଯଦି ହୁଏ ଫେର୍ ନାସ୍ତିବାଚକ, ବିଭ୍ରାନ୍ତି ଅଭିଯୋଗ ବଞ୍ଚିବନାହିଁ । କାହିଁକିନା, ନିଜ ବେଳକାଳକୁ ଚାହିଁ ଉଚିତ କଥା କହିଚନ୍ତି ହୁଏତ୍ ଆଜି ମନକୁ ନପାଇଲେ, ଆରିଷ୍ଟୋଟ୍ଲଙ୍କୁ ଦୋଷଦେବା ଅନ୍ୟାୟ ।

*ନିକୋମାକିଆନ୍* ଏଥିକ୍ସ ଉପସ୍ଥାପନ କରିଚି ନୀତିନିଷ୍ଠାର ଯୋଉ ତତ୍ତ୍ୱ ଉପସ୍ଥାପିତ, ଉପର୍ଯ୍ୟୁକ୍ତ ତିନିଟି ପ୍ରଶ୍ନ ପ୍ରେକ୍ଷିତରେ ତାର ସମୀକ୍ଷା କରାଯାଉ । ବହିରେ ବର୍ଣ୍ଣିତ ଅଳ୍ପ କିଛି ଗୌଣ ପ୍ରସଙ୍ଗକୁ ବାଦ୍‌ଦେଲେ ବଡ଼ କୋଉ ବୈପରୀତ୍ୟ ଆଖିରେ ପଡ଼ିବନାହିଁ । ମଣିଷର ମଙ୍ଗଳ ଆତ୍ମତୁଷ୍ଟିରେ, ଏବଂ ଆତ୍ମତୁଷ୍ଟି ଆସେ ଜୀବନଚର୍ଯ୍ୟାର

ସାଫଲ୍ୟରୁ – ଏ ଉପଲବ୍ଧି ସହିତ କଳହର ଅବକାଶ ନାହିଁ । ଧୀଶକ୍ତିର ଧ୍ୟାନାଭିମୁଖୀ ଅନୁଶୀଳନକୁ ଶ୍ରେଷ୍ଠକର୍ମ କହିଚନ୍ତି ଆରିଷ୍ଟୋଟ୍ଲ, କର୍ମର ଆଦର୍ଶ କିନ୍ତୁ 'ଅତି'ବର୍ଜନ । ଅର୍ଥାତ୍, ଦୁଇମେରୁ ମଧ୍ୟବର୍ତ୍ତୀ ନିରପେକ୍ଷତା । ଉପସ୍ଥାପନ କରିଚନ୍ତି ଦକ୍ଷତା ସହିତ, କୃତାର୍ଥ ହୋଇଚନ୍ତି ବୋଲି କିନ୍ତୁ କହିହେବନାହିଁ । ଅତିବର୍ଜନ ନୀତି କେବଳ ବ୍ୟାବହାରିକ କାର୍ଯ୍ୟକଳାପ ପ୍ରତି ପ୍ରଯୋଜ୍ୟ ବୋଲି, ମେଧାପ୍ରୟୋଗକୁ ମଧ୍ୟ ଅତିବର୍ଜନରୁ ଅଲଗା ରଖିହେବ । ହେଲେସୁଦ୍ଧା, ବ୍ୟାବହାରିକ ଜୀବନରେ ମେଧାର ଭୂମିକା ନଗଣ୍ୟ । ସେହିପରି, ବିଧାୟକର ଭୂମିକା । ଆରିଷ୍ଟୋଟ୍ଲଙ୍କ ବିଧାୟକ ପିଲାଙ୍କୁ ଏଭଳି କ୍ରିୟାକଳାପରେ ଅଭ୍ୟସ୍ତକରିବ ଯେ ବଡ଼ହୋଇ ସ୍ୱତଃସ୍ଫୂର୍ତ୍ତ ଭାବରେ ଭଲକାମ କରିବେ, ଆଇନ୍‌ର କଟକଣା କି ବାଧ୍ୟବାଧକତା ଦରକାର ପଡ଼ିବନାହିଁ । ବିଧାୟକ ତ ରାଜନୀତିର ଲୋକ; ପିଲାଙ୍କୁ ଏଭଳି କଥା ମଧ୍ୟ ଶିଖାଇପାରେ, ଆଇନ୍–ଅମାନ୍ୟକୁ ଯା ପ୍ରତିପନ୍ନକରିବ ବୈଧ ଓ ନୈତିକ । ବିଧାୟକକୁ ସେ କାମରୁ ନିବର୍ତ୍ତାଇବାକୁ ହେଲେ,ପ୍ଲାଟୋଙ୍କ ଅଭିଭାବକ ଭଳି, ତାକୁ ହେବାକୁ ହେବ ଫିଲ୍‌ଜଫର-କିଙ୍ଗ୍ । ଫିଲ୍‌ଜଫର-କିଙ୍ଗ୍ ଅଭାବରେ ଭର୍‌ଟିଉର ସଂଜ୍ଞା ବଦଳିଯିବ ଯେତିକି, ପ୍ଲେଜର୍–ର ସଂଜ୍ଞା ତତୋଧିକ । ସମସ୍ୟା ତେଣୁ ଏଥିକ୍ସର ନୁହେଁ, ରାଜନୀତିର । କିନ୍ତୁ ଆରିଷ୍ଟୋଟ୍ଲଙ୍କ ଏଥିକ୍ସ, ତାଙ୍କ ମେଟାଫିଜିକ୍ସ–ର ପରିପୂରକ । ପରିପୂରକ ବୋଲି, ଏଥିକ୍ସ ଏତେ ଆଶାବାଦୀ । ସେ ଆଶାବାଦ ଆସୁଚି ଏଇ ବିଶ୍ୱାସରୁ ଯେ ବିଶ୍ୱବ୍ରହ୍ମାଣ୍ଡର ଗତିଶୀଳତା ପଛରେ ସକ୍ରିୟ ଏକ ପରମକାରଣ । ସତେ ଯେମିତି ବିଜ୍ଞାନର 'ସତ୍ୟ' ! ଅନ୍ୟ ଶବ୍ଦରେ, ଅଦୃଶ୍ୟ ଏକ ଉଦ୍ଦେଶ୍ୟ ଚାଳିତକରୁଚି ପୃଥିବୀକୁ; କରୁଚି ବୋଲି, ସଦ୍‌କର୍ମ ବୋଲି ବିବେଚିତହେବ ସେଇ କାମ, ଯା ପରମକାରଣପ୍ରବଣତାର ଅନୁକୂଳ । ପରିବର୍ତ୍ତନ ଯା ଘଟୁଚି, 'ଫର୍ମ'ଗୁଡ଼ିକର ସାଙ୍ଗଠନିକ ଅଦଳବଦଳ କେବଳ । ଅଦଳବଦଳ ଅବଶ୍ୟ ଅଗ୍ରାଭିମୁଖୀ । ମେଟାଫିଜିକ୍ସ ହେଉ କି ଏଥିକ୍ସ, ଏଗୁଡ଼ାକ ଫିଲଜଫି ନୁହେଁ ଜମାରୁ, କାହିଁକିନା, ବାସ୍ତବରେ ଯା ଘଟୁଚି କି ଘଟେ, ଫଳିତ ସେଇ କ୍ରିୟାକଳାପର ପର୍ଯ୍ୟବେକ୍ଷଣରୁ ବାହାରିଚି ଏଇ ନିଷ୍ପତ୍ତି । ସେଥିପାଇଁ, ମେଟାଫିଜିକ୍ସରୁ ସ୍ୱାଧୀନ ହେଲେସୁଦ୍ଧା, ଏଥିକ୍ସ–ର ଅଧିକ କିଛି ବକ୍ତବ୍ୟ ନାହିଁ ।

ସଦାଚାର ସମ୍ବନ୍ଧରେ ଆରିଷ୍ଟୋଟ୍ଲଙ୍କ ରୁଚି ପ୍ଲାଟୋଙ୍କ ରୁଚି ପରି ନାନ୍ଦନିକ ନୁହେଁ । ଏକାଳର ପରିଭାଷାରେ 'ବୁର୍ଜୋୟା'; କାହିଁକିନା, ଆରିଷ୍ଟୋଟ୍ଲଙ୍କ ରୁଚିକୁ ଆମୂଳ ରଞ୍ଜିତକରିଚି ସମାନତା ପ୍ରତି ଅବିଶ୍ୱାସ । ଯେପରି, ଦାସପ୍ରଥା ତାଙ୍କ ଦୃଷ୍ଟିରେ ନିନ୍ଦନୀୟ ନୁହେଁ; ବରଂ ସ୍ତ୍ରୀ ଓ ପିଲାଛୁଆଙ୍କ ଉପରେ ସ୍ୱାମୀ ଓ ପିତାର ଦୌରାତ୍ମ୍ୟ ସଦାଚାରର ନାମାନ୍ତର । ସର୍ବୋପରି, ଯେତେ ଯାହା ଉତ୍କୃଷ୍ଟ ଓ ଆରାଧ୍ୟ, ତା ଉପରେ କେବଳ

ମୁଷ୍ଟିମେୟଙ୍କ ଏକାଧିକାର । ସେମାନେ କୁଆଡ଼େ 'ମହାନୁଭବ' ଓ 'ଫିଲଜଫର୍' । ସମାଜର ଅଧିକାଂଶ ମଣିଷ ତେଣୁ କେହି କର୍ତ୍ତା ନୁହେଁ, ବିବାକ ପ୍ରେଡିକେଟ୍ । ଏ ପ୍ରେଡିକେଟ୍ ପୁଣି ଅଙ୍ଗୁଳିମେୟ ମୁନିଋଷି କି ଏକାଙ୍ଗଚକ୍ରବର୍ତ୍ତୀ ଉତ୍ପାଦନ ସକାଶେ ସାଧନ ମାତ୍ର । ବହୁପରେ କାଣ୍ଟ କହିଚନ୍ତି, ବ୍ୟକ୍ତିମଣିଷହିଁ ନିଜେ ନିଜର ସୀମାନ୍ତ; ଖ୍ରୀଷ୍ଟଧର୍ମ ମଧ୍ୟ ଗ୍ରହଣକରିଚି ସେଇ ଜୀବନଦୃଷ୍ଟି । କିନ୍ତୁ ଦି'ଜଣ ଲୋକଙ୍କ ସ୍ୱାର୍ଥ ହୋଇପାରେ ଦୁଇରକମ; ସଂଘାତ ବି ଘଟିପାରେ ସ୍ୱାର୍ଥ ସହିତ ସ୍ୱାର୍ଥର । ହାରିଯିବ ତେବେ କିଏ ? ବତାଇଦେବା କଥା ଏଥିକ୍ସ । ସମାଧାନର ସୂତ୍ର କିନ୍ତୁ ବ୍ୟକ୍ତିକେନ୍ଦ୍ରିକ ହେଲେ ଚଳିବନାହିଁ; ଗୋଷ୍ଠୀ ଶ୍ରେଣୀ ସମାଜ — ସବୁଯାକ ଆସିଯିବେ ବିଚାର ପରିଧିକୁ । ସୂତ୍ର ତେଣୁ 'ଜସ୍ଟିସ୍' ବା ନ୍ୟାୟବିଚାର । ହିତବାଦୀ ବେନ୍ଥାମ୍, ଜସ୍ଟିସ୍-ର ଗୂଢ଼ ଅର୍ଥକୁ କହିଚନ୍ତି 'ଇକୋଆଲିଟି' ବା ସାମ୍ୟ, ଆଇନ୍ ଦୃଷ୍ଟିରେ ଯେମିତି ନାଗରିକ ସମାନତା । କିନ୍ତୁ ହିତବାଦୀଙ୍କ ଲକ୍ଷ୍ୟ, ସର୍ବାଧିକ ଲୋକଙ୍କ ସର୍ବାଧିକ ମଙ୍ଗଳ । ଦି'ଜଣ ଲୋକଙ୍କ ମଧ୍ୟରେ ସ୍ୱାର୍ଥର ସଂଘାତ ଘଟିଲେ, ସଠିକ ବିଚାର ହେବ : ସର୍ବାଧିକ ପରିତୋଷ କି ଭାବରେ ସମ୍ଭବପର ? ସର୍ବାଧିକ ପରିତୋଷରେ ବାଦୀ-ପ୍ରତିବାଦୀଙ୍କ ପାରସ୍ପରିକ ଅଂଶର ଅନୁପାତ ଅବା କିଭଳି ହୋଇପାରେ, କିମ୍ବା କୋଉ ଜଣକର ହେବ ଅପେକ୍ଷାକୃତ ଅଧିକ ଉପକାର, ବିଚାର୍ଯ୍ୟ ନୁହେଁ ଜମାରୁ । ଭଲଲୋକଟାକୁ ଯଦି ବେଶି ଦିଆଯାଏ, ଏକମାତ୍ର କାରଣ,ସଦ୍‌ଗୁଣକୁ ପୁରସ୍କାର ଓ ଦୁର୍ଗୁଣକୁ ତିରସ୍କାର । ତେବେଯାଇ ସର୍ବସାଧାରଣ ପରିତୋଷ ହେବ ସର୍ବାଧିକ । ଏଥିକ୍ସ ତେଣୁ କାରଣ ନୁହେଁ, କାହିଁକିନା, ଜସ୍ଟିସ୍ ଦେଖିବ ପରିତୋଷର ମୋଟ୍ ପରିମାଣ; ଭଲର ଅଂଶ ଅଧିକ କି ମନ୍ଦର ଅଂଶ ଊଣା, ଓଜନବାଜନ ଜସ୍ଟିସ୍-ର କାମ ନୁହେଁ । ମାତ୍ର ଗ୍ରୀକ୍ ଦାର୍ଶନିକ, ଏପରିକି ପ୍ଲାତୋ କି ଆରିଷ୍ଟୋଟ୍ଲ, ଏ ବିଚାରକୁ କହିବେନାହିଁ ଜସ୍ଟିସ୍ । ଯାହାକୁ ଯସ୍ଟିସ୍ କହିବେ, ଏକ୍ଷଣି ମଧ୍ୟ ତା ପ୍ରତାପ ଊଣା ନୁହେଁ । ନ୍ୟାୟ-ଅନ୍ୟାୟ ବୋଧ ଯେହେତୁ ମୂଳତଃ ଧର୍ମବିଶ୍ୱାସର ଅନୁବର୍ତ୍ତୀ, ଆରିଷ୍ଟୋଟ୍ଲ ଭାବିଚନ୍ତି, ଜଗତରେ ଯେତେ ଯାହା ବିଦ୍ୟମାନ, ପ୍ରତ୍ୟେକର ଅଛି ନିର୍ଦ୍ଦିଷ୍ଟ ପରିଧି, ଏବଂ ସେ ପରିଧିକୁ ଲଙ୍ଘନ ହିଁ 'ଅନ୍ୟାୟ'; ଅର୍ଥାତ୍ ଅପରାଧ । ସ୍ୱଭାବବଶତଃ କି ଚାରିତ୍ରିକ ଉତ୍କର୍ଷ ବଶତଃ କିଛିଲୋକଙ୍କ ପରିଧି ଅବଶିଷ୍ଟ ଅଧିକାରକ୍ଷେତ୍ର ତୁଳନାରେ ଅଧିକ ପ୍ରଶସ୍ତ; ଅଧିକତର ପରିତୋଷ ତେଣୁ ସେମାନଙ୍କ ନ୍ୟାଯ୍ୟ ପ୍ରାପ୍ୟ । ଏଇ ନୀତିକୁ ଗ୍ରହଣକରିଚନ୍ତି ଆରିଷ୍ଟୋଟ୍ଲ । ତାଙ୍କଠୁଁ ପୁରାତନ ଯେତେ ଭାବୁକ, ତାଙ୍କ ଚିନ୍ତାଧାରାରେ ଆଦିମ ଧର୍ମବିଶ୍ୱାସର ପ୍ରଭାବ ସୁସ୍ପଷ୍ଟ; ଆରିଷ୍ଟୋଟ୍ଲଙ୍କ ରଚନାରେ ସେ ଚିହ୍ନ ଦିଶୁନାହିଁ ଯଦିଓ ।

ଦର୍ଶନବିଦ୍ୟାର ଚରିତ୍ର–ଲକ୍ଷଣ ସଦାଶୟ; ପରାର୍ଥବାଦ କିନ୍ତୁ ଆରିଷ୍ଟୋଟ୍ଲଙ୍କ ବିଚାରରେ ସମୂଳ ଅନୁପସ୍ଥିତ । ମଣିଷର ଦୁଃଖଯାତନା ପ୍ରତ୍ୟକ୍ଷକରିଥିଲେ ନିଶ୍ଚୟ; କରୁଣା କିନ୍ତୁ ଉଦ୍ରେକ ହୋଇନାହିଁ ଚେତନାରେ, କାହିଁକିନା, ମେଧାବୀ ବିଶ୍ଲେଷଣରେ ଯନ୍ତ୍ରଣା କି ଅପମାନ ଆଧ୍ୟାତ୍ମିକ ଅମଙ୍ଗଳ । ଅଶୁଭ ଆରିଷ୍ଟୋଟ୍ଲଙ୍କୁ ଅସନ୍ତୁଷ୍ଟ କରିବା ସ୍ୱାଭାବିକ; କିନ୍ତୁ କରିନାହିଁ; କାହିଁକିନା କଷ୍ଟପାଉଥିବା ଲୋକଟା ତାଙ୍କ ଆତ୍ମୀୟ କି ପରିଜନ ନୁହେଁ । ମୋଟ୍ ଉପରେ, ଆରିଷ୍ଟୋଟ୍ଲଙ୍କ ଏଥିକ୍ସରେ ଭାବାବେଗର ଏକାନ୍ତ ଦୈନ୍ୟ ପୂର୍ବବର୍ତ୍ତୀ ଦାର୍ଶନିକଙ୍କ ଲେଖାରେ ଏକେବାରେ ବିରଳ । ପରସ୍ପର ପ୍ରତି ଯୋଉ ଭାବାବେଗ ଦ୍ୱାରା ଆକର୍ଷିତହୁଏ ମଣିଷ, ପ୍ରେମ ଘୃଣା ରୋଷ ଦୁଃଖ ପ୍ରଣୟ କି ଆସକ୍ତି ଭଳି ତା ଗଭୀର; କିନ୍ତୁ ମଣିଷର କ୍ରିୟାକଳାପ ସମ୍ବନ୍ଧରେ ଆରିଷ୍ଟୋଟ୍ଲ ଯୋଉ ଭବିଷ୍ୟଦ୍ କଳ୍ପନାକରିଚନ୍ତି, ଗଭୀରତା ତ ସେଥିରେ ନାହିଁ, ଦୃଷ୍ଟିଭଙ୍ଗୀ ମଧ୍ୟ ଦୃଷ୍ଟିକଟୁ । ଏପରିକି, ବନ୍ଧୁତ୍ୱ ବିଷୟରେ କଥାଗୁଡ଼ାକ ବି ରକ୍ତହୀନ ଓ ଶୀତଳ । ପ୍ରଣୟ କ୍ରୋଧ ଶୋକ ଘୃଣା କି କାମେଚ୍ଛା, ଯା ମତିଭ୍ରମ ଘଟାଇପାରେ ସହଜରେ, ଜୀବନରେ ହୁଏତ ପାଇନାହାନ୍ତି ଆରିଷ୍ଟୋଟ୍ଲ; ନୈତିକତାର ନିଗୂଢ଼ ବିଭାବଗୁଡ଼ିକ ତେଣୁ ରହିଯାଇଚି ଅଭିଜ୍ଞତାରେ ଅପରିଜ୍ଞାତ । ଏତଦ୍‌ଭିନ୍ନ, ଧର୍ମବିଶ୍ୱାସର ପ୍ରାବଲ୍ୟ, ଜୀବନର ବ୍ୟାପକ ଏକ କ୍ଷେତ୍ରକୁ ଯା କରିରଖିଚି ଆଚ୍ଛନ୍ନ, ନଜର ଏଡ଼ାଇଯାଇଚି ଏକେବାରେ । ନଜରରେ ପଡ଼ିଚନ୍ତି କେବଳ ସମ୍ପନ୍ନ ଅଭିଜାତ, ଚାରିପଟର ପୃଥିବୀ ପ୍ରତି ଯିଏ ନିସ୍ପୃହ । ମୁଣ୍ଡରେ ପଶିଚି ଭୂତ କି ଭଗବାନ୍, ଦାରିଦ୍ର୍ୟ କି ଦୁର୍ଦ୍ଦଶା କରିଦେଇଚି ଦୁର୍ଦ୍ଦାନ୍ତ – ଜ୍ଞାନମଣ୍ଡଳ ସୀମାନ୍ତରେ ରହିଯାଇଚନ୍ତି ସେମାନେ ଅବଜ୍ଞାତ ।

*   *   *   *   *

ମାତ୍ର, ବୃତ୍ତି ତାଡ଼ନାରେ ଭାଷ୍ୟ ଲେଖାହୋଇଚି କାଣ୍ଡିକାଣ୍ଡି; ଏବଂ ଚଲାକ ଲୋକ ଯା ଲେଖିଚନ୍ତି, ସବୁଗୁଡ଼ାକ ପକ୍ଷପାତ ଓ ନିରପେକ୍ଷତା ମଧ୍ୟବର୍ତ୍ତୀ, ସାପ ମରିବନାହିଁ କି ବାଡ଼ି ଭାଙ୍ଗିବନାହିଁ । ଯେପରି, *eudaimonia* ମାନେ ପରିତୋଷ (ହ୍ୟାପିନେସ୍) ନୁହେଁ, ହ୍ୟାପିନେସ୍‌ର ଗ୍ରୀକ୍ *makarios* । ତେଣୁ ଆରିଷ୍ଟୋଟ୍ଲ ଯୋଉ ନୀତିସୂତ୍ର ପ୍ରବର୍ତ୍ତନକରିଚନ୍ତି, ଏକମାତ୍ର ଲକ୍ଷ୍ୟ ନିଜ ଛାତ୍ରମାନଙ୍କୁ ଜୀବନରେ ସାଫଲ୍ୟଦାନ; ଏବଂ ସାଫଲ୍ୟ ସ୍ୱୀକଲେ ସୁଦ୍ଧା, ସୁଖ ଓ ସାଫଲ୍ୟ ଏକାକଥା ନୁହେଁ । ପୁଣି, ଅଧ୍ୟବସାୟ ବଳରେ ଦେବୋପମହେବା ମଧ୍ୟ ଏକ ବିମୂର୍ତ୍ତ ଧାରଣା । ପ୍ଲାଟୋ କହିଥିଲେ ଆଇଡିଆ, ଭଗବାନ୍ ରୂପକ ଆଇଡିଆ ଜଗତର ଶ୍ରେଷ୍ଠ ସମ୍ପଦ । ଆରିଷ୍ଟୋଟ୍ଲ ମଧ୍ୟ ଜାଣନ୍ତି, ମଣିଷ ଦେବତା ହୋଇପାରେନା; କିନ୍ତୁ ଦେବୋପମ ଗୁଣାବଳୀ ଅର୍ଜନକରିବାକୁ ଯତ୍ନକରିପାରେ । ଅର୍ଥାତ୍, ଭଗବାନ୍ ରୂପକ ଆଇଡିଆକୁ ଉପଲବ୍ଧି କରିପାରେ । ଏବଂ

ସେଥିରୁ ଆସିବ ଚରମ ସାଫଲ୍ୟର ଧାରଣା । ଅନ୍ୟ ଶବ୍ଦରେ, ଭାରତରେ ଯେମିତି ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ, ମୋକ୍ଷ), ଆରିଷ୍ଟୋଟ୍‌ଲ୍ ସେମିତି କଳ୍ପନାକରିଚନ୍ତି ଏଥିକୁ । ମାତ୍ର ବ୍ୟକ୍ତିମନୁଷ୍ୟର ନିହିତଶକ୍ତି ଅନୁସାରେ ସାଫଲ୍ୟର ପରିମାଣ ହୋଇପାରେ ଅପେକ୍ଷାକୃତ କମ୍ କିମ୍ବା ବେଶି । ଏବଂ ମଣିଷ ଯେହେତୁ ନଶ୍ୱର,କାମନାକରିବ ସାଧାରଣତଃ ନଶ୍ୱର ବସ୍ତୁ; କିନ୍ତୁ ଯୁକ୍ତିର ପରିମାଣ ହୁଏ ଯଦି ସର୍ବାଧିକ, ମନ ଯିବ ଶାଶ୍ୱତ ବସ୍ତୁଆଡ଼କୁ, କାହିଁକିନା, ଯୁକ୍ତି ଏକ ଦିବ୍ୟ ଉପସର୍ଗ; ସେଇ ଉପସର୍ଗ ହିଁ ଜୀବନକୁ କରେ ମେଧାଚାଳିତ । ଏବଂ ମେଧାକର୍ଷଣର ଆବଶ୍ୟକ ସର୍ତ୍ତ ଶାରୀରିକ ପରିଶ୍ରମରୁ ଅବ୍ୟାହତି; ଆରିଷ୍ଟୋଟ୍‌ଲ୍‌ଙ୍କ ଭାଷାରେ, ବୁଦ୍ଧିଜୀବୀର ଅବସର । ଦେବଦେବୀଙ୍କ ସକାଶେ ନୀତି ବା ନୈତିକତା ଜରୁରୀ ନୁହେଁ, ଭର୍ଚ୍ଚିଉ ଅର୍ଜ୍ଜନ ଦେବତାଙ୍କ ସକାଶେ ଅନାବଶ୍ୟକ; ଧ୍ୟାନରୁ ହିଁ ପାଆନ୍ତି ସେମାନେ ଭୂମାନନ୍ଦ । ଦେବୋପମ ହେବାକୁ ହେଲେ, ମଣିଷ ଧ୍ୟାନାଭିମୁଖୀ କାମଦାମରେ ତେଣୁ ନିଜକୁ ନିୟୋଜିତ କରିରଖିବ । ତା ହେଲେଯାଇ, ରିଆଲିଟି ବା ସତ୍ୟ ହୋଇପାରେ ଅଧିଗମ୍ୟ । ଅର୍ଥାତ୍, ଦିବ୍ୟଜୀବନ ମର୍ତ୍ତ୍ୟରେ କରିପାରେ ଅବତରଣ, ଅରବିନ୍ଦ ଯେମିତି ଭାବିଚନ୍ତି ଅତିମାନସ ଉପରୁ ଓହ୍ଲାଇବ ଧରାତଳକୁ । କିମ୍ବା ବ୍ୟପିଷ୍ଟ ଜନ୍ ଭାବିଚନ୍ତି, ସ୍ୱର୍ଗରାଜ୍ୟର ମର୍ତ୍ତ୍ୟାବରଣ ଅତି ଆସନ୍ନ ।

ଆଉ ଏକ ଆ୍ୟାକାଡେମିକ୍ ଭାଷ୍ୟ ହେଲା, ପରଲୋକରେ ବିଶ୍ୱାସକରୁଁ କି ନକରୁଁ, ନୈତିକତା ସକାଶେ ଯଦି ଧର୍ମୀୟ ଅନୁଶାସନ ଅନାବଶ୍ୟକ, ଆଦର୍ଶ-ଜୀବନ କହିଲେ ଯିଏ ଯେମିତି ବୁଝିବ, ତଦନୁସାରେ ଅନ୍ତରରୁ ଖୋଜି ବାହାରକରିବ ଜୀବନଯାପନର ବିଧିବିଧାନ । ପୁରଷ୍କାର ପ୍ରତ୍ୟାଶା ସହିତ କାଣ୍ଟ ତାକୁ ଯୋଡ଼ିବାକୁ ଚାହିଁନାହାନ୍ତି । ଧର୍ମ ପ୍ରତି ଆସ୍ଥା ନଥିଲା ବୋଲି ନୁହେଁ, ନୈତିକତା ସକାଶେ ଚାହିଁଚନ୍ତି ସ୍ୱାଧୀନ ସ୍ୱନିର୍ଭର ଭିତ୍ତି, କାହିଁକିନା, ମଣିଷ ତାଙ୍କ ଦୃଷ୍ଟିରେ ଅନନ୍ୟ ଏକ ମୁକ୍ତ ସତ୍ତା । ସେଥିପାଇଁ ସୁଖସନ୍ତୋଷ କି ସଫଳତା-ବିଫଳତା ସାଙ୍ଗରେ ନୈତିକତାର ଯୋଗାଯୋଗକୁ କାଟିପକାଇଚନ୍ତି ସମୂଳ । କାହିଁକିନା, ମୁକ୍ତ ଯୋଉ ସତ୍ତା, କାମନା ବା ଫଳପ୍ରତ୍ୟାଶା ତାକୁ ବାନ୍ଧିପକାଇ ପାରେନା । ନୈତିକତାର ଏକମାତ୍ର ଯୋଗସୂତ୍ର ତେଣୁ ଯୁକ୍ତି । ଯା ଯୁକ୍ତିଯୁକ୍ତ, ତା ଯଥାର୍ଥ । ଅର୍ଥାତ୍, ବିବେକାନୁମୋଦିତ । କେବଳ ଏଇଭଳି ନୈତିକତା ଭିତରଦେଇ ମଣିଷ ଉପଲବ୍ଧି କରିପାରେ ବନ୍ଧନମୋଚନ । ଆରିଷ୍ଟୋଟ୍‌ଲ୍ କିନ୍ତୁ ଏ ପ୍ରତ୍ୟୟକୁ ଭାବିବେ ଆମୂଳ ଅନୈତିକ, କାହିଁକିନା, ସଫଳ ଜୀବନ କହିଲେ ସଠିକ୍ କଣ ବୁଝନ୍ତି, ସ୍ପଷ୍ଟକରିନାହାନ୍ତି କାଣ୍ଟ । ଆରିଷ୍ଟୋଟ୍‌ଲ୍‌ଙ୍କ ଦୃଷ୍ଟିରେ ମଣିଷ, ସ୍ୱଭାବତଃ, ରାଜନୀତିକ ଜୀବ; ଏବଂ ସେଥିପାଇଁ, ଜୀବନରେ ଯାହାକିଛି ଶ୍ରେୟ, ସମାଜଭିତରେ ଥାଇ ଅର୍ଜ୍ଜନକରିବାକୁ ତତ୍ପର । ନିର୍ଦ୍ଦିଷ୍ଟ କଣ କାମ୍ୟ, ବିବେଚନା କରିବାକୁ

ପଡ଼ିବ, ତେଣୁ, ସମାଜ ଭିତରେ ମଣିଷକୁ ଅବସ୍ଥାପିତକରି । ମାନବସତ୍ତାକୁ ବିମୂର୍ତ୍ତ କଳ୍ପନାକରିବା ଯେହେତୁ ବିଚାରବିଭ୍ରାଟ, ପରିକଳ୍ପିତ ନୀତିନିଷ୍ଠ ଜୀବନର ରହିବ ନିର୍ଦ୍ଦିଷ୍ଟ ପ୍ରେକ୍ଷିତ; ପ୍ରେକ୍ଷିତ ନଥିଲେ ଆଦର୍ଶକୁ ଉପଲବ୍ଧିକରିବାକୁ ସୁଯୋଗ ଓ ପରିସର ଆସିବ ଫେର୍ କୁଆଡୁ ? ସେଥିପାଇଁ, କିଭଳି ଜୀବନକୁ କୁହାଯିବ ମହତ୍, ସେ ପ୍ରଶ୍ନର ଉତ୍ତର ଦେଇପାରେ ଏକମାତ୍ର ରାଷ୍ଟ୍ରବିଜ୍ଞାନ (1094ᵃ)। ରାଷ୍ଟ୍ରବିଜ୍ଞାନର ଲକ୍ଷ୍ୟ, ଆରିଷ୍ଟୋଟ୍ଲଙ୍କ ମତରେ, ଏପରି କ୍ରିୟାକଳାପ ଯଦ୍ଦ୍ୱାରା ସର୍ବାଧିକ ସାମାଜିକ ମଙ୍ଗଳ ସାଧନସାଧ (1095ᵃ) । ତାକୁହିଁ କୁହାଯିବ *eudaimonia* । ଅର୍ଥାତ୍, ମଙ୍ଗଳ/ଉତ୍କର୍ଷ/ପରିତୋଷ/ ସାଫଲ୍ୟ ବୋଲି ଯା ସଚରାଚର ଗୃହୀତ, ତାହାହିଁ ଏଥିକ୍ସର ଅଭୀଷ୍ଟ । ଆରିଷ୍ଟୋଟ୍ଲ ତେଣୁ ଶିଷ୍ୟବର୍ଗଙ୍କୁ କହିବାକୁ ଚାହିଁଚନ୍ତି, ଧ୍ୟାନାଭିମୁଖୀ ଚିନ୍ତାଭାବନା ବଳରେ ସ୍ଥିରକରିବାକୁ, ସମାଜରେ ସ୍ଥିତରହି ଏଇ ଅଭୀଷ୍ଟରେ ପହଞ୍ଚିହେବ କେମିତି । ପହଞ୍ଚିହେବ, କର୍ମଧାରା ଉପରେ ନୈତିକତା ଆରୋପକରି । ଧ୍ୟାନାଭିମୁଖୀ ଚିନ୍ତାଭାବନା ଯୋଉ ଉପଲବ୍ଧିକୁ ଜାଗ୍ରତକରେ, ତାର ମୂଲ୍ୟ/ତାତ୍ପର୍ଯ୍ୟ ଅବଶ୍ୟ ଫଳିତ/ବ୍ୟାବହାରିକ; ବିମୂର୍ତ୍ତ ନୁହେଁ,

> If there is some end of things we do, which we desire for its own sake (everything else being desired for the sake of this)......clearly this must be the good and the chief good. Will not the knowledge of it, then have a great influence on life? Shall we not, like archers who, have a mark to aim at, be more likely to hit upon what we should ? If so, we must try, in outline atleast, to determine what it is... (1094a 18-25).

ଅର୍ଥାତ୍, କିଛିନାକିଛି ହାସଲକରିବାକୁ ଉଦ୍ୟମହିଁ ଆରିଷ୍ଟୋଟ୍ଲଙ୍କ ବିବେଚନାରେ ଏଥିକ୍ସ । ସୁଖଦୁଃଖ ଉନ୍ନତି-ଅବନତି ଉତ୍କର୍ଷ-ଅପକର୍ଷ ଯେହେତୁ ଯଥାପ୍ରାପ୍ତ ଅଭୀଷ୍ଟ, ଅଭୀଷ୍ଟସିଦ୍ଧି ସକାଶେ ଯୋଉ ବାଟ ବତାଇଚନ୍ତି ଗୁରୁ, ଛାତ୍ରପାଇଁ ତାହାହିଁ ନୈତିକତା । ଛାତ୍ର ନିଜେ ବାଛିନାହିଁ ଉଦ୍ଦେଶ୍ୟ କି ଉପାୟ । ଅଥଚ କାଣ୍ଟ କହିଚନ୍ତି, ମଣିଷ ସ୍ୱୟମ୍ଭର ନିମିତ୍ତ, ଫ୍ରି ଏଜେଣ୍ଟ । କିନ୍ତୁ ଆରିଷ୍ଟୋଟ୍ଲଙ୍କ ସୁଖସନ୍ତୋଷ କୁଆଡ଼େ କାମନାର ପରିତୃପ୍ତି ଉପରେ ନିର୍ଭରକରେନା । ମଣିଷର ରହିଚି ଅନ୍ତର୍ଗୂଢ଼ ଏକ ସ୍ୱଭାବ, ସେଇ ସ୍ୱଭାବ ଦେଇଚି ତାକୁ ଅପରାପର ପ୍ରାଣୀଙ୍କ ଉର୍ଦ୍ଧ୍ୱରେ ଅବସ୍ଥାନ । ସେଇ ସ୍ୱଭାବକୁ ଚରିତାର୍ଥକରିବା ତା ଜୀବନର ଉଦ୍ଦେଶ୍ୟ । ଏବଂ ସେଇ ବ୍ରତ ଉଦ୍‌ଯାପନରୁ ଆସିପାରେ ଇପ୍ସିତ ଆନନ୍ଦ ।

ସ୍ୱଭାବକୁ କିନ୍ତୁ ଆଗତୁରା ଠାବକରି ହୁଏନା । ଯୁକ୍ତି ମଧ୍ୟ ଆବିଷ୍କାର କରିପାରେନା ସ୍ୱଭାବ, କାର୍ଯ୍ୟ-କାରଣ ବିଚାରକରି ଅବରୋହୀ ପଦ୍ଧତିରେ ନିର୍ମାଣକରିଥାଏ ସିଦ୍ଧାନ୍ତ । ସିଦ୍ଧାନ୍ତ ପଛରେ ବାସ୍ତବ ଅଭିଜ୍ଞତାର ପ୍ରମାଣ ଥାଏନା । ମଣିଷର ନିହିତ ସହଜାତ ସ୍ୱଭାବ ତେଣୁ ଆରିଷ୍ଟୋଟ୍ଲଙ୍କ ନୀତିସୂତ୍ରର ଆଧେୟ, ଅଭ୍ୟନ୍ତର ବସ୍ତୁ । କାଣ୍ଟଙ୍କ ମୁକ୍ତ ସ୍ୱାଧୀନ ସତ୍ତାର ସେଭଳି ଆଧେୟ ନାହିଁ, ତେଣୁ ଶୂନ୍ୟଗର୍ଭ । କହିଚନ୍ତି କିନ୍ତୁ ହେଗ୍ଲ, ଆରିଷ୍ଟୋଟ୍ଲଙ୍କ ପ୍ରଭାବ ଯାହାଙ୍କ ଉପରେ ବ୍ୟାପକ ଓ ପ୍ରଗାଢ଼ । ବକ୍ତବ୍ୟର ମର୍ମ ହେଲା : ବୋଧଗମ୍ୟ ବାସ୍ତବଭିତ୍ତି ବ୍ୟତିରେକେ କର୍ମପ୍ରେରଣା ଆସିପାରେନା ଶୂନ୍ୟରୁ । କର୍ମପଦ୍ଧତି ଯେହେତୁ ନିର୍ଣ୍ଣୟକରୁଚି ନୀତି-ଅନୀତି, କର୍ମର ଭିତ୍ତି ହେବ ଜୀବନଯାତ୍ରାର ଅଭିଜ୍ଞତା,ମୌଳିକ ପରିଚୟରେ ଯା ସାମାଜିକ/ରାଜନୈତିକ । From a purely formal principle of rationality one cannot derive any substantial conclusions about how to act । କିନ୍ତୁ କାଣ୍ଟ ତ ଆଧେୟ ନିର୍ଦ୍ଦେଶ କରିସାରିଚନ୍ତି , ଯା ବିଷୟାଭିମୁଖୀ । ନୈତିକତା ସେଠି ବ୍ୟକ୍ତିଗତ ଇଚ୍ଛା-ଅନିଚ୍ଛା ଉପରେ ନିର୍ଭରକରେନା; ଆକାଙ୍କ୍ଷା-ଆସକ୍ତି ତ୍ୟାଗକରି କର୍ତ୍ତବ୍ୟ-ଅକର୍ତ୍ତବ୍ୟ ସ୍ଥିରକରେ ମଣିଷ, ସ୍ୱୟମ୍ଭର ଏଜେଣ୍ଟ । ସେ ଅବଲୋକନରେ ଜଗତ୍ ଏକ ବିଷୟସମଷ୍ଟି, ଅନ୍ତର୍ଦୃଷ୍ଟି ଓ ଦୂରଦୃଷ୍ଟି ବଳରେ ନିଜକୁ ଫିଟାଇନେବି ମୁଁ ସେଥିରୁ । ଅର୍ଥାତ୍, ବିଦ୍ୟମାନ ସାମାଜିକ ଅବସ୍ଥାନ ଓ ଆଗ୍ରହ/ଆକାଙ୍କ୍ଷାରୁ ମନକୁ ଫିଟାଇନେଇ ନିଜକୁ ଭାବିବି ଅନ୍ୟ ସମସ୍ତଙ୍କ ଭିତରେ ମୁଁ ବି ଜଣେ । ବିଶେଷ କୋଉ ସ୍ୱାର୍ଥର ପ୍ରତିନିଧିତ୍ୱ କରୁନାହିଁ ମୁଁ । ସେତେବେଳେ, ବିବାକ ଲୋକଙ୍କ ଜୀବନଚର୍ଯ୍ୟାରେ ଯା ସାଧାରଣ ଓ ସାମାନ୍ୟ, ସେହି ହେବ ମୋ ନୈତିକତାର ଆଧେୟ । ଆରିଷ୍ଟୋଟ୍ଲ /ହେଗ୍ଲ କିନ୍ତୁ କହିବେ, ଏଭଳି ନିରାସକ୍ତ ବିବେଚନା ଯେହେତୁ ସବୁ ରକମ ଗତିଦାୟକ ଉଦ୍ଦେଶ୍ୟରୁ ବିଯୁକ୍ତ, ନିର୍ଦ୍ଦିଷ୍ଟ କୋଉ କର୍ମଧାରା ସମ୍ବନ୍ଧରେ ପ୍ରତ୍ୟୟ ସୃଷ୍ଟିକରିବାକୁ ହୋଇଯିବ ଅକ୍ଷମ; ଏଥିକ୍ସ ବିଷୟରେ ପ୍ରତ୍ୟୟ ତ ଦୂରର କଥା ।

ଆପତ୍ତି ସବଳ ହେଉ କି ଦୁର୍ବଳ, ଫିଲଜଫି କି ଇତିହାସ ଏକ୍ଷଣି କହିପାରିବନାହିଁ କାହାକୁ ଆରିଷ୍ଟୋଟ୍ଲଙ୍କ ଶଗଡ଼ଗୁଳାରେ ଚାଲିବାକୁ । ମାତ୍ର କାଣ୍ଟ ଯେମିତି ବାସନାମୁକ୍ତ ହୋଇ କର୍ତ୍ତବ୍ୟ ସ୍ଥିରକରିବାକୁ କହିଚନ୍ତି ମଣିଷକୁ, ଜୀବନର ଅଭିଜ୍ଞତା ସେ ସମ୍ଭାବନାକୁ ସମର୍ଥନ କରେନା । କାମ, ଯେକୌଣସି କାମ, କରିବାକୁହେଲେ ଦରକାର 'ମୋଟିଭ୍', ଗତିଦାୟକ ଉଦ୍ଦେଶ୍ୟ । ସେ ଉଦ୍ଦେଶ୍ୟ/ଅଭିପ୍ରାୟର ଆଧେୟ ଯଦି 'ନୈତିକ' ନହୁଏ, ସେଥିରୁ ନିର୍ଗତ କର୍ମଧାରା ସମ୍ବନ୍ଧରେ କଳ୍ପନାଜଳ୍ପନା ଅବାନ୍ତର । ହ୍ୟାପିନେସ୍ / ସକ୍ସେସ୍/ ଏକ୍ସଲେନ୍ସ, କର୍ମଧାରାର ଚାଳିକାଶକ୍ତି କରିଚନ୍ତି ଯାହାକୁ ଆରିଷ୍ଟୋଟ୍ଲ, ମଣିଷକୁ ଯୋଉ

ବାଟକୁ ଟାଣିନେଇପାରେ, ଅନ୍ତତଃ ଏକ୍ଷଣି, ନିର୍ବିଚାରରେ ତାକୁ 'ନୈତିକ' କହିହେବ କି ? ଏଥିକୁ ଜିନିଷଟା ଏତେ ଆପେକ୍ଷିକ ହୋଇଯାଇଚି ଦୁନିଆରେ !

 କିନ୍ତୁ ସୁଖସନ୍ତୋଷ କହିଲେ, ଆରିଷ୍ଟୋଟ୍ଲ ନିର୍ଦ୍ଦିଷ୍ଟ କଣ ବୁଝନ୍ତି, ଜାଣିବାକୁ ହେଲେ, ମଣିଷସ୍ୱଭାବର ବୈଶିଷ୍ଟ୍ୟ ଠିକ୍ କି ଜିନିଷ, ଜାଣିବାକୁ ପଡ଼ିବ । କାହିଁକିନା, ବିଶେଷ ଯୋଉ କାର୍ଯ୍ୟକଳାପ ଦ୍ୱାରା ମଣିଷ ଅନ୍ୟ ପ୍ରାଣୀଙ୍କ ପାଖରୁ ବାରିହୋଇପଡ଼େ, ସେଇଥିରୁ ଜଣାପଡ଼ିବ ସୁଖବୋଧର ସ୍ୱାତନ୍ତ୍ୟ : To say that happiness is the chief good seems a platitude, and a clear account of what is still desired. This might perhaps be given. *if we could first ascerain the function of man*. For just as for a flute player, a sculptor, or any artist, and, in general, for all things that have a function or activity, the good and the 'well' is thought to reside in the function, so would it seem to be for man, if he has a function. Have the carpenter, then, and the tanner certain functions and activities, and man has none ? Is he naturally functionless ? Or as eye, hand, foot, and in general each of the parts evidently has a function, may one lay it down that man similarly has a function apart from all these ? What then can this be ? Life seems to be common even to plants, *but we are seeking what is peculiar to man.* Let us exclude, therefore, the life of nutrition and growth. Next there would be a life of perception, but *it* also seems to be common even to the horse, the ox, and every animal. *There remains then an active life of the element that has a logos....* Now if the function of *man* is *an activity of soul in accordance with, or not without, a logos* - and if we say a so-and-so and a good so-and-so have a function which is the same in kind, e.g. a lyre-player and a good lyre-player, and so without qualification in all cases, eminence in respect of virtue being added to the name of the function (for the function of a lyre-player is to play the lyre and that of a good lyre-player is to do so well) : this is the case and we state *the function of man to be a*

*certain kind of life, and this to be an activity or actions of the soul implying a logos, and the function of a good man to be the good and noble performance of these,* and if any action is well performed when it is performed in accordance with the appropriate virtue : if this is the case, *human good turns out to be activity of the soul in accordance with virtue,* and if there are more than one virtue, in accordance with the best and most complete. But we must add 'in a complete life'. For one swalloco does not make a summer, nor does one day; and so too one day, or a short time, does not make a man blessed and happy (1097-1098).

'ଲଗସ୍', ତାହେଲେ, ଅବଶିଷ୍ଟ ପ୍ରାକୃତିକ ଜଗତରୁ ମଣିଷକୁ କରିଦେଇଚି ସ୍ୱତନ୍ତ୍ର । ନିଜ ଉଦ୍ଦେଶ୍ୟକୁ ସୁହାଇଲାଭଳି 'ଲଗସ୍'କୁ କୁହାଯାଇଚି ଯୁକ୍ତି, କି ବିନ୍ୟାସ, କି ଶୃଙ୍ଖଳା, ଅଥବା ଏକାଧାରରେ ତିନିଟିଯାକ । ଖ୍ରୀଷ୍ଟଧର୍ମରେ ଲଗସ୍ ହେଉଚି ବିଶ୍ୱନିୟନ୍ତ୍ରକ ସକ୍ରିୟ ଶକ୍ତି, ପୁଣି ଈଶ୍ୱରଙ୍କ ମୁଖନିଃସୃତ ବଚନ । ଆତ୍ମା ଭିତରେ ଲଗସ୍ କି ଭାବରେ ବିନ୍ୟସ୍ତ, ସେତିକି କୁଆଡ଼େ ଏଥିକ୍ସର ବିବେଚ୍ୟ । ଅର୍ଥାତ୍, ଜୀବନଯାପନରେ ଏକପ୍ରକାର ଶୃଙ୍ଖଳା ନିହିତ ଅଛି ବୋଲି, ଯୁକ୍ତିକୁ ବ୍ୟବହାର କରିପାରୁଚି ମଣିଷ । ଏବଂ ମନ ଯେହେତୁ ଯୁକ୍ତିକୁ ଧାରଣକରୁଚି, ଆତ୍ମାସ୍ଥିତ ଲଗସ୍-କୁ ମନ କରିବ ବିମ୍ବିତ । ଏବଂ ସେଇ ପ୍ରତିଫଳନ ସମର୍ଥକରିବ ସହଜାତ ସ୍ୱଭାବକୁ ସମ୍ପୂର୍ଣ୍ଣଭାବେ ଉପଲବ୍ଧି କରିବାକୁ । ସେଇ ଉପଲବ୍ଧି ହିଁ ପୁଲକ ବା ପରିତୋଷ । ଏ ବ୍ୟାଖ୍ୟା ବାହାରେ ରହିଚି ଅଭିଧାନ; ଲଗସ୍ ସେଠି : used in a mystic sense by Hellenistic and Neoplatonist philosophers and by St. John.... A pervading cosmic idea or spirit of creativity or rationality । ଲଗସ୍ ଯେହେତୁ ଆଧ୍ୟାତ୍ମିକ ପ୍ରରୋଚନା, ମଣିଷର ଆତ୍ମିକ ବିବର୍ତ୍ତନର ଉଦ୍ଦେଶ୍ୟ : ଦିବ୍ୟଜୀବନ–ଚୁମ୍ବକରେ ଏଇ ହେଲା ଆରିଷ୍ଟୋଟ୍ଲଙ୍କ ଏଥିକ୍ସ । ଏଇ ସ୍କିମ୍‌କୁ ସାମାନ୍ୟ ଅଦଳବଦଳ କରି ଅରବିନ୍ଦ ତିଆରିକରିଚନ୍ତି ନିଜ ଦିବ୍ୟଜୀବନ ପ୍ରକଳ୍ପ । 'ଯୋଗ' ତେଣୁ ତାଙ୍କ ଏଥିକ୍ସ, କାହିଁକିନା, ଯୋଗବଳରେ କୁଆଡ଼େ ଅତିମାନସ (=ଲଗସ୍)କୁ ଉପଲବ୍ଧିକରିବା ସମ୍ଭବପର । ଯୁକ୍ତି, ଏ ସ୍କିମ୍-କୁ ବୋଧଗମ୍ୟ କରିପାରେ ହୁଏତ, କିନ୍ତୁ ବ୍ୟାବହାରିକ ଜୀବନଯାତ୍ରାରେ ତାର ଫଳିତ ସାଫଲ୍ୟ ରହିଯାଇଚି ଅଦ୍ୟାବଧି ଅଗୋଚର । ଯେମିତି, ଗ୍ରୀକ୍‌ମାନଙ୍କ ଜୀବନରେ ଲଗସ୍-ର ପ୍ରୟୋଗ-ପରିଣାମ ।

ଆରିଷ୍ଟୋଟ୍ଲ ଯେମିତି ଛାତ୍ରଙ୍କୁ ପାଠ ପଢ଼ାଉଥିଲେ, ଦ୍ରୋଣାଚାର୍ଯ୍ୟ ସେମିତି କୌରବ-ପାଣ୍ଡବଙ୍କୁ ଅସ୍ତ୍ରବିଦ୍ୟା । ନ୍ୟାୟନୀତିରେ ଅଟଳ ରହିବା କାରଣରୁ ପ୍ରତାରିତ ହୋଇଚନ୍ତି ଯୁଦ୍ଧକ୍ଷେତ୍ରରେ; ଏପରିକି, ଧ୍ୟାନନିମଗ୍ନ ଆଚାର୍ଯ୍ୟଙ୍କର ଘଟିଯାଇଚି ଶିରଚ୍ଛେଦ । ଲଗସ୍ ରକ୍ଷାକରି ପାରିନାହିଁ । ମାତ୍ର ଶିକ୍ଷାର୍ଥୀଙ୍କୁ ବିଢ଼ିବାପାଇଁ ଗଛ ଉପରେ ଶିଳ୍ପୀନିର୍ମିତ କୃତ୍ରିମ ଶାଗୁଣାଟାଏ ବସାଇଦେଇ କୌରବ-ପାଣ୍ଡବଙ୍କୁ ନେଇ ଛିଡ଼ା କରିଚନ୍ତି ଗଛ ତଳେ, ଆଉ ଆଦେଶ କରିଚନ୍ତି : 'ଧନୁଶର ସାଙ୍ଗରେ ନେଇ ଶାଗୁଣାଟାକୁ ଲକ୍ଷ୍ୟ କରି ବାଣ ସନ୍ଧାନ ପୂର୍ବକ ଅବସ୍ଥାନ କର' (*ମହାଭାରତ*, ଆଦିପର୍ବ) । କୁମାରଗଣ ବାଣ ସନ୍ଧାନ ପୂର୍ବକ ଅବସ୍ଥିତ ହେଲେ, ସର୍ବାଗ୍ରେ ଅଗ୍ରଜ ଯୁଧିଷ୍ଠିରଙ୍କୁ ପଚାରନ୍ତି 'ରାଜପୁତ୍ର ! ଗଛ ଉପରେ ବସିଥିବା ଶାଗୁଣାକୁ ଦେଖିପାରୁଚ ତ ? ଦେଖିପାରୁଚ କି ଗଛକୁ, ମୋତେ ଓ ଭାଇମାନଙ୍କୁ ?' ଗୁରୁ ଜାଣନ୍ତି, ଅତି ଉଦାରତାରୁ ଉପୁଜିବ ପ୍ରମାଦ, ଏବଂ ପ୍ରତ୍ୟାଶିତଭାବେ ଜ୍ୟେଷ୍ଠ ପାଣ୍ଡବ ଉତ୍ତରଦିଅନ୍ତି, 'ପଶ୍ୟାମ୍ୟେନାଂ ବନସ୍ପତିମ୍/ ଭବନ୍ତଞ୍ଚ ତଥା ଭ୍ରାତୃଣ୍ ଭାସଞ୍ଚେତି ପୁନଃ ପୁନଃ' । ପରୀକ୍ଷାର୍ଥୀର ଦୃଷ୍ଟିଚାଞ୍ଚଲ୍ୟରେ ବିରକ୍ତ ଦ୍ରୋଣ, ପରୀକ୍ଷାମଞ୍ଚରୁ ଯୁଧିଷ୍ଠିରଙ୍କୁ ଓହ୍ଲାଇଯିବାକୁ ଆଦେଶ କରନ୍ତି; ମାତ୍ର ଭୀମ–ଦୁର୍ଯ୍ୟୋଧନ ପ୍ରଭୃତିଙ୍କର ଅକଲ ହୁଏନା ତଥାପି, ପଛକୁ ପଛ ପଣିକିଆ ମୁଖସ୍ତ କରିବାଭଳି ସେଇ ଏକା ଉତ୍ତର ଶୁଣାଇଯାଆନ୍ତି । ବାଣ ନିକ୍ଷେପ ତ ଦୂରର କଥା, ଧନୁଟେକିବାକୁ ବି ଅନୁମତି ମିଳେନା କାହାରିକି । ଏଥର ଅର୍ଜୁନର ପାଳି; କହିଲା, 'ପଶ୍ୟାମ୍ୟେକଂ ଭାସମିତି ଦ୍ରୋଣଂ... ନ ତୁ ବୃକ୍ଷଂ ଭବନ୍ତଂ ବା ପଶ୍ୟାମୀତି ଚ ଭାରତ' । (ଅର୍ଥାତ୍, ଶାଗୁଣା ଛଡ଼ା ଆଉ କିଛିହେଲେ ଆଖିରେ ପଡୁନାହିଁ ।) ଏଥର ଜେରାକରିବେ ଶସ୍ତ୍ରବିଦ୍‌ଶ୍ରେଷ୍ଠ ପର୍ଶୁରାମଶିଷ୍ୟ ଦ୍ରୋଣ : ଭାସଂ ପଶ୍ୟସି ଯଦ୍ୟେନଂ ତଥା ବ୍ରୂହି ପୁର୍ନବଚଃ (ଯଦି ଶାଗୁଣାକୁ ଖାଲି ଦେଖୁଚୁ, କହ ତ ତାର କୋଉ ଅଙ୍ଗ ତୋ ଲକ୍ଷ୍ୟକୁ ଆସୁଚି ?) ଅର୍ଜୁନ : ଶିରଃ ପଶ୍ୟାମି ଭାସସ୍ୟ ନ ଗାତ୍ରମିତି ସୋଽବ୍ରବୀଂ (ଆଉକୋଉ ଅଙ୍ଗନୁହେଁ, ଖାଲି ମୁଣ୍ଡଟାକୁ ଦେଖୁଚି ।) ଏଥର ଆଦେଶ ମିଳିଲା, 'ଶର ତ୍ୟାଗକର' । ଅର୍ଥାତ୍ କାର୍ଯ୍ୟସିଦ୍ଧି ସକାଶେ, ଲଗସ୍–ଫଗସ୍ ମେଟାଫିଜିକ୍ସ-ଏଥିକ୍ସ, କାହାରି ଅସ୍ତିତ୍ୱକୁ ଅସ୍ୱୀକାର ନକରି ସୁଦ୍ଧା, ଅନେକ ଜିନିଷକୁ ବର୍ଜନ କରିବାକୁ ପଡ଼େ, ମୁଣ୍ଡରେ ଯଦି ଥାଏ ମଶଲା । ଅଳମତି ବିସ୍ତରେଣ ।



## ॥ ତିନି ॥

ଯୋଉ ବହିଟିକୁ ଅସମ୍ପୂର୍ଣ୍ଣ ରଖିଯାଇଚନ୍ତି ଆରିସ୍ଟୋଟ୍ଲ, *ପଲିଟିକ୍ସ* ; ପ୍ରଚଳିତ ଅର୍ଥରେ କିନ୍ତୁ 'ରାଜନୀତି' ନୁହେଁ। କାହିଁକିନା, ରାଜରାଷ୍ଟ୍ର କହିଲେ ଯୋଉ ଭୌଗୋଳିକ ପରିସରକୁ ବୁଝିଥିଲେ, ପାହାଡ଼ଚୂଡ଼ାରୁ ଅନାଇଲେ ଚତୁଃସୀମା ଦେଖିହେବ ଅକ୍ଳେଶରେ । ରାଷ୍ଟ୍ର କହିଲେ ତେଣୁ ଗ୍ରୀକ୍ ନଗରରାଷ୍ଟ୍ର । ଶାସନବ୍ୟବସ୍ଥା ହୋଇପାରେ ରାଜତନ୍ତ୍ର, ସଂଖ୍ୟାଲଘୁର ଆଧିପତ୍ୟ, ପ୍ରଜାପୀଡ଼କ ଅତ୍ୟାଚାରୀର ପ୍ରଭୁତ୍ୱ କିମ୍ବା ଗଣତନ୍ତ୍ର । ନିଜେ ଆରିସ୍ଟୋଟ୍ଲ ଅବଶ୍ୟ ଗଣତନ୍ତ୍ରର ସମର୍ଥକ, ଯୋଉ ଗଣତନ୍ତ୍ର ଦାସପ୍ରଥା ବା ପିତୃତନ୍ତ୍ରକୁ ବିରୋଧକରେନା । ଆରିସ୍ଟୋଟ୍ଲ ବସ୍ତୁତଃ ପ୍ରତିନିଧିତ୍ୱ କରିଚନ୍ତି, ଏଇ ରଚନାରେ, ଶିକ୍ଷିତ ଗ୍ରିକ୍‌ସମାଜର ସଂସ୍କାରଗୁଡ଼ିକର, ଯୋଉ ସଂସ୍କାର ବିଧିବିଧାନ ରୂପରେ ଗ୍ରୀକ୍‌ଜଗତକୁ ଶାସନକରିଚି ମଧ୍ୟଯୁଗ ଶେଷହେବା ପର୍ଯ୍ୟନ୍ତ । ଗ୍ରୀସ୍ ବାହାରେ ରହିଛନ୍ତି ଯେତେ ଲୋକ, ସେମାନେ ବାର୍‌ବାରିଆନ୍ ବା ବର୍ବର । ସମୁଦ୍ରତଟବର୍ତ୍ତୀ ରାଜ୍ୟ ନ ହେଲେ, ସେଠିକା କଥା ଜାଣିପାରୁ ନଥିଲେ ଗ୍ରୀକ୍ । ଆରିସ୍ଟୋଟ୍ଲଙ୍କ ରାଷ୍ଟ୍ରଚିନ୍ତାରେ ତେଣୁ ଗ୍ରୀକ୍-ରାଷ୍ଟ୍ରବ୍ୟବସ୍ଥା ସହିତ ଅଣଗ୍ରୀକ୍ ରାଷ୍ଟ୍ରବ୍ୟବସ୍ଥାର ପ୍ରତିତୁଳନା ନାହିଁ , ଏବଂ ସେଥିପାଇଁ, ଏକାଳର ବିଧିବ୍ୟବସ୍ଥା ପ୍ରତି ତାଙ୍କ *ପଲିଟିକ୍ସ* ମଧ ପ୍ରାସଙ୍ଗିକ ନୁହେଁ । ଗ୍ରୀକ୍‌ପ୍ରଭାବ-ଅଧ୍ୟୁଷିତ ଅଞ୍ଚଳକୁ ଇତିହାସ ନାଁଦେଇଚି ହେଲେନିକ୍; ସେଇ ହେଲେନିକ୍ ଜଗତର ରାଷ୍ଟ୍ରବ୍ୟବସ୍ଥା ବିଷୟରେ ମଧ ଆରିସ୍ଟୋଟ୍ଲ ବିଶଦ ଅବହିତ ନୁହେଁ; ମାତ୍ର ସେଠି ଲାଗିରହିଥିବା ବାଦବିବାଦ ତାଙ୍କୁ ଅଗୋଚର ନଥିଲା । ନଥିଲା ବୋଲି, ବିକ୍ଷିପ୍ତଭାବରେ ଇଜିପ୍ଟ, ବ୍ୟାବିଲନ୍, ପାରସ୍ୟ ଓ କାର୍‌ଥେଜ୍ ସମ୍ବନ୍ଧରେ ଉଲ୍ଲେଖ ରହିଚି *ପଲିଟିକ୍ସ*ରେ । କିନ୍ତୁ କାର୍‌ଥେଜ୍‌କୁ ଛାଡ଼ିଦେଲେ ଅନ୍ୟାନ୍ୟ ଦେଶ ବିଷୟରେ ତାଙ୍କ ମନ୍ତବ୍ୟ ତାଚ୍ଛଲ୍ୟ ବ୍ୟଞ୍ଜକ । ବିସ୍ମୟର କାରଣ କିନ୍ତୁ ଆଲେକ୍‌ଜାନ୍ଦାର୍‌ଙ୍କ ବିଷୟରେ ନୀରବତା; ଅଥଚ ସେତିକିବେଳେ ଆମୂଳଚୂଳ ବଦଳାଇଦେଇଚନ୍ତି ପୃଥିବୀର ରାଷ୍ଟ୍ରବ୍ୟବସ୍ଥାକୁ ଏଇ ଗ୍ରୀକ୍-ବୀର । ସେ ଆଲୋଡ଼ନ ସ୍ପର୍ଶକରିନାହିଁ ଆରିସ୍ଟୋଟ୍ଲଙ୍କ ରାଷ୍ଟ୍ରଚିନ୍ତାକୁ । ଅଥଚ ମାସିଡନ୍ ଭାଙ୍ଗିଦେଇଚି ନଗର-ରାଷ୍ଟ୍ରର ସୀମାପରିସୀମା; ଫଳରେ ନଗରରାଷ୍ଟ୍ର ଯେ ଅଚିରାତ୍

ହୋଇଯିବ ଅକର୍ମଣ୍ୟ, ପୂର୍ବାଭାସ ମଧ୍ୟ ଧରାପଡ଼ିନାହିଁ ଆରିଷ୍ଟୋଟ୍ଲଙ୍କ ପଲିଟିକ୍ସରେ । ସ୍ୱାଧୀନ ସାର୍ବଭୌମ ଅନେକ ଗଣରାଜ୍ୟ ବିଭାଜିତ ହେବା ଫଳରେ ଗ୍ରୀସ୍ ହୋଇଥିଲା ବହୁବିଧ ରାଜନୀତିକ ପରୀକ୍ଷାନିରୀକ୍ଷାର କର୍ମଶାଳା, କିନ୍ତୁ ସେ ପରିପ୍ରେକ୍ଷିତ ପ୍ରାସଙ୍ଗିକତା ହରାଇସାରିଚି ମଧ୍ୟଯୁଗରେ, ପୁନର୍ବାର ନଗରସଭ୍ୟତାର ଅଭ୍ୟୁଦୟ ଘଟିବା ପର୍ଯ୍ୟନ୍ତ ଇଟାଲିରେ । ଅନ୍ୟ ଶବ୍ଦରେ, ଯୋଉ ରାଜନୀତିକ ଅଭିଜ୍ଞତା ତାଙ୍କୁ ବିଚଳିତ କରିଚି, ତାର ସମାନ୍ତରାଳ ଦେଖିହେବ ବରଂ ସାମ୍ପ୍ରତିକ ପୃଥିବୀରେ, କାହିଁକିନା, ଏ ବହି ଲେଖାଯିବାର ଦେଢ଼ହଜାର ବର୍ଷ ଭିତରେ ସେଭଳି ପରୀକ୍ଷାନିରୀକ୍ଷାର ଅବକାଶ ଆସିନାହିଁ ଆଉକେବେ ।

ଆରିଷ୍ଟୋଟ୍ଲଙ୍କ ପରିକଳ୍ପିତ ରାଷ୍ଟ୍ର ଏପରି ଏକ ସଙ୍ଗଠନ, ଯା ନାଗରିକର ନୈତିକ ବିକଟନର ବିଶେଷ ସହାୟକ; ଏବଂ ସେଇ ଉଦ୍ଦେଶ୍ୟରେ, ଆଦିମ ଯାଯାବର ଅବସ୍ଥାରୁ ପରିବାର, ଗ୍ରାମ, ସହର ପ୍ରଭୃତି କ୍ରମାଗତ ବିବର୍ତ୍ତନ ଭିତରଦେଇ ମଣିଷ ଉଦ୍‌ଭାବନ କରିଚି ରାଷ୍ଟ୍ର । ସ୍ୱଭାବତଃ, ବୌଦ୍ଧବିହାର, ହିନ୍ଦୁମଠ କି ଆଶ୍ରମ ଭଳି ଆଧ୍ୟାତ୍ମିକ ଉତ୍କର୍ଷରେ ନାଗରିକକୁ ଉଦ୍‌ବୁଦ୍ଧକରିବା ରାଷ୍ଟ୍ର ସଙ୍ଗଠନର ମୂଳ ଲକ୍ଷ୍ୟ । ହେଲେସୁଦ୍ଧା, ସୁଫଳ ନିର୍ବିଶେଷ ନୁହେଁ; ନିହିତ ସ୍ୱଭାବ ଓ ପ୍ରବଣତା ଅନୁସାରେ ନାଗରିକ ଭୋଗକରେ ରାଷ୍ଟ୍ରର ବଦାନ୍ୟତା । ଭାରତରେ ଯେପରି ବର୍ଣ୍ଣାଶ୍ରମ ।

ପଲିଟିକ୍ସରେ କୌତୁକାବହ କିଛି ଗୁଜବ ରହିଚି; ଯେପରି, ନାଟ୍ୟକାର ୟୁରିପିଡିଜ୍; (ଖ୍ରୀ.ପୂ. ୪୮୦-୪୦୬) ମାସିଡନ୍ ରାଜା ଆକେଲସ୍‌ଙ୍କ ଦରବାରରେ ଥିଲେ ପାରିଷଦ; ତାଙ୍କ ମୁହଁରୁ ଦୁର୍ଗନ୍ଧ ବାହାରୁଚି ବୋଲି ବରାବର ଅଭିଯୋଗକରିଚି ଅନ୍ୟତମ ପାରିଷଦ; ଡେକାମ୍ନିକସ୍ । କ୍ରୁଦ୍ଧ କବିଙ୍କୁ ଶାନ୍ତକରିବା ସକାଶେ ରଜା ଅନୁମତି ଦେଇଚନ୍ତି, ଅଭିଯୋଗକାରୀକୁ କବି ଚାବୁକ ମାରିବେ; ୟୁରିପିଡିଜ୍ ମଧ୍ୟ ରାଜାନୁଗ୍ରହର ନେଇଚନ୍ତି ସମ୍ପୂର୍ଣ୍ଣ ସୁଯୋଗ । ଡେକାମ୍ନିକସ୍ ଚକ୍ରାନ୍ତକରି ରଜାକୁ ହତ୍ୟାକରିଚି କେତେବର୍ଷ ଉତାରୁ, ମାତ୍ର କବି ସେତେବେଳକୁ ପରଲୋକରେ । ସେମିତି, ଗ୍ରୀସ୍‌ର ଆଦ୍ୟ ଦାର୍ଶନିକ ଥେଲିଇଜ୍ (ଖ୍ରୀ.ପୂ. ୬୨୦-୫୫୫) । ଅଭାବ ଅସମ୍ଭାଳ ହେବାରୁ ରାଗରେ ସହରଯାକର ସବୁ ତେଲଘଣା କିଣିନେଇଚନ୍ତି କିସ୍ତିରେ; ତହିଁଉତାରୁ ଅଭିଲ୍ଫତେଲ ସକାଶେ ଦାବିକରିଚନ୍ତି ଏକଚାଟିଆ ଚଢ଼ାଦର । କାହିଁକିନା, ଦେଖାଇବାକୁ ମନକରିଚନ୍ତି, ଫିଲଜଫର୍ ବି ପଇସା କମାଇ ମହାଜନ ହୋଇପାରେ । କିନ୍ତୁ ହୁଏନା, କାହିଁକିନା, ଟଙ୍କାପଇସାଠୁଁ ଢେର୍ ଗୁରୁତର ବିଷୟରେ ମୁଣ୍ଡଖେଳାଇବାକୁ ପଡ଼େ ଦିନରାତି । ପଡ଼େ ବୋଲି, ଆରିଷ୍ଟୋଟ୍ଲ କିଛି ସୁପରାମର୍ଶ ଦେଇଚନ୍ତି ଅଜ୍ଞଜନଙ୍କୁ : ସ୍ତ୍ରୀଲୋକ ଗର୍ଭଧାରଣକରିବେ ଶୀତଋତୁରେ, ପବନ ବହେ ଯେତେବେଳେ ଉତ୍ତରଦିଗରୁ; ଅଶିଷ୍ଟ

କଥାବାର୍ତ୍ତା ଅକର୍ତ୍ତବ୍ୟ, ଲଜ୍ଜାକର ବଚନ ଯେହେତୁ ଆକର୍ଷଣକରେ ଲଜ୍ଜାକର ପ୍ରତିକ୍ରିୟା; ଆଉ, ଅଶ୍ଳୀଳତା ମଧ୍ୟ ସହ୍ୟକରାଯିବନାହିଁ ଦେଉଳ ଛଡ଼ା ଅନ୍ୟତ୍ର; ବିଦୂଷକସୁଲଭ ଇତର ଗାଳିଗୁଲଜ ଚଳିପାରେ ଦେବାଳୟରେ କେବଳ (ଯେପରି, ରଥ ଉପରେ ଡାହୁକର କୁହାଟ) । ଲୋକ ବି ବାହାହେବେନାହିଁ ଯୁବାଅବସ୍ଥାରେ; ହେଲେ ପୁଅଝିଅ ହେବେ ଦୁର୍ବଳ; ପୁରୁଷ ନିଜେ ହେବ ନିର୍ବୀର୍ଯ୍ୟ । ପୁରୁଷ ନିର୍ବୀର୍ଯ୍ୟ ହେଲେ ସ୍ତ୍ରୀ ହେବ କୁଳଟା । ପୁରୁଷ ପାଇଁ ବିବାହର ଉପଯୁକ୍ତ ବୟସ ତେଣୁ ୩୭ ଆଉ ନାରୀର ଅଠର । ଡାକ୍ତର୍ କହୁଚନ୍ତି କୋଡ଼ିଏ । ଭାରତରେ ବି ବିଶ୍ୱାସ : ମରଣଂ ବିନ୍ଦୁପାତେନ ।

ଥଟ୍ଟା-ମସ୍କରା ଢେର ହେଲା; ଏଥର ଅସଲ ତତ୍ତ୍ୱ । ତାର ପ୍ରଥମ ପ୍ରତିପାଦ୍ୟ, ଯେତେ ରକମ ସମ୍ପ୍ରଦାୟ/ଗୋଷ୍ଠୀଚେତନା ରହିଚି, ରାଷ୍ଟ୍ରଚେତନା ତନ୍ମଧ୍ୟରେ ସର୍ବୋଚ୍ଚ, କାହିଁକିନା, ଶୀର୍ଷତମ ଉତ୍କର୍ଷ ହିଁ ରାଷ୍ଟ୍ରର ଉପଲକ୍ଷ୍ୟ । କାଳଗତିରେ ଅବଶ୍ୟ ପରିବାରର ଉତ୍ପତ୍ତି ପ୍ରଥମେ, କାହିଁକିନା, ତା ମୂଳରେ ରହିଚି ନାରୀ–ପୁରୁଷ ମିଳନ, ପୁଣି ପ୍ରଭୁ-ଭୃତ୍ୟ ଦ୍ୱାନ୍ଦ୍ୱିକ ସମ୍ପର୍କ (ଗ୍ରୀକ୍ ନଗର-ରାଷ୍ଟ୍ରରେ କ୍ରୀତଦାସ ଥିଲା ପରିବାରର ଅନ୍ତର୍ଭୁକ୍ତ) । ଯେହେତୁ ପ୍ରକୃତିଦତ୍ତ, ସମ୍ପର୍କଗୁଡ଼ିକ ସ୍ୱାଭାବିକ । ଅନେକ ପରିବାର ଏକତ୍ରହୋଇ ତିଆରିକରନ୍ତି ଜନପଦ (ଗ୍ରାମ) ଏବଂ ଅନେକ ଜନପଦ ମିଳିତହୋଇ ରାଷ୍ଟ୍ର । ଏକମାତ୍ର ସର୍ତ୍ତ, ପରିବାର ହେଉ କି ଗ୍ରାମ ବା ରାଜ୍ୟ, ସଙ୍ଗଠନ ଏଭଳି ଆକାର–ପ୍ରକାର ଆହରଣକରିଥିବ ଯଦ୍ୱାରା ହୋଇପାରିବ ସ୍ୱାବଲମ୍ବୀ । ଆରିଷ୍ଟୋଟ୍ଲ କିନ୍ତୁ ପ୍ରବର୍ତ୍ତନକରିଚନ୍ତି ନୂଆ ଏକ ଆଇଡିଆ : ପ୍ରାଇଅରିଟି ବା ଅଗ୍ରାଧିକାର । ପ୍ରାଇଅରିଟି ମଧ୍ୟ ପ୍ରାକୃତିକ ବ୍ୟବସ୍ଥା, ଯେପରି ପୁଅ ଉପରେ ବାପ, ସ୍ତ୍ରୀ ଉପରେ ସ୍ୱାମୀ,ଭୃତ୍ୟ ଉପରେ ପ୍ରଭୁ । କାଳ ଗଣନାରେ ପରିବାରର ପରବର୍ତ୍ତୀ, ମାତ୍ର ପ୍ରାକୃତିକ ନିୟମରେ, ପରିବାର ଓ ଜନପଦର ଅଭିଭାବକ ରାଷ୍ଟ୍ର । ଏପରିକି, ବ୍ୟକ୍ତିବିଶେଷର ଅଭିଭାବକ ମଧ୍ୟ ସଙ୍ଗଠିତ ରାଷ୍ଟ୍ର । କାହିଁକିନା, What each thing is when fully developed we call its nature; ମାନବସମାଜ ତେଣୁ ପୂର୍ଣବିକଶିତ ଅବସ୍ଥାରେ ପହଞ୍ଚି ପରିଣତହୋଇଚି ରାଷ୍ଟ୍ର, ଏବଂ ସେଥିପାଇଁ, ଯା ସମଗ୍ର ତା ଅଂଶର ଅଗ୍ରବର୍ତ୍ତୀ । ପ୍ରତ୍ୟୟଟା ସ୍ପଷ୍ଟତଃ ରାଷ୍ଟ୍ରକୁ ଜୀବପିଣ୍ଡ (ଅର୍ଗାନିକ୍ସ) ଭାବରେ କଳ୍ପନା । ଦେହ ଅଛି ବୋଲି, ଅବୟବ ଅଛି; ଦେହସ୍ଥିତ 'ପ୍ରାଣ' ଅଙ୍ଗପ୍ରତ୍ୟଙ୍ଗକୁ କରୁଚି ସକ୍ରିୟ । ପ୍ରାଣ ଅବବୋଧ ମଧ୍ୟ ଜରୁରୀ; ଅନ୍ୟଥା ବିକାଶ, ନୈତିକ ବିକାଶ, ମନେହେବ ଅଯୌକ୍ତିକ । ଦେହର ବିନାଶ ଘଟିଲେ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ଅବୟବହୋଇ ରହିପାରେନା । କାହିଁକିନା, ଅବୟବ ମାତ୍ରକେ ନିଜ କର୍ମଦକ୍ଷତା ଦ୍ୱାରା ହୁଏ ସଂଜ୍ଞାବଦ୍ଧ । ଯେପରି, ହାତ ମୁଠାଇଧରିବ କିମ୍ବା ମୁଣ୍ଡ ଭାବିବ ଚିନ୍ତିବ । ଅର୍ଥାତ୍, ଜୀବପିଣ୍ଡ (ସମଗ୍ର) ସହିତ ଯୁକ୍ତ ନହେଲେ, ଅବୟବ ହେବ

ଉଦ୍ଦେଶ୍ୟରହିତ ଜଡ଼ପିଣ୍ଡ; ଠିକ୍ ସେମିତି, ବ୍ୟକ୍ତିବିଶେଷ ରାଷ୍ଟ୍ରର ଅଂଶ ବା ଅବୟବ ହୋଇ ନପାରିଲେ, ପ୍ରକୃତିଦତ୍ତ ଅଭିପ୍ରାୟକୁ ବ୍ୟକ୍ତ/ଚରିତାର୍ଥ କରିବାକୁ ଅସମର୍ଥ। (ସ୍ମରଣ ଥାଇପାରେ, ଅନ୍ତିମ ଉଦ୍ଦେଶ୍ୟ 'ଦିବ୍ୟଜୀବନ') । ରାଷ୍ଟ୍ରକୁ ଯିଏ ଅସ୍ତିତ୍ୱ ଦେଇଚି, ମାନବଜାତିର କରିଚି ଅଶେଷ କଲ୍ୟାଣ, କାହିଁକିନା, ବିନା ବିଧିବିଧାନ (ଆଇନ୍‌ର ଶାସନ)ରେ ମଣିଷ ହୁଏ 'ମୂଢ଼ାଚେତା ନରାଧମ'; ଆକଟ (ଲ') କାର୍ଯ୍ୟକାରୀ କରିବାକୁ ଦରକାର ତେଣୁ ରାଷ୍ଟ୍ରଯନ୍ତ୍ର । ରାଷ୍ଟ୍ର ପଣ୍ୟବିନିମୟର ବଜାର ନୁହେଁ କି ଅପରାଧ ନିରୋଧକାରୀ ପୁଲିସ୍ ନୁହେଁ, The end of the State is the good life....And the State is the union of families and villages in a perfect and self-sufficing life, by which we mean a happy and honourable life (1280ᵇ) । A political society exists for the sake of noble actions, not of mere companionship (1281a) ।

ରାଷ୍ଟ୍ର ଯେହେତୁ ଗୃହସ୍ଥାଳି ଦ୍ୱାରା ଗଠିତ, ଏବଂ ପ୍ରତ୍ୟେକ ଗୃହସ୍ଥାଳିକୁ ସଂଗଠିତକରେ ଯେହେତୁ ପ୍ରତ୍ୟେକ ପରିବାର, ରାଜନୀତିର ସମୀକ୍ଷା ଆରମ୍ଭହୋଇଚି ପରିବାରରୁ; ମାତ୍ର ସେ ସମୀକ୍ଷାର ବୃହଦଂଶ ଅଧିକାର କରିଚି ଦାସପ୍ରଥା, ପୁରାକାଳରେ ଭୃତ୍ୟ (କ୍ରୀତଦାସ) ଯେହେତୁ ବିବେଚିତହୋଇଚି ପରିବାରରୁ ଅବିଭାଜ୍ୟ । ଆରିଷ୍ଟୋଟ୍‌ଲ୍‌ଙ୍କ ଦୃଷ୍ଟିରେ ଦାସପ୍ରଥା, ଉଦ୍ଦେଶ୍ୟସାଧନ ସକାଶେ ଖାଲି ଉପଯୁକ୍ତ ନୁହେଁ, ନିର୍ଦ୍ଦୋଷ ମଧ୍ୟ । କାହିଁକିନା, ପ୍ରଭୁ-ଦାସ ସମ୍ବନ୍ଧ ଏକ ପ୍ରାକୃତିକ ବିଧାନ; ପ୍ରତିତୁଳନାରେ ଭୃତ୍ୟ ଯେହେତୁ ପ୍ରଭୁଠାରୁ ସ୍ୱଭାବତଃ ନିକୃଷ୍ଟ । ପ୍ରକୃତିର ବିଧାନ ଏପରି ଯେ କିଛିଲୋକ ଅଧୀନ ବା ଅଧସ୍ତନର ଲକ୍ଷଣ ବହନକରି ଜନ୍ମହୁଅନ୍ତି; ଅନ୍ୟମାନେ ପ୍ରଭୁ/ମାଲିକର ଲକ୍ଷଣ ବହନକରି । ସ୍ୱଭାବ-ଚରିତ୍ରରେ ଯିଏ ପରାଧୀନ, ତାର ଭବିତବ୍ୟ ଅବଧାରିତ ଦାସତ୍ୱ । ମାତ୍ର ଜାତି (ରେସ୍)ରେ ଯିଏ ଗ୍ରୀକ୍, ଦାସତ୍ୱ ତା ପାଇଁ କଳଙ୍କ । ଦାସ ହୁଏ ନିମ୍ନଜାତିର ଲୋକ, କାହିଁକିନା, ବର୍ବରଜାତିର ତେଜବୀର୍ଯ୍ୟ ସଦାସର୍ବଦା ଅପେକ୍ଷାକୃତ ଊଣା (1255ᵃ 1330ᵃ) । ପୋଷମାନିଥିବା ପଶୁପକ୍ଷୀ ବଣଜଙ୍ଗଲ ଅପେକ୍ଷା ମଣିଷ ହେପାଜତ୍‌ରେ ଯଥେଷ୍ଟ ଭଲ ଓ ସୁରକ୍ଷିତ ରହନ୍ତି; ଠିକ୍ ସେମିତି, ହୀନମାନସ ଉର୍ଦ୍ଧ୍ୱ ଚେତାର ତତ୍ତ୍ୱାବଧାନରେ । କିନ୍ତୁ ଗ୍ରୀକ୍‌ସମାଜରେ ଅଧିକାଂଶ ଦାସ ଥିଲେ ଯୁଦ୍ଧବନ୍ଦୀ; ତେବେ କଣ ବୁଝିବାକୁ ହେବ ଯେ, ଯୋଉ ଶକ୍ତି ଦ୍ୱାରା ଯୁଦ୍ଧରେ ଜିଣିବା ସମ୍ଭବପର, ସେ ବାହୁବଳ ମଧ୍ୟ ମାନସିକ ଉତ୍କର୍ଷ ବା ଭର୍‌ଚିଉ ? ମାତ୍ର ଆରିଷ୍ଟୋଟ୍‌ଲ୍ ଦେଖାଇଚନ୍ତି ଅନ୍ୟ ଯୁକ୍ତି : ପ୍ରକୃତି ପରାଧୀନକରି ତିଆରିକରିଥିଲେ ସୁଦ୍ଧା, ବଶତା ସ୍ୱୀକାରକରିବାକୁ ଯଦି

ଅସମ୍ମତ ହୁଏ, ବଶତା ଆଦାୟ କରିବା ସକାଶେ ଯୁଦ୍ଧକରିବା ଉର୍ଦ୍ଧ୍ୱଚେତା ପକ୍ଷରେ ସ୍ୱାଭାବିକ (1256ᵇ) । ବିଜିତ ଲୋକଙ୍କୁ ଭୃତ୍ୟରେ ପରିଣତକରିବା ତେଣୁ ଗର୍ହିତ କର୍ମ ନୁହେଁ । ଗର୍ହିତ ନହୁଏ ଯଦି, ଚିଙ୍ଗିଜ୍‌ଖାଁରୁ ଜର୍ଜ ବୁସ୍ ପର୍ଯ୍ୟନ୍ତ କାହାରିକୁ ଯୁଦ୍ଧଖୋର ଦସ୍ୟୁ ବୋଲି ଚିହ୍ନିତକରିବା ଅନ୍ୟାୟ । କୋଉଦେଲେ ଦେଶ (ନେସନ୍) କେବେ ମାନିବନାହିଁ ଯେ ପ୍ରକୃତିର ଉଦ୍ଦେଶ୍ୟ, ଅନ୍ୟକେହି ବାହାରୁ ଆସି ତା ଉପରେ ପ୍ରଭୁତ୍ୱ କରିବ । ପ୍ରକୃତିର ଉଦ୍ଦେଶ୍ୟ ଜାଣିବାର ଏକମାତ୍ର ଉପାୟ ତେଣୁ ଯୁଦ୍ଧର ପରିଣାମ ଭଳି ଇନ୍ଦ୍ରିୟଗ୍ରାହ୍ୟ ସାକ୍ଷ୍ୟ । ସାକ୍ଷ୍ୟ ଯଦି ଆକ୍ରମଣକାରୀ ବିରୋଧରେ ଯାଏ, ଇଂରେଜ୍/ ଆମେରିକାନ୍ ହେବେ କଣ ଇରାକ୍‌ର କ୍ରୀତଦାସ ? କିନ୍ତୁ ଆରିଷ୍ଟୋଟ୍ଲଙ୍କ ଯୁକ୍ତି ପଛରେ କର୍ମରତ କଳ୍ପିତ ଏକ ପ୍ରକାର ନୈତିକତା । ସେ ବିବେଚନାରେ, ପ୍ରତ୍ୟେକ ବିଜୟୀ ଉର୍ଦ୍ଧ୍ୱଚେତା, ପ୍ରତ୍ୟେକ ବିଜିତ ହୀନମାନସ !

ବିବେକାନୁମୋଦିତ ନିଷ୍ପତ୍ତିକୁ ଥିୟଲଜି କହେ କାଜୁଇସ୍ଟ୍ରି । ଆରିଷ୍ଟୋଟ୍ଲ ବେପାରବଣିଜ ବିଷୟରେ ଯା କହିଚନ୍ତି, ପରବର୍ତ୍ତୀ କାଳରେ ସେ ବିଧାନ ଜନ୍ମଦେଇଚି ଗଭୀର କୂଟତର୍କକୁ, ମାନେ, କାଜୁଇସ୍ଟ୍ରିକୁ । କାହିଁକିନା, ତାଙ୍କ ଧାରଣା, ଦୁନିଆଯାକ ଜିନିଷକୁ ବ୍ୟବହାର କରାଯାଇପାରେ ଦୁଇଭାବରେ, ସ୍ୱାଭାବିକ ଓ ଅସ୍ୱାଭାବିକ । ଯେପରି, ଯିଏ ଜୋତା ପିନ୍ଧୁଚି, ଜୋତାର କରୁଚି ସ୍ୱାଭାବିକ ବ୍ୟବହାର; ମୁଚି କିନ୍ତୁ ଜୋତା ବିକୁଚି ବିନିମୟ ମୂଲ୍ୟ ସକାଶେ; କାମଟା ଅସ୍ୱାଭାବିକ । ଇଙ୍ଗିତ ହେଲା, ଆତ୍ମମର୍ଯ୍ୟାଦାକୁ ମୁଚି ଅବହେଳା କରିଚି, ଜୋତାବିକି ପେଟପୋଷିବା ଫଳରେ । ଖୁଚୁରା ବେପାର ସେମିତି ଧନ-ଅର୍ଜନର ଯଥାର୍ଥ ଉପାୟ ନୁହେଁ (1257ᵃ); ଧନଲାଭର ସ୍ୱାଭାବିକ ଉପାୟ ଘର ଓ ଜମିବାଡ଼ିର କୁଶଳ ପରିଚାଳନା । ସେଥିରୁ ଯା ମିଳିବ, ଅମାପ ଧନସମ୍ପଦ ନହେଲେ ସୁଦ୍ଧା, ସ୍ୱାଭାବିକ । ବାଣିଜ୍ୟରୁ ଲବ୍ଧ ସମ୍ପଦ ତେଣୁ ଘୃଣ୍ୟ ଉପାର୍ଜନ, ଉତ୍ସ ଯେହେତୁ ଅସ୍ୱାଭାବିକ:The most hated sort, and with the greatest reason, is usury, which makes gain out of money itself, and not form the natural object of it. For money was intended to be used in exchange, but not to increase at interest. .... Of all modes of getting wealth this is the most unnatural (1258) ।

ଏଇ ଯଦି ମୂଳ ପ୍ରତିଜ୍ଞା, କାର୍ଲ ମାର୍କ୍ସ, ଗ୍ରୀକ୍ ଦର୍ଶନବିଦ୍ୟାରେ ଯିଏ ଅର୍ଜନକରିଥିଲେ ଈର୍ଷଣୀୟ ପାରଦର୍ଶିତା, ଆରିଷ୍ଟୋଟ୍ଲଙ୍କ ଅଧିବିଦ୍ୟାକୁ କେମିତି ମୁଣ୍ଡ ତଳକୁ ଗୋଡ଼ ଉପରକୁ କରି ଛିଡ଼ାକରିଦେଇଚନ୍ତି, ବୁଝାପଡ଼ିବ ଇଉସ୍-ଭ୍ୟାଲିଉ

ଏକ୍ସଚେଞ୍ଜ୍‌ଭ୍ୟାଲିଉ ପ୍ରତ୍ୟୟରୁ ଯେମିତି, ମାନସିକ ଶ୍ରମ/ଶାରୀରିକ ଶ୍ରମ ଦ୍ୱାନ୍ଦ୍ୱିକତାରୁ ସେମିତି । ମହାମତି ଆରିଷ୍ଟୋଟ୍‌ଲ୍‌ଙ୍କ ବାଣିଜ୍ୟତତ୍ତ୍ୱକୁ ପୁଣି ଓଲଟାଇ ଦେଇଚନ୍ତି ଆର୍‌.ଏଚ୍‌.ଟଅନୀ, *Religion and the Rise of Capitalism* ଗ୍ରନ୍ଥରେ । ବିଶଦ ଆଲୋଚନା ଏଠି ଅପ୍ରାସଙ୍ଗିକ ।

'ଇଉଜୁରି' ମାନେ ସୁଧରେ ଟଙ୍କା ଲଗାଣ । ବିଶ୍ୱବ୍ୟାଙ୍କ୍ କି ଆନ୍ତର୍ଜାତିକ ମୁଦ୍ରାକୋଷ ବି କରୁଚି; ଗ୍ରୀକ୍‌ମାନଙ୍କ ସମୟରୁ ଆଜିଯାଏଁ ସମଗ୍ର ମାନବଜାତି ବିଭକ୍ତ ହୋଇଯାଇଚି ସେଥିପାଇଁ ଦୁଇ ଭିନ୍ନ ଶ୍ରେଣୀରେ : ଉତ୍ତମର୍ଣ ଆଉ ଅଧମର୍ଣ । ଅଧମର୍ଣ ସ୍ୱଭାବତଃ କଳନ୍ତରକୁ ବିରୋଧକରିବେ; କଳନ୍ତର ଦାବିକରିବେ ଉତ୍ତମର୍ଣ । ସେକାଳରେ କିନ୍ତୁ ଭୂମ୍ୟଧିକାରୀ ଥିଲେ ଅଧମର୍ଣ; ବୈଶ୍ୟ ଥିଲେ ଉତ୍ତମର୍ଣ । ଦାର୍ଶନିକ ( ବୁଦ୍ଧିଜୀବୀ), କଦାଚିତ୍ ବ୍ୟତିକ୍ରମ ସତ୍ତ୍ୱେ, ସମର୍ଥନକରିଚନ୍ତି ଆପଣା ଶ୍ରେଣୀସ୍ୱାର୍ଥକୁ । ଗ୍ରୀକ୍‌ଭାବୁକ ନିଜେ ଥିଲେ ଭୂମ୍ୟଧିକାରୀ କିମ୍ବା ଭୂମ୍ୟଧିକାରୀଙ୍କ ପୋଷ୍ୟ,ବିରୋଧକରିଚନ୍ତି କଳନ୍ତରକୁ । ମଧ୍ୟଯୁଗରେ ଖ୍ରୀଷ୍ଟାନ୍ ଯାଜକଶ୍ରେଣୀ ମଧ୍ୟ ବିରୋଧକରିଚି ସୁଧଗଣିବାକୁ, କାହିଁକିନା, ଗୀର୍ଜାର ଦଖଲରେ ଥିଲା ବିସ୍ତର ଭୂସମ୍ପତ୍ତି । ଯାଜକଭିତରୁ ଫିଲଜଫି ଆଡ଼କୁ ଯିଏ ମନବଳାଇଚି, ଆରିଷ୍ଟୋଟ୍‌ଲ୍‌ଙ୍କ ମତବାଦକୁ ସମର୍ଥନକରିଚି ଅକାତର । ହଜରତ୍ ମୁହମ୍ମଦ ନିଜେ ଥିଲେ ସୌଦାଗର; କିନ୍ତୁ ମକ୍କାର ବଣିକଶ୍ରେଣୀ ସାଙ୍ଗରେ ଲାଗିଥିଲା ଦୀର୍ଘକାଳୀନ ସଂଘର୍ଷ; ସୁଧରେ ଟଙ୍କାଲଗାଣକୁ ଘୋଷଣାକରିଚନ୍ତି ଅଧର୍ମ । କିନ୍ତୁ ଖ୍ରୀଷ୍ଟଧର୍ମ ହେଉ କି ଇସ୍‌ଲାମ୍, କଳନ୍ତରକୁ ଘୃଣ୍ୟ ମନେକରିବା ମୂଳରେ କାମକରିଚି ଇହୁଦୀବିଦ୍ୱେଷ, ଇଂରେଜୀରେ ଆ୍ୟାଣ୍ଟିସେମିଟିଜ୍ମ । ସାରା ଇଉରୋପରେ ବହୁକାଳଧରି ପୁଞ୍ଜିର ମାଲିକ ଥିଲେ ଇହୁଦୀ; ମଧ୍ୟପ୍ରାଚ୍ୟରେ ଜମିଜମା ହରାଇ ମହାଜନି କାରବାରରୁ ସଂସାର ଚଳାଇଚନ୍ତି, ଇଉରୋପର ନଗରାଞ୍ଚଳରେ । ଯାଜକ ହୁଅନ୍ତୁ କି ଜମିଦାର, ବେଳକୁ ବେଳ ମେଣ୍ଟବାନ୍ଧିଚନ୍ତି ତାଙ୍କ ବିରୋଧରେ, ଯାଜକ ଓ ଜମିଦାରଙ୍କ ପାରସ୍ପରିକ କଳହ ଯଦିଓ ତିକ୍ତହୋଇଚି କ୍ରମାଗତ । ଜ୍ୟୁ-ଙ୍କ ପ୍ରତି ବିଦ୍ୱେଷର କାରଣ, ଫସଲ କେବେ ମାଡ଼ଖାଇଗଲେ, କରଜଦିଅନ୍ତି ଉଭୟ ଯାଜକ ଓ ଜମିଦାରଙ୍କୁ ଏବଂ ଜମିମାଲିକ ଭାବନ୍ତି, ଶଳାଗୁଡ଼ାକ ବେଜାଏ କୃପଣ, ନହେଲେ ଏତେଟଙ୍କା ସଞ୍ଚିଲେ କେମିତି ? ଅବସ୍ଥା ବଦଳିଯାଇଚି ରିଫର୍ମେସନ୍ ବେଳକୁ ଅଧିକାଂଶ ପ୍ରୋଟେସ୍ଟ୍ୟାଣ୍ଟ୍ ଥିଲେ ଯେହେତୁ ପେସାରେ ବଣିକ; କରଜଦେଇ ସୁଧ ଅର୍ଜିବା ତାଙ୍କ କାରବାରର ଅଙ୍ଗବିଶେଷ । ଫଳରେ, କାଲ୍‌ଭିନ୍ ଅନୁମୋଦନ କରିଚନ୍ତି କଳନ୍ତର । ତାଙ୍କ ପଛକୁ କ୍ୟାଥଲିକ୍ ଚର୍ଚ୍ଚ । ପୁରୁଣା ବିଧିନିଷେଧକୁ ନୂଆ ଜମାନା ଏ ଭାବରେ କରିଦେଇଚି ବାତିଲ୍; ନୂଆ ଜମାନାରେ ଦାର୍ଶନିକଙ୍କ ପୃଷ୍ଠପୋଷକ ହୋଇଚି ବିଶ୍ୱବିଦ୍ୟାଳୟ; ବେତନ ବିନିମୟରେ କରିଚନ୍ତି

ଗବେଷଣା କି ଅଧ୍ୟାପନା । ଏକ୍ଷଣି ରାଜିହେଉନାହାନ୍ତି ଆରିଷ୍ଟୋଟ୍ଲଙ୍କ ସାଙ୍ଗରେ । ତତ୍ତ୍ୱର ଗତି ଯେହେତୁ ଭାତହାଣ୍ଡି ଆଡ଼କୁ ।

ପ୍ଲାଟୋଙ୍କ ଇଉଟୋପିଆକୁ ଆରିଷ୍ଟୋଟ୍ଲ ଆକ୍ରମଣକରିଚନ୍ତି ଅନ୍ୟ କାରଣରୁ । ପ୍ରଥମ କାରଣ, ରାଷ୍ଟ୍ରକୁ ଏତେବେଶି ସଂହତି ଦେଇଚନ୍ତି ପ୍ଲାଟୋ ଯେ ଶେଷକୁ ରାଷ୍ଟ୍ର ବି ହୋଇଯିବ ବ୍ୟକ୍ତିବିଶେଷ । ତା ପଛକୁ ବିରୋଧକରିଚନ୍ତି ପରିବାର ବିଲୋପ ପ୍ରସ୍ତାବକୁ, କାହିଁକିନା, ସେ ବିଲୋପ ଅସ୍ୱାଭାବିକ, ପ୍ରକୃତିର ପରିପନ୍ଥୀ । ପ୍ରାପ୍ତବୟସ୍କ ପୁରୁଷ ରାଜ୍ୟର ସକଳ ଶିଶୁକୁ ପୁତ୍ର ଜ୍ଞାନରେ ସ୍ନେହକରିବ, କିମ୍ୱା ଶିଶୁ ମଧ୍ୟ ଭାବିବେ ତାକୁ ପିତା, ଆଦୌ ପ୍ରତ୍ୟାଶିତ ନୁହେଁ । ଆପତ୍ତିର ପ୍ରଧାନ କାରଣ, ଯା ସର୍ବସାଧାରଣ, ତା କାହାରି ନୁହେଁ । ଏକ୍ଷଣି ଯେମିତି ରେଳଗାଡ଼ି କି ଡାକ୍ତର୍‌ଖାନା । ସରକାରୀ ପୁଅଠୁଁ ରକ୍ତସର୍ମ୍ପକର ପୁତୁରା ବରଂ ବେଶି ଆପଣା । ସମ୍ବନ୍ଧ ପ୍ରାକୃତିକ । ପ୍ଲାଟୋଙ୍କ ପରାମର୍ଶ ଗ୍ରହଣକଲେ ବାତ୍ସଲ୍ୟ ହୋଇଯାଏ ଭେଜାଲ । ପୁଣି, ଲାମ୍ପଟ୍ୟ ଯେହେତୁ ପାପ, ଯୌନସଂଯମ ନିଶ୍ଚୟ ଭଦ୍ରଚିତ । କିନ୍ତୁ ପ୍ଲାଟୋ-ପ୍ରଦର୍ଶିତ ସମାଜବ୍ୟସ୍ଥାରେ ଯୌନସଂଯମର ସ୍ଥାନ ନଗଣ୍ୟ, ଅସଂଯମ ପାଇଚି ବରଂ ଉତ୍ସାହ (1263ᵇ) । ଏବଂ ନାରୀ ଯଦି ସର୍ବସାଧାରଣ, ଗୃହସ୍ଥଳୀ ମଧ୍ୟ ହୋଇଯିବ ସର୍ବସାଧାରଣ । କମିଉନଜ୍ମ କଥା ଯିଏ କହୁ, ପରିବାର ବିଲୋପ ସହିତ ସାଧାରଣତଃ ଯୋଡ଼ିଥାଏ ସର୍ବସାଧାରଣ ଗୃହସ୍ଥାଳି, ସର୍ବସାଧାରଣ ରନ୍ଧାବଢ଼ା ଓ ଖିଆପିଆ, ପୁଅଝିଅଙ୍କ ସକାଶେ ସର୍ବସାଧାରଣ ଆଦରଯତ୍ନର ବ୍ୟବସ୍ଥା । କହିହେବ ମଠ, ବାବାଜି ଯୋଉଠି କୁମାର ନୁହେଁ କି ମାତାଜି କୁମାରୀ ନୁହେଁ । ପ୍ଲାଟୋଙ୍କ ପରିକଳ୍ପନାକୁ ବାସ୍ତବକରିବାକୁ ହେଲେ ଏଇଭଳି ବ୍ୟବସ୍ଥା ହେବ ପୂର୍ବସର୍ତ୍ତ । କିନ୍ତୁ ସମ୍ଭବପର ନହେବ କାହିଁକି ? ପ୍ଲାଟୋଙ୍କ କମିଉନିଜ୍ମ ରୁଷ୍ଟକରିଚି ଆରିଷ୍ଟୋଟ୍ଲଙ୍କୁ; ପ୍ରସ୍ତାବକରିଚନ୍ତି, ବିରୋଧ ଏଡ଼ାଇବାକୁ ହେଲେ, ପ୍ରତ୍ୟେକ ଲୋକ ନିଜ ଚରଖାରେ ତେଲ ଦେଉ; ଆଉ ସମ୍ପତ୍ତି ଉପରେ ରହୁ ବ୍ୟକ୍ତିଗତ ମାଲିକାନା । ମାତ୍ର ଦୟାଦାକ୍ଷିଣ୍ୟରେ ଲୋକଙ୍କୁ ଏଭଳି ଅନୁପ୍ରାଣିତ କରିବାକୁ ପଡ଼ିବ ଯେ, ଦରକାର ପଡ଼ିଲେ, ସର୍ବସାଧାରଣ ବ୍ୟବହାର ନିମନ୍ତେ ଧନସମ୍ପଦ ଛାଡ଼ିଦେବକୁ କେହି କୁଣ୍ଠିତ ହେହେବନାହିଁ । ଗାନ୍ଧି ଯେମିତି କରିଥିଲେ ଧନପତିମାନଙ୍କୁ ଦରିଦ୍ରର ଟ୍ରଷ୍ଟୀ । କିନ୍ତୁ ଆରିଷ୍ଟୋଟ୍ଲଙ୍କ ଯୁକ୍ତି ହେଲା, ପରାର୍ଥବାଦ ଓ ଔଦାର୍ଯ୍ୟ ମଣିଷର ନିହିତ ମହତ୍ତ୍ୱ; ବ୍ୟକ୍ତିଗତ ସମ୍ପତ୍ତି ଅନୁପସ୍ଥିତିରେ ସେ ମହତ୍ତ୍ୱ ବିକଚିତ ହୋଇପାରେନା । ସର୍ବୋପରି, ପ୍ଲାଟୋଙ୍କ ପ୍ରସ୍ତାବ ଯଦି ବାସ୍ତବିକ ହିତକର, ଆଗରୁ କାହିଁକି କୋଉହେଲେ ଦାର୍ଶନିକ ଭାବିନାହିଁ ଏକାଭଳି ? ପ୍ଲାଟୋଙ୍କ ସବୁକଥା ମୋ ମନକୁ ବି ପାଇନାହିଁ, ଆରିଷ୍ଟୋଟ୍ଲଙ୍କ ଯୁକ୍ତିଗୁଡ଼ାକୁ ପରତାଳକରିବା ଉତାରୁ କିନ୍ତୁ ଭାବୁଚି, ଇଉଟୋପିଆକୁ ସର୍ବତୋଭାବେ ଗ୍ରହଣକଲେ କ୍ଷତି କଣ ?

ଦାସପ୍ରଥା ସମ୍ବନ୍ଧରେ ଯା ମତିଗତି, ସ୍ପଷ୍ଟ ଜଣାପଡୁଚି, ପ୍ଲାଟୋଙ୍କ ଭଳି ନିଜେ ମଧ୍ଧ 'ଇକୋଆଲିଟି'ରେ ବିଶ୍ୱାସକରନ୍ତିନାହିଁ ଆରିଷ୍ଟୋଟ୍ଲ । ତେବେ ନାରୀ ଓ କ୍ରୀତଦାସର ଅଧୀନତା ଓ ବଳପୂର୍ବକ ଦମନକୁ , ତର୍କ ଖାତିର୍‌ରେ ମାନିନେଲେ ସୁଦ୍ଧା, ପ୍ରଶ୍ନ ରହିଯିବ : ସମ୍ବିଧାନ ଯାହାଙ୍କୁ 'ନାଗରିକ' ବୋଲି ସ୍ୱୀକାରକରିଚି, ରାଜନୀତିରେ ତାଙ୍କୁ ସମାନ ଅଧିକାର ଦେବାକୁ ଆରିଷ୍ଟୋଟ୍ଲ ଚାହାନ୍ତି କି ନାହିଁ ? ଜବାବରେ କହିଚନ୍ତି, ହଁ, କାହାରି କାହାରି ମତରେ ଏଭଳି ସମାନତା ବାଞ୍ଛନୀୟ, କାହିଁକିନା, ବିଦ୍ରୋହ-ବିପ୍ଲବର କାରଣ ବ୍ୟକ୍ତିଗତ ସମ୍ପତ୍ତିର ତାରତମ୍ୟ ଓ ମାଲିକାନା ଉପରେ ଆରୋପିତ ବିଧିନିଷେଧ । ମାତ୍ର ସମାଜରେ ଘଟୁଚି ଯେତେ ଅପରାଧ, ଅଧିକାଂଶ ମୂଳରେ ରହିଚି ସମ୍ପତ୍ତିର ଆଧିକ୍ୟ; ଅଭାବ ନୁହେଁ । ଖାଲି ଶୀତରୁ ରକ୍ଷାପାଇବାକୁ କେହି ଅନ୍ୟଲୋକ ଉପରେ ଅତ୍ୟାଚାର କରେନା; ଏପରି ରାଷ୍ଟ୍ର (ସରକାର) ତେଣୁ କାମ୍ୟ, ସମଗ୍ର ଜନଗୋଷ୍ଠୀର କଲ୍ୟାଣ ହେବ ଯାର ଆଭିମୁଖ୍ୟ । କିନ୍ତୁ ଶ୍ରେଣୀସ୍ୱାର୍ଥରେ ପରିଚାଳିତ ହେବନାହିଁ ଯୋଉ ଶାସନତନ୍ତ୍ର,ତା ତିନି ପ୍ରକାର : ରାଜତନ୍ତ୍ର, ଅଭିଜାତତନ୍ତ୍ର ଓ ସମ୍ବିଧାନ ଦ୍ୱାରା ନିର୍ବାଚିତ ସରକାର (ପଲିଟି) । ନାକରା ସରକାର ମଧ୍ଧ ତିନିରକମ : ଟିରାନି (ପ୍ରଜାପୀଡ଼ନ), ଅଲିଗାର୍କି (ସଂଖ୍ୟାଲଘୁର ଆଧିପତ୍ୟ) ଓ ଗଣତନ୍ତ୍ର । ତେବେ, ଉଭୟ ବର୍ଗ ମଝିରେ ରହିପାରେ ନାନାଦି ମିଶ୍ର ସଂସ୍କରଣ (ଫର୍ମ୍) । ରାଷ୍ଟ୍ରର ସ୍ୱଭାବ ଭଲ କି ନାକରା, ନିର୍ଭରକରୁନାହିଁ ଗଠନତନ୍ତ୍ର (ସମ୍ବିଧାନ) ଉପରେ; ନିର୍ଭରକରୁଚି ନୈତିକ ବିବେଚନା ଉପରେ; କ୍ଷମତା ଯିଏ ଭୋଗ ଓ ପ୍ରୟୋଗ କରିବେ, ତାଙ୍କରି ନୈତିକ ବୈଧତା ଉପରେ । ହୁଏତ ଆଂଶିକ ସତ୍ୟ, କାହିଁକିନା, ଅଭିଜାତତନ୍ତ୍ରରେ କ୍ଷମତାବାନ୍ ସାଧାରଣତଃ ସଦ୍‌ବଂଶଜ, ତେଣୁ ଶିଷ୍ଟାଚାରରେ ଶିକ୍ଷିତ; ଅଥଚ ଅଲିଗାର୍କୀରେ କ୍ଷମତା ପ୍ରୟୋଗକରନ୍ତି ଧନବନ୍ତ; ଧନ ଓ ବିଦ୍ୟାକୁ କିନ୍ତୁ ଆରିଷ୍ଟୋଟ୍ଲ ମନେକରନ୍ତିନାହିଁ ସମସତ୍ତ୍ୱ । । ପୁଣି, 'ଗୋଲଡେନ୍ ମିଇନ୍' ବା ଅତିବର୍ଜନର ଯେହେତୁ ପକ୍ଷପାତୀ, ମଧ୍ଧମେଧାକୁ ଭାବିଚନ୍ତି 'ଭର୍‌ଚିଉ' ଭଳି ଫଳପ୍ରସୂ : Mankind do not acquire or preserve virtue by the help of external goods, but external goods by the help of virtue, and happiness, whether consisting in pleasure or virtue, or both, is more often found with those who are most highly cultivated in their mind and in their character, and have only moderate share of external goods, than among those who possess external goods to a useless extent but are deficient in higher qualities (1323 a ଓ b) ।

ସର୍ବୋତ୍ତମର ରାଜତ୍ୱ ( ଅଭିଜାତର ଶାସନ) ଓ ସମ୍ପଦଶାଳୀର ଶାସନ (ଅଲିଗାର୍କୀ) ଭିତରେ ତେଣୁ ରହିଚି ଗୁଣଗତ ପାର୍ଥକ୍ୟ, କାହିଁକିନା, ଅଭିଜାତର ବିଷୟମ୍ପତ୍ତି ମଧ୍ୟଭଳିଆ (ମଡରେଟ୍) । ଅନୁରୂପ ପାର୍ଥକ୍ୟ ମଧ୍ୟ ଗଣତନ୍ତ୍ର ଓ ପଲିଟି ଭିତରେ ପରିଦୃଷ୍ଟ, କାହିଁକିନା, ନୈତିକ ପ୍ରଭେଦ ଛଡ଼ା ପଲିଟିରେ ରହିଚି ଅଲିଗାର୍କୀର କିଛି ଉପସର୍ଗ (1223 ଵ) । ମାତ୍ର ରାଜତନ୍ତ୍ର ଓ ଟିରାନି (ଅତ୍ୟାଚାର ଓ ପ୍ରଜାପୀଡ଼ନ ଯଥାକ୍ରମେ) ଭିତରେ ଏକମାତ୍ର ପ୍ରଭେଦ ନୈତିକ । ଅଥଚ ଆରିଷ୍ଟୋଟ୍ଲ ବିଶେଷ ଗୁରୁତ୍ୱ ଦେଇଚନ୍ତି ଶାସକବର୍ଗର ଆର୍ଥିକ ଅବସ୍ଥା ଉପରେ, କାହିଁକିନା, ଅଲିଗାର୍କୀରେ ଶାସକ ଯେହେତୁ ଧନୀ, ଗରିବଙ୍କ କଥା ଖିଆଲ ଥାଏନା ସାଧାରଣତଃ । ସେମିତି, ଗଣତନ୍ତ୍ରରେ ଶାସକ ଯେହେତୁ ଅଭାବୀ, ସମ୍ପଦଶାଳୀଙ୍କ କଥା ପାସୋରିଯାଆନ୍ତି ସାଧାରଣତଃ । ସେଥିପାଇଁ, ରାଜତନ୍ତ୍ର ଅଭିଜାତତନ୍ତ୍ର ଅପେକ୍ଷା ଭଲ, ଆଉ 'ପଲିଟି' ଠୁଁ ଭଲ ଅଭିଜାତର ରାଜତ୍ୱ । କିନ୍ତୁ ସାଧାରଣତଃ ଯିଏ ଶ୍ରେଷ୍ଠ, ଯଦି ଦୈବାତ୍ ଲିପ୍ତହୁଏ ଭ୍ରଷ୍ଟାଚାରରେ, ପ୍ରତିକାର ଦୁଃସାଧ୍ୟ । ଟିରାନି ତେଣୁ ଅଲିଗାର୍କୀ ତୁଳନାରେ ଖରାପ, ଆଉ ଅଲିଗାର୍କୀ ଗଣତନ୍ତ୍ର ତୁଳନାରେ । ଆରିଷ୍ଟୋଟ୍ଲଙ୍କ ଗଣତନ୍ତ୍ରପ୍ରୀତି ତେଣୁ ସର୍ତ୍ତସାପେକ୍ଷ, କାହିଁକିନା, ଅଧିକାଂଶ ଶାସନବ୍ୟବସ୍ଥା ଥିଲାନାହିଁ ନିଷ୍କଳଙ୍କ; ପ୍ରତିତୁଳନାରେ ଗଣତନ୍ତ୍ର ଥିଲା ଅନ୍ତତଃ ନିରାପଦ ।

ଏଭଳି ତତ୍ତ୍ୱପ୍ରକରଣ ମୂଳରେ କାମକରିଚି ଗଣତନ୍ତ୍ର ସମ୍ବନ୍ଧରେ ତତ୍କାଳୀନ ଗ୍ରୀକ୍‌ସମାଜର ମନୋଭଙ୍ଗୀ । ଆଜିକାଲିକା ଗଣତନ୍ତ୍ର ସହିତ ଗ୍ରୀକ୍-ଗଣତନ୍ତ୍ରର ରହିଚି ବିସ୍ତର ପ୍ରଭେଦ । ଯେପରି , ଆରିଷ୍ଟୋଟ୍ଲ ଦେଖିଚନ୍ତି ଅଲିଗାର୍କୀରେ ହିଁ ମ୍ୟାଜିଷ୍ଟ୍ରେଟ୍ ନିଯୁକ୍ତହୁଅନ୍ତି ନିର୍ବାଚନ ମାଧ୍ୟମରେ, କିନ୍ତୁ ଗଣତନ୍ତ୍ରରେ ସେମାନଙ୍କୁ ବଛାହୁଏ ଲଟେରି ଦ୍ୱାରା । ଯୋଉ ଗଣତନ୍ତ୍ରରେ ଜନମତର ପ୍ରାବଲ୍ୟ ସର୍ବାଧିକ, ବିଧାନସଭା ଥିଲା ସେଠି ଆଇନ୍‌କାନୁନ୍ ଉର୍ଦ୍ଧ୍ୱରେ । ନିଷ୍ପତ୍ତି ମଧ୍ୟ ଥିଲା ପ୍ରଚଳିତ ଆଇନ୍‌କାନୁନ୍‌ରୁ ସ୍ୱାଧୀନ । ଆଥେନ୍ସର କୋର୍ଟକଚେରୀରେ ବହୁସଂଖ୍ୟକ ନାଗରିକ ଏକାଠି ବସି ବିଚାରକରୁଥିଲେ ମାଲିମୋକଦ୍ଦମା, ଏବଂ ଲଟେରିରେ ବଛାହୋଇ ପାଳିକରି ହେଉଥିଲେ ବିଧାୟକ/ ବିଚାରକ । ଆଇନ୍‌ଜ୍ଞଙ୍କ ପରାମର୍ଶ ଦରକାର କରୁନଥିଲେ କି ଜୁରିସିଷ୍ଟେମ୍ ବି ଜଣାନଥିଲା ସେମାନଙ୍କୁ । ସେଥିପାଇଁ , ନିଜ ଦଳ ପ୍ରତି ପକ୍ଷପାତ ଥିଲା ଯେତେବେଶି ବକ୍ତୃତାବାଗୀଶଙ୍କ ବାଗ୍ମିତା ପ୍ରତି ପକ୍ଷପାତ ତଦପେକ୍ଷା ଊଣା ନୁହେଁ । ଗଣତନ୍ତ୍ରକୁ କଟାକ୍ଷକରିଚନ୍ତି ଯେତେବେଳେ, ବୁଝିବାକୁ ପଡ଼ିବ ଯେ, ଏଇ ଧରଣର ଅଘଟଣ ଉଦ୍ରେକ କରିଚି ଆରିଷ୍ଟୋଟ୍ଲଙ୍କ ଉଷ୍ମା ।

କିନ୍ତୁ ଅବଧାରିତଭାବେ ଯୋଉ ପ୍ରସଙ୍ଗ ଦାବିକରିଚି ବିସ୍ତାରିତ ସମୀକ୍ଷା, ତା ବିପ୍ଳବର ବିବିଧ କାରଣ । ଗ୍ରୀସ୍ ସେତେବେଳେ ଉଠୁଚି କି ପଡୁଚି, ଯତ୍ରତତ୍ର କୁହୁଳୁଚି ବିକ୍ଷୋଭ । ପ୍ରତିବାଦ ତେଣୁ ପୌନପୁନିକ । ସିଦ୍ଧାନ୍ତ ନିରୂପଣ ସକାଶେ ଆରିଷ୍ଟୋଟ୍ଲଙ୍କ ଅଭିଜ୍ଞତାର ସଞ୍ଚୟ ମଧ୍ୟ ଅକୁଳାଣ ନୁହେଁ । ମୁଖ୍ୟ କାରଣ ଅବଶ୍ୟ ଅଲିଗାର୍କଙ୍କ ସହିତ ଗଣତନ୍ତ୍ରବାଦୀଙ୍କ ବିବାଦ । କାହିଁକିନା, ଗଣତନ୍ତ୍ରରେ ବିଶ୍ୱାସୀ ଲୋକଙ୍କ ଦାବି ଥିଲା, ନାଗରିକ ସ୍ୱାଧୀନତା ଯେହେତୁ ରାଷ୍ଟ୍ରୀୟ କଟକଣାରୁ ମୁକ୍ତ, ସବୁବିଷୟରେ ସବୁଲୋକଙ୍କ ଅଧିକାର ହେବ ଅଭିନ୍ନ । ଅଲିଗାର୍କ କହୁଥିଲେ, ମନୁଷ୍ୟ ଭାବରେ ଅଭିନ୍ନ ହେଲେସୁଦ୍ଧା, ନିର୍ଦ୍ଦିଷ୍ଟ କିଛି ବିଷୟରେ ଲୋକଙ୍କ ଭିତରେ ରହିଚି ଉଚ୍ଚ-ନୀଚ ତାରତମ୍ୟ; କ୍ଷମତାର ବଣ୍ଟନ ତେଣୁ ଶତକଡ଼ା ଶହେ ସମାନ ହୋଇପାରେନା । ଇତରବିଶେଷ ରହିବା ଅବଶ୍ୟମ୍ଭାବୀ । ଉଭୟ ମତବାଦ ପଛରେ ଏକପ୍ରକାର ନ୍ୟାୟବିଚାର (ଜଷ୍ଟିସ୍) କାମକରୁଚି, ମାତ୍ର ସେ ନ୍ୟାୟକୁ ବିଶୁଦ୍ଧ କହିହେବ ନାହିଁ; ଏବଂ, Therefore both parties, whenever their share in the government does not accord with their preconceived ideas, stir up in rovolution (1301ª) । ତେବେ, ଗଣତନ୍ତ୍ରରେ ବିପ୍ଳବର ସମ୍ଭାବନା ଅପେକ୍ଷାକୃତ କମ୍, ଅନ୍ତତଃ ଅଲିଗାର୍କୀ ଭଳି ନୁହେଁ । ଅଲିଗାର୍କଙ୍କ ଭିତରେ ରହିଚି ପାରସ୍ପରିକ ସ୍ୱାର୍ଥଜନିତ ଦ୍ୱନ୍ଦ୍ୱ, ଏବଂ ସେଇ କାରଣରୁ ସବଳ ସଂଘାତ । ଲୋକଗୁଡ଼ାକ ସମ୍ପନ୍ନ ଓ ତେଜସ୍ୱୀ । କେତେଜାଗାରେ ତ ପ୍ରକାଶ୍ୟ ଘୋଷଣା କରିଚନ୍ତି : I will be enemy to the people, and will devise all the harm against them which I can । ଏବେ ବି ରାଜନୀତିରେ ଅଛନ୍ତି ଢେର୍ ପ୍ରତିକ୍ରିୟାଶୀଳ, ମାତ୍ର ଗ୍ରୀକ୍ ଅଲିଗାର୍କଙ୍କ ଭଳି ସ୍ପଷ୍ଟଭାଷୀ ନୁହନ୍ତି ଜଣେହେଲେ ।

ଆରିଷ୍ଟୋଟ୍ଲ ଦେଖିଚନ୍ତି, ବିପ୍ଳବକୁ ପ୍ରତିରୋଧ କରିପାରେ ତିନିରକମ କର୍ମଧାରା, (୧) ସର୍ବସାଧାରଣ ଶିକ୍ଷା ମାଧ୍ୟମରେ ଗୃହୀତ ଭାବାଦର୍ଶର ପ୍ରସାର, (୨) ଆଇନ୍‌କାନୁନ୍ ପ୍ରତି, ତୁଚ୍ଛ ବ୍ୟାପାରରେ ହେଲେସୁଦ୍ଧା, ଅନୁରକ୍ତି ଏବଂ (୩) ଆଇନ-ପ୍ରୟୋଗରେ ଓ ପ୍ରଶାସନରେ ନ୍ୟାୟପରାୟଣତା; equality according to proportion । କିନ୍ତୁ ନ୍ୟାୟପରାୟଣତା ବା ଜଷ୍ଟିସ୍ ଯଦି ଏକ ମୂଲ୍ୟବୋଧ (ଭର୍‌ଚିଉ), ବିଭିନ୍ନ ଅନୁପାତ ଓ ଆକାରପ୍ରକାର କଳ୍ପନାକରିବା ଦୁଷ୍କର । ଅଥଚ ସାମ୍ୟ ଧାରଣାଟା ନ୍ୟାୟପରାୟଣତା ଠାରୁ ଅଚ୍ଛେଦ୍ୟ । ଚରମ ଅର୍ଥରେ କିନ୍ତୁ ସାମ୍ୟକୁ ଗ୍ରହଣକରିବାକୁ ରାଜିନୁହନ୍ତି ଆରିଷ୍ଟୋଟ୍ଲ । ଭର୍‌ଚିଉକୁ ଓଜନକରିବା ହୁଏତ ବିବଦମାନ ଏକ ପ୍ରସ୍ତାବ, କାହିଁକିନା, ବାସ୍ତବ ରାଜନୀତିରେ ଅନୁପାତକୁ କେନ୍ଦ୍ରକରି ଲାଗିଯାଇପାରେ କନ୍ଦଳ । ପଇସାବାଲା ଲୋକଙ୍କୁ

'ମହାଜନ' କହିବା ପରି ଭର୍‌ଚିଉକୁ ଲୋକ ମାପିବେ, କାହାର କେତେ ରୋଜଗାର, ସେଇ ନିକିତିରେ । କିନ୍ତୁ ଆରିଷ୍ଟୋଟ୍ଲ କହିଚନ୍ତି,ଅଭିଜାତ (ସମ୍ଭ୍ରାନ୍ତ) ଓ ଅଲିଗାର୍କ (ବଣିକ) ଭିତରେ ରହିଚି ଗୁଣଗତ ପ୍ରଭେଦ । ସେ ପ୍ରଭେଦକୁ ମୁଣ୍ଡରେ ରଖି ବୈଶ୍ୟକୁ କ୍ଷମତାରୁ ଦୂରରେ ରଖିବାକୁ ହେଲେ, ଦରକାର ବର୍ଣ୍ଣାଶ୍ରମ ଭଳି ପୁରୁଷାନୁକ୍ରମରେ ଭେଦାଭେଦ । ଅଥଚ ଗଙ୍ଗାଉପତ୍ୟକାରେ ବୌଦ୍ଧମତ ପ୍ରସାର ଲାଭକରିବାବେଳେ ଦେଖାଯାଇଚି ବୈଶ୍ୟ, ଯିଏ ସମ୍ପଦଶାଳୀ କିନ୍ତୁ ସମ୍ଭ୍ରାନ୍ତ ନୁହେଁ, ଜାଗାପାଇଚନ୍ତି କ୍ଷମତା-ବିନ୍ୟାସରେ । ଅନ୍ୟଥା, ସଂଗଠିତ ଶ୍ରେଣୀ ହିସାବରେ ଅଲିଗାର୍କ ବି ହୋଇପାରିବେ ବିପ୍ଳବର ନିମିତ୍ତ । ଜମିଜମା ଯଦି ଧନାଗମର ନହୁଏ ଏକମାତ୍ର ଉତ୍ସ, ପୁରୁଷାନୁକ୍ରମରେ ଯିଏ ଅଭିଜାତ, କ୍ଷମତାକୁ ଜାବୁଡ଼ି ରହିପାରିବନାହିଁ ଦୀର୍ଘଦିନ । ଶେଷ ବିଚାରରେ ତେଣୁ, ସମାଜରେ ରହିଚି ଯେତେ ରକମ ଅସାମ୍ୟ କି ପାତରଅନ୍ତର, ତାର ମୂଳ କାରଣ ଏକମାତ୍ର ଉପାର୍ଜନରେ ଅସଙ୍ଗତି । ଗଣତନ୍ତ୍ର ସପକ୍ଷରେ ସେଭଳି ଅସଙ୍ଗତି ହୋଇପାରେ ଅନ୍ୟତମ ଯୁକ୍ତି, କାହିଁକିନା, ସମ୍ପତ୍ତିଗତ ଭେଦାଭେଦକୁ ଅକ୍ଷୁର୍ଣ୍ଣରଖି ଭର୍‌ଚିଉ ନିରିଖରେ ନ୍ୟାୟ-ଅନ୍ୟାୟ ଅନୁପାତ ମପାମପିକଲେ, ଗଣତନ୍ତ୍ର ଭୁଷୁଡ଼ିପଡ଼ିବା ଅବଶ୍ୟମ୍ଭାବୀ । ଅଲିଗାର୍କି ସପକ୍ଷରେ କୁହାଯାଇଚି, ଉପାର୍ଜନକ୍ଷମତା ଯେହେତୁ ଦକ୍ଷତା (ଭର୍‌ଚିଉ) ସହିତ ଆନୁପାତିକ, ସତ୍‌ଲୋକଙ୍କହିଁ କ୍ଷମତା ପାଇବା ସ୍ୱାଭାବିକ । ଆମ ଐତିହ୍ୟ ମଧ୍ୟ ଏ ମତବାଦକୁ ଅନୁମୋଦନ କରେ : ଧନ ଅର୍ଜନ୍ତୁ ଧର୍ମକରି / ଧର୍ମୁ ପ୍ରାପତ ନରହରି । ସର୍ବୋପରି, ଆରିଷ୍ଟୋଟ୍ଲଙ୍କ ଧାରଣା, ଭଲମଣିଷ ମାନେ ଲୋଭମୋହ-ବିବର୍ଜ୍ଜିତ ଅପ୍ରମତ୍ତ ସାଧୁପୁରୁଷ । ନିହାତି ଅନ୍ନ-ବସ୍ତ୍ର ବ୍ୟତୀତ ଅଧିକ କିଛି ତାଙ୍କର ଦରକାର ନାହିଁ । ଏ ଯୁକ୍ତି ମଧ୍ୟ 'ଦର୍ଶନ' ନୁହେଁ; ସଂସ୍କାର ପ୍ରସ୍ତାବ ହୁଏତ । ସମ୍ପୂର୍ଣ୍ଣ ସାମ୍ୟ ଛଡ଼ା ଯେକୌଣସି ନ୍ୟାୟବିଚାର, ଅସଲ ପ୍ରୟୋଗ ବେଳକୁ ଯୋଉ ଜିନିଷକୁ ପୁରସ୍କାର ଦେବ, ତାକୁ କେବେ କହିହେବନାହିଁ ଭର୍‌ଚିଉ ।

ଦମନପୀଡ଼ନ-ପ୍ରବଣ ଯୋଉ ଶାସନ, ଆରିଷ୍ଟୋଟ୍ଲ ତାକୁ କହିଚନ୍ତି ଟିରାନୀ; ଟିରାନୀ ସମ୍ବନ୍ଧରେ ଆଲୋଚନା ମଧ୍ୟ ଚିତ୍ତାକର୍ଷକ; ଯେପରି, ପ୍ରଜାପୀଡ଼କ କାମନାକରେ ଧନସମ୍ପଦ, ରଜା କିନ୍ତୁ କାମନାକରେ ମାନମର୍ଯ୍ୟାଦା । ଟାଇର୍‌ୟାଣ୍ଟ୍ ଯୋଉ ସଶସ୍ତ୍ର ଲୋକଙ୍କୁ କାମରେ ଲଗାଏ, ବିଦାକ ଭଡ଼ାଟିଆ ଗୁଣ୍ଡା; ରଜାଙ୍କ ସୈନ୍ୟବଳ କିନ୍ତୁ ପୁରାଦସ୍ତୁର ନାଗରିକ । ଟାଇର୍‌ୟାଣ୍ଟ୍ ଧନୀଲୋକଙ୍କ ବିରୋଧରେ ପ୍ରଜାଙ୍କୁ ମତାଏ, ମିଛ ପ୍ରଲୋଭନ ଦେଖାଇ କ୍ଷମତା ହାସଲକରେ; ରଜା ମିଥ୍ୟା ପ୍ରତିଶ୍ରୁତି ଦିଏନା କି କାହାରି ବିରୋଧରେ ପ୍ରଜାଙ୍କୁ ପ୍ରରୋଚିତ କରେନା । କହିସାରି ମ୍ୟାକିଆଭେଲି ଭଳି, ଟାଇର୍‌ୟାଣ୍ଟକୁ ଶୁଣାଇଚନ୍ତି ପ୍ରବଚନ, କେମିତି ଚଳିଲେ କ୍ଷମତା ରହିବ ଅତୁଟ :

(୧) ଅସାମାନ୍ୟ ପ୍ରତିଭାବାନ ଲୋକଙ୍କ ସନ୍ଧାନ ପାଇଲେ, ଗୁପ୍ତହତ୍ୟା କିମ୍ୱା ମିଥ୍ୟା ଅଭିଯୋଗ ବଳରେ ପ୍ରାଣଦଣ୍ଡଦେଇ ନିପାତକରିବ, ଆଉ ସେଭଳି ଲୋକଙ୍କୁ ଅଙ୍କୁରରୁ ଉତ୍ପାଟନକରିବାକୁ ହେବ ଯତ୍ନବାନ୍,(୨) ଏକାଠି ବସି ଖିଆପିଆ କିମ୍ୱା ଉଦ୍ଦେଶ୍ୟପ୍ରଣୋଦିତ ସଭା-ସଙ୍ଗଠନକୁ ତୁରନ୍ତ କରିଦେବ ନିଷିଦ୍ଧ; ଏପରିକି, ଯୋଉ ଶିକ୍ଷାଦୀକ୍ଷା ପ୍ରତିବାଦୀ କରିପାରେ ପ୍ରଜାକୁ , ତାକୁ ମଧ ଦମନକରିବ କଠୋର ହାତରେ, (୩) ସାହିତ୍ୟ/ଲେଖାଲେଖି ବିଷୟକ ସମସ୍ତ ଆଳାପ-ଆଲୋଚନା ଘୋଷିତ ହେବ ଅଚିରାତ୍ ବେଆଇନ୍, (୪) ପ୍ରଜାଙ୍କ ଭିତରେ ପାରସ୍ପରିକ ଘନିଷ୍ଠତା ମଧ ଗଣ୍ୟ ହେବ ଅକଲ୍ୟାଣ; ଲୋକଙ୍କୁ ତେଣୁ ବାଧକରାଯିବ, ଟାଇର୍‌ୟାଣ୍ଟର ପ୍ରାସାଦଦ୍ୱାର ସନ୍ନିକଟରେ ଖୋଲାଜାଗାରେ ବସବାସ କରିବାକୁ, (୫) ଗୁପ୍ତଚର ବୃତ୍ତିରେ ନିଯୁକ୍ତହେବେ ଯିଏ, ସିରାକ୍ୟୁଜ୍‌ର ଗୋଏନ୍ଦାଙ୍କ ଭଳି ହୋଇଥିବେ ଖାଲି ସ୍ତ୍ରୀଲୋକ, (୬) ଟାଇର୍‌ୟାଣ୍ଟ ଚେଷ୍ଟାକରିବ, ଲୋକଙ୍କ ଭିତରେ କଳହର ମଞ୍ଜି ବୁଣିଦେବାକୁ ଯଦ୍ୱାରା ପ୍ରଜା ରହିବେ ସଦାସର୍ବଦା ବ୍ୟତିବ୍ୟସ୍ତ, (୭) ଶ୍ରମସାଧ କାମରେ ବିହ୍ୱଳକରି ରଖିବ ପ୍ରଜାଙ୍କୁ, ଯେମିତି ରଖିଥିଲେ ଇଜିପ୍ଟ୍‌ର ରାଜା ପିରାମିଡ୍ ତୋଳିବାକାମରେ, (୮) କ୍ରୀତଦାସ ଓ ନାରୀଙ୍କୁ ଦେବ ଏପରି କ୍ଷମତା, ଯଦ୍ୱାରା ଗୁପ୍ତଚରବୃତ୍ତିକୁ ଆଦରିନେବେ ସହର୍ଷ, ଏବଂ (୯) ଆଳ ଖୋଜୁଥିବ ଯୁଦ୍ଧଲଗାଇଦେବାକୁ ,ଯଦ୍ୱାରା ଲୋକ ନିକାମିକା ହୋଇ ବସିରହିବାକୁ ତର ପାଇବେନାହିଁ, ଉପରନ୍ତୁ ସୁଯୋଗ ଖୋଜୁଥିବେ ଲଢ଼େଇରେ ନେବାକୁ ନେତୃତ୍ୱ (1313 a ଓ 1313 b)। ଇନ୍ଦିରାଗାନ୍ଧୀଙ୍କ ଇମରଜେନ୍ସି ଠାରୁ ବି ଭୟଙ୍କର !

ଆଜିର ପରିସ୍ଥିତିକୁ ଅନାଇଲେ, ଏ.ଅବଲୋକନର ବିଷଣ୍ଣତା ମନେହେବ ଯଥାର୍ଥ; ଉପସଂହାରରେ ଯଦିଓ କହିଚନ୍ତି, ଏଭଳି ଅନିଷ୍ଟ ନାହିଁ ଟାଇର୍‌ୟାଣ୍ଟ କରିବାକୁ କୁଣ୍ଠିତ କି ସଙ୍କୁଚିତ। ଟିରାନିକୁ ବଞ୍ଚାଇରଖିବାକୁ ଆଉଏକ ବାଟ ଅବଶ୍ୟ ଧର୍ମ ନାଁରେ ଦମନ। ଅର୍ଥାତ୍, ଟାଇର୍‌ୟାଣ୍ଟ ନିଜକୁ ପରମ ଧାର୍ମିକ ବୋଲି ଦେଖାଇହେବ ଏବଂ ଦମନପୀଡ଼ନକୁ ଅସହଣୀୟ ପର୍ଯ୍ୟାୟକୁ ନେଇଯିବନାହିଁ ଜମାରୁ। କିନ୍ତୁ ଦୁଇଟା ଭିତରୁ କୋଉ ଗୋଟାକ (କପଟ ଧାର୍ମିକତା ନା କ୍ଷମତାପ୍ରୟୋଗରେ ସଂଯମ) ଅଧିକ ଫଳପ୍ରସୂ, ପଦ୍ଧତିଗତ ସେଇ ପ୍ରଶ୍ନଟି ଅମୀମାଂସିତ ରଖିଦେଇଚନ୍ତି ଆରିଷ୍ଟୋଟ୍‌ଲ୍।

ମାତ୍ର ଦୀର୍ଘତର ବିତର୍କର ଅବତାରଣାକରି ବୁଝାଇବାକୁ ଚାହିଁଚନ୍ତି, ପରରାଜ୍ୟକୁ ଯୁଦ୍ଧରେ ପରାସ୍ତକରି ପଦାନତକରିବା ହୋଇପାରେନା କେବେ ଆଦର୍ଶରାଷ୍ଟ୍ରର ଲକ୍ଷ୍ୟ। ପରରାଜ୍ୟ ଆକ୍ରମଣରୁ କିନ୍ତୁ ଜନ୍ମନେଇଚି ସାମ୍ରାଜ୍ୟବାଦ, ତାଙ୍କ ନିଜ ଦୀବଦ୍ଦଶାରେ। ଖାଲି ଗୋଟିଏ ବ୍ୟତିକ୍ରମ ସକାଶେ ଜାଗା ଛାଡ଼ିଦେଇଚନ୍ତି ଆରିଷ୍ଟୋଟ୍‌ଲ୍।

ପରରାଜ୍ୟକୁ ଯୁଦ୍ଧରେ ପରାଭୂତକରିବା ଅକର୍ତ୍ତବ୍ୟ ହେଲେସୁଦ୍ଧା, ସ୍ୱଭାବତଃ ଯିଏ ଦାସ ( ନ୍ୟାଚରାଲ୍ ସ୍ଲେଭ୍), ସେମାନଙ୍କୁ ବଳପୂର୍ବକ ଜବତ୍‌କରିବା ଅନ୍ୟାୟ ନୁହେଁ । ଅଣଗ୍ରୀକ୍ (ବାର୍‌ବାରିଆନ୍)ଙ୍କୁ ଆକ୍ରମଣ ମଧ୍ୟ ଅବିଧେୟ ନୁହେଁ; ଅବିଧେୟ, ଯୁଦ୍ଧାଭିଯାନ ଯଦି ସଂଘଟିତ ହୁଏ ଗ୍ରୀକ୍‌ମାନଙ୍କ ବିରୋଧରେ, କାହିଁକିନା, କୋଉହେଲେ ଗ୍ରୀକ୍ ସ୍ୱଭାବତଃ 'ସ୍ଲେଭ୍' ନୁହେଁ। ଯୁଦ୍ଧ, ତେଣୁ ଉପାୟ ମାତ୍ର; ଉଦ୍ଦେଶ୍ୟ ନୁହେଁ। ଗ୍ରୀକ୍‌ନଗରୀ ଭୌଗୋଳିକ ଅବସ୍ଥାନରେ ଯଦି ବିଚ୍ଛିନ୍ନ ବା ଏକାନ୍ତ, ତା ବିରୋଧରେ ମଧ୍ୟ ଯୁଦ୍ଧଯାତ୍ରା ଅକର୍ତ୍ତବ୍ୟ ଏବଂ, ସେଥିପାଇଁ, ସେ ନଗରୀ ହୁଏତ ଏକ ସୁଖୀ ରାଜ୍ୟ । ମାତ୍ର ସୁଖୀହେବା ମାନେ ନିକମାହେବା ନୁହେଁ, ଭଗବାନ୍ କି ବିଶ୍ୱବ୍ରହ୍ମାଣ୍ଡ ଯେହେତୁ ଏକାନ୍ତ ଅବସ୍ଥାନରେ ସୁଦ୍ଧା ଅକର୍ମକ ନୁହେଁ । ପରରାଜ୍ୟ ଆକ୍ରମଣ ପ୍ରସଙ୍ଗ ଭଗବାନ୍‌ଙ୍କ ପ୍ରେକ୍ଷିତରେ ଅବଶ୍ୟ ଅବାନ୍ତର । ରାଷ୍ଟ୍ର ତେଣୁ ଯୋଉ ସୁଖସ୍ୱାଚ୍ଛନ୍ଦ୍ୟ ଖୋଜିବ, ପରରାଜ୍ୟ ଆକ୍ରମଣ କଦାଚିତ୍ ଦରକାର ହେଲେସୁଦ୍ଧା, ତା ପ୍ରକୃତ ଯୁଦ୍ଧ ନୁହେଁ, ଶାନ୍ତିସ୍ଥାପନ ସକାଶେ କର୍ମଯଜ୍ଞ ମାତ୍ର ।

ତା ହେଲେ, ବାଞ୍ଛିତ ରାଷ୍ଟ୍ର ଆକାରରେ କେତେ ବଡ଼ ବା ଛୋଟ ହେଲେ ହୋଇପାରିବ ଆଦର୍ଶ । ପ୍ରଶ୍ନ ଉଠୁଛି, କାହିଁକିନା, ଆରିଷ୍ଟୋଟ୍ଲ କହିଚନ୍ତି, ଲୋକସଂଖ୍ୟା ମାତ୍ରାଧିକ ହେଲେ, ଶୃଙ୍ଖଳାରକ୍ଷା ହେବ ବିଡ଼ମ୍ବନା; ଯୋଉ ନଗରୀର ବିସ୍ତାର ବେଶି, ଶାସନତନ୍ତ୍ର ସେଠି ଶିଥିଳ । ରାଷ୍ଟ୍ର ତେଣୁ ସେତିକି ବଡ଼ ହେବ, ସ୍ୱାବଲମ୍ବନ ଅର୍ଜନ ପାଇଁ ଯା ସହାୟକ; ମାତ୍ର ବିସ୍ତାରର ମାତ୍ରା ଏତେବେଶି ହେବନାହିଁ ଯେ ଆବଶ୍ୟକ ପଡ଼ିବ ସନ୍ଧିଧାନ । ଆକାର ବରଂ ଏପରି ସୀମିତ ରହିବ ଯେ ନାଗରିକ ହୋଇପାରିବେ ପରସ୍ପର ଅନ୍ତରଙ୍ଗ । ପରସ୍ପରର ସ୍ୱଭାବଚରିତ୍ର ବିଷୟରେ ସମ୍ୟକ ଧାରଣା ନ ଥିଲେ, ମାମଲାମୋକଦ୍ଦମା ନିଷ୍ପତ୍ତି କି ପ୍ରତିନିଧିନିର୍ବାଚନ ନିର୍ଦ୍ଦୋଷ ହୋଇପାରିବ ନାହିଁ । ସେଥିପାଇଁ, ଆୟତନ ଏଭଳି ହୋଇଥିବ ଯେ ନିକଟସ୍ଥ ପାହାଡ଼ଉପରୁ ନିରୀକ୍ଷଣକଲେ ଚତୁଃସୀମା କଳିହୋଇ ପାରିବ; ଅର୍ଥନୀତି ହୋଇପାରିବ ତେବେ ଆତ୍ମନିର୍ଭର । ଆମଦାନି-ରପ୍ତାନି ଚାଲିପାରିବ ନିର୍ବିରୋଧ ((1326ᵇ ଓ 1327ᵃ) । ଅର୍ଥନୀତି କିନ୍ତୁ ଏଠି ସ୍ୱବିରୋଧରେ ବିଦୀର୍ଣ୍ଣ, କାହିଁକିନା, ଆତ୍ମନିର୍ଭର ଯୋଉ ଆର୍ଥବ୍ୟବସ୍ଥା, ଆମଦାନି-ରପ୍ତାନି ହୋଇପାରେନା ସେଠି ଅନିବାର୍ଯ୍ୟ ।

ନାଗରିକତ୍ୱ ଅର୍ଜନପାଇଁ ଯୋଗ୍ୟତା ନିର୍ଣ୍ଣୟକଲାବେଳେ ରୋକ୍‌ଠୋକ୍ କହିଦେଇଚନ୍ତି, ଗତରଖଟି ପେଟପୋଷୁଥିବା ଲୋକ ନାଗରିକ ହେବାକୁ ଅଯୋଗ୍ୟ : Citizens should not lead the life of mechanics or tradesmen, for such a life is ignoble and inimical to virtue । ଗାଈଗୋରୁ କି

ଛେଳିମେଣ୍ଢା ପାଳିବା ବି ନାଗରିକତ୍ୱ ପକ୍ଷରେ ଅନ୍ତରାୟ,ସେଭଳି ବୃତ୍ତି ଯେହେତୁ ଦେଇପାରେନା ଆବଶ୍ୟକ ଅବସର । ନାଗରିକର ରହିବ ବ୍ୟକ୍ତିଗତ ସମ୍ପତ୍ତି, ମାତ୍ର କୃଷିକର୍ମ କି ପଶୁପାଳନ ହେବ କ୍ରୀତଦାସର କର୍ତ୍ତବ୍ୟ । ସେ ଦାସ କିନ୍ତୁ ଗ୍ରୀକ୍ ନୁହେଁ, ଭିନ୍ନ ଜାତିର ଲୋକ (1330ᵃ) । ଦାସ କାହିଁକି ଗ୍ରୀକ୍ ନୁହେଁ, କାରଣ ଏକେବାରେ ନୃତାତ୍ତ୍ୱିକ; ଯେପରି, ଉତ୍ତରଦିଗରେ ଯେତେ ଜାତିର ଅଧିବାସ, ସାଧାରଣତଃ ତେଜସ୍ୱୀ; ଦକ୍ଷିଣରେ ଅଛନ୍ତି ଯିଏ, ଚଲାକଚତୁର; ଦାସ ଆସିବ ତେଣୁ ଦକ୍ଷିଣଦିଗରୁ । ଦାସ ଯଦି ତେଜବୀର୍ଯ୍ୟ ଅର୍ଜନ ଆଡ଼କୁ ମନକରେ, ଚାଷବାସ ଗୋରୁମେଣ୍ଢା ସମ୍ଭାଳିବ ଫେର କିଏ ? ତାଛଡ଼ା, ଏକମାତ୍ର ଗ୍ରୀକ୍‌ଜାତି ହିଁ ଉଭୟ ଗୁଣର ଅଧିକାରୀ; ବୁଦ୍ଧିମାନ୍, ପୁଣି ତେଜିଆନ୍ । ବାର୍‌ବାରିଅନ୍‌ଙ୍କ ତୁଳନାରେ ଗ୍ରୀକ୍ ଶାସନବ୍ୟବସ୍ଥା ତେଣୁ ଉନ୍ନତ; ଏତେ ଉନ୍ନତ ଯେ ଗ୍ରୀକ୍‌ଜାତି ଯଦି ଏକଜୋଟ୍ ହୋଇପାରେ, ସସାଗରା ମେଦିନୀକୁ ଏକତ୍ର ଭୋଗଦଖଲ କରିବା ଦୁଃସାଧ୍ୟ ହେବନାହିଁ (1327ᵇ) । ଏଇଠି ପହଞ୍ଚି ଭାବିଥିଲି , ଥରେ ହେଲେସୁଦ୍ଧା ଆଲେକ୍‌ଜାନ୍ଦର୍‌ଙ୍କ ନାଁ ଉଚ୍ଚାରଣକରିବେ; ନିରାଶକଲେ ଆରିସ୍ତୋତ୍ଲ୍ ।

କିନ୍ତୁ ଆକାରରେ ସାନ ହେଉ କି ବଡ଼, କୌଣସି ରାଷ୍ଟ୍ର କେବେ ସମ୍ପୂର୍ଣ୍ଣ ଆତ୍ମନିର୍ଭର ହୋଇପାରେ କି ? ବିଂଶଶତକରେ ସୋଭିଏତ୍‌ସଂଘ ସେ ଚେଷ୍ଟାକରିଚି; ବିଫଳହୋଇଚି ଶେଷପର୍ଯ୍ୟନ୍ତ । ପଣ୍ୟବିନିମୟ ଯୋଉ ଆର୍ଥବ୍ୟବସ୍ଥାର ଚାଳିକାଶକ୍ତି, ଆନ୍ତର୍ଜାତିକ ଶ୍ରମବିଭାଜନକୁ ଜନ୍ମଦେବାକୁ ସେ ବ୍ୟବସ୍ଥା ବାଧ୍ୟ । ବାଧ୍ୟ ବୋଲି, ଶ୍ରମ ଓ ପୁଞ୍ଜି ମଧ୍ୟରେ ଗଢ଼ିଉଠିଚି ଦ୍ୱାନ୍ଦ୍ୱିକ ସମ୍ବନ୍ଧ । ସେହିପରି, ଆତ୍ମନିର୍ଭରତା ମାନେ ବୈଦେଶିକ ଆକ୍ରମଣକୁ ସବଳ ମୁକାବିଲାର ସାମର୍ଥ୍ୟ । ସେ ସାମର୍ଥ୍ୟ ଖାଲି ପ୍ରତିରୋଧକ୍ଷମ ନୁହେଁ, ରାଜ୍ୟର ସଂସ୍କୃତି ଯଦି ହୁଏ ଉଦାରମନସ୍କ, ସଂସ୍କୃତିର ସୁରକ୍ଷାକୁ ମଧ୍ୟ କରିପାରେ ନିଶ୍ଚିତ । ଦୁଇଟିଯାକ ଦାୟିତ୍ୱକୁ ନିର୍ଭୟରେ ପାଳନକରିବାକୁ ହେଲେ, ରାଷ୍ଟ୍ରର ଭୌଗୋଳିକ ବିସ୍ତାର ଅପେକ୍ଷା ବେଶି ଜରୁରୀ ରଣକୌଶଳ ଓ ଶିଳ୍ପୋନ୍ନତି । ଆଧୁନିକ ପୃଥିବୀରେ ଯୁକ୍ତରାଷ୍ଟ୍ର ଆମେରିକା ଛଡ଼ା ଆଉକୋଉଠି ଉଭୟ ଉପକରଣର ମଣିକାଞ୍ଚନ ସଂଯୋଗ ଘଟିପାରିନାହିଁ । ଆରିସ୍ତୋତ୍ଲଙ୍କ ବେଳକୁ ଗ୍ରୀସ୍ ଭୂଖଣ୍ଡରେ ନଗରରାଷ୍ଟ୍ରର ଘଟିସାରିଥିଲା ପତନ; ମ୍ୟାସିଡୋନିଆର ଆକ୍ରମଣ ସମ୍ମୁଖରେ ଆତ୍ମରକ୍ଷା ସମ୍ଭବପର ହୋଇନାହିଁ । ସାମ୍ରାଜ୍ୟବାଦକୁ ପ୍ରତିହତ କରିବାକୁ ଅକ୍ଷମ ଗୋଟାଏହେଲେ ନଗରରାଷ୍ଟ୍ରର ସ୍ୱାବଲମ୍ବନ, ଅନ୍ତତଃ ଆଂଶିକ ଭାବରେ ମଧ୍ୟ, ଅକଳ୍ପନୀୟ । ସେ ରାଷ୍ଟ୍ରର ଚୌହଦୀକୁ ପୁଣି ଜରିବ କରିହେବ ଡିପଉପରୁ । ଅବସ୍ଥା ଏପରି ସଙ୍ଗୀନ୍ ବୋଲି, ଇତିହାସ ପ୍ରବାହରେ ଗଢ଼ିଉଠିଚି ସ୍ୱାଧୀନ-ସାର୍ବଭୌମ ରାଷ୍ଟ୍ରମାନଙ୍କର ସୁଦ୍ଧା ସାମରିକ ମେଣ୍ଟ । କିନ୍ତୁ, *ପଲିଟିକ୍ସ* ଅସମାପ୍ତ ରଚନା; ଆଲେକ୍‌ଜାନ୍ଦର୍ ପରବର୍ତ୍ତୀ ଗ୍ରୀସ୍ ସେଥିପାଇଁ ନଜର୍‌ରେ ପଡ଼ିନାହିଁ ଆରିସ୍ତୋତ୍ଲଙ୍କର ।

ବହି ଶେଷହୋଇଚି ଶିକ୍ଷାବିଷୟକ ଅଭିମତକୁ ଅନ୍ତର୍ଭୁକ୍ତ କରିସାରି; ଶିକ୍ଷା ମାନେ ଶିଶୁଶିକ୍ଷା । ଶିଶୁଶିକ୍ଷା ଉପରେ ଜୋର୍‌ପଡ଼ିଚି, ଯେହେତୁ ପରିଣତହୋଇ ଶିଶୁ ହେବ ଆଦର୍ଶ ନାଗରିକ । ଭାରତରେ ବି ଏକ୍ଷଣି ପ୍ରାଥମିକ ଶିକ୍ଷାକୁ ଦିଆଯାଉଚି ସର୍ବାଧିକ ଗୁରୁତ୍ୱ । ଯୋଉ ବସୁଧା ଏବେ ଉଦାରୀକୃତ, ତା ସକାଶେ ଉପଯୁକ୍ତକରି ମୂଳରୁ ତିଆରି ନକଲେ, ପିଲାଗୁଡ଼ାକ ବଡ଼ହୋଇ ବିଦ୍ରୋହ କରିବେ । ଆରିଷ୍ଟୋଟ୍ଲଙ୍କ ପରିକଳ୍ପନାରୁ କିନ୍ତୁ ବାଦ୍‌ପଡ଼ିଚନ୍ତି କ୍ରୀତଦାସ । ଶିକ୍ଷା ହେବ ତାଙ୍କ ପାଇଁ 'ଭୋକେସନାଲ୍'; ଦକ୍ଷ ବଢ଼େଇ–କମାର–ରାନ୍ଧୁଣିଆ ଇତ୍ୟାଦି ହେବେ ସେମାନେ, ନାଗରିକ ହେବେନାହିଁ । ଯେହେତୁ ନଗର-ରାଜ୍ୟରେ ସୀମାବଦ୍ଧ, ଶିକ୍ଷାର ଧରଣଧାରଣ ନିର୍ଭରକରିବ ରାଜନୀତିର ଧରଣଧାରଣ ଉପରେ; ଅର୍ଥାତ୍, ଅଲିଗାର୍କୀ କି ଗଣତନ୍ତ୍ର ଯଦି ରାଷ୍ଟ୍ରର ଚରିତ୍ର, ଶିକ୍ଷାବ୍ୟବସ୍ଥା ମଧ୍ୟ ଅନୁସରଣ କରିବ ରାଜନୀତିକ ପାର୍ଥକ୍ୟକୁ । କାହିଁକିନା, ଆରିଷ୍ଟୋଟ୍ଲ ଧରିନେଇଚନ୍ତି, ରାଜନୀତିକ କ୍ଷମତାରେ ପ୍ରତ୍ୟେକ ନାଗରିକର ରହିବ ସମାନ ଅଂଶ ଓ ଅଧିକାର । ସେଥିପାଇଁ, ଏଭଳି କଥା ଶିଖିବେ, ଦରକାରବେଳେ ଯା କର୍ମରେ ଆସିବ । ଇତର ଅମାର୍ଜିତ ବିଷୟ ପ୍ରତି ଆଗ୍ରହୀ ହେବେନାହିଁ ; ଏଭଳି କଥା ଶିଖିବେନାହିଁ ଯା ଦିହକୁ ଅସୁନ୍ଦର କରେ, କିମ୍ବା ଖାଲି ଟଙ୍କା ରୋଜଗାର କରିବାକୁ ଦିଏ ପ୍ରରୋଚନା । ଶରୀରର୍ଚ୍ଚା କରିବେ ଅବଶ୍ୟ, ମାତ୍ର ଶରୀରଚର୍ଚ୍ଚାକୁ ପେସା/ଜୀବିକା କରିବେନାହିଁ । ଅଲିମ୍ପିକ୍ କ୍ରୀଡ଼ାପ୍ରତିଯୋଗିତାରେ ପିଲାଦିନେ ଯିଏ ଜିତନ୍ତି, ପରିଣତ ବୟସରେ ଘଟିଚି ତାଙ୍କ ସ୍ୱାସ୍ଥ୍ୟହାନୀ । ପିଲା ବରଂ ଶିଖିବେ ଚିତ୍ରାଙ୍କନ; ଅଙ୍ଗସୌଷ୍ଠବ ଓ ଆକୃତିର ସୌନ୍ଦର୍ଯ୍ୟ ତେବେ ଧରାପଡ଼ିବ ଲୋକନ ଓ ଅବଲୋକନରେ । ସେହିପରି, ଭାସ୍କର୍ଯ୍ୟ ବା ଚାରୁକଳାର ଗୁଣାଗୁଣବିଚାର ମଧ୍ୟ ସ୍ଥାନପାଇବ ପାଠ୍ୟକ୍ରମରେ; ସୌନ୍ଦର୍ଯ୍ୟବୋଧ ଭିତରେ ଯେ ନିହିତ ଅଛି ନୈତିକତା,କୋମଳମତି ବାଳକ ମନରେ ସେ ଧାରଣା ଗୁନ୍ଥିହୋଇଯିବ ତାହେଲେ । ସଙ୍ଗୀତ ପ୍ରତି ଅନୁରାଗ ମଧ୍ୟ ଶିକ୍ଷଣୀୟ ବିଷୟ; ଗାଇବା ବଜାଇବା ଶିଖିବେ, ସମର୍ଥହେବେ ତେବେ ସଙ୍ଗୀତର ଗୁଣାଗୁଣ ବୁଝିବାକୁ; ମାତ୍ର ଦକ୍ଷତା ଅର୍ଜନକରିବାକୁ ମନକରିବେନାହିଁ, କାହିଁକିନା, ସ୍ୱାଧୀନ ନାଗରିକ ଗୀତଗାଏନା କି ବାଜା ବଜାଏନା ପ୍ରକାଶ୍ୟରେ, ଅବଶ୍ୟ ମଦଖାଇ ମାତାଲ ଯଦି ନହୁଏ । କାର୍ଯ୍ୟକର ଏ ବିଦ୍ୟା ସାଙ୍ଗକୁ ଛାତ୍ର ଅର୍ଜନକରିବେ ପଢ଼ିବା ଓ ଲେଖିବାରେ ଦକ୍ଷତା ଯଦିଓ ଶିକ୍ଷାର ଅସଲ ଉଦେଶ୍ୟ କାହାକୁ ଖାଲି କାର୍ଯ୍ୟୋପଯୋଗୀ କରିବା ନୁହେଁ; ଶିକ୍ଷାର ଉଦ୍ଦେଶ୍ୟ ଭର୍‌ଚିଉ । 'ଭର୍‌ଚିଉ' କହିଲେ କଣ ବୁଝନ୍ତି, ଫିଟାଇ କହିଚନ୍ତି ଆରିଷ୍ଟୋଟ୍ଲ *ଏଥିକ୍ସ* ଗ୍ରନ୍ଥରେ । ପୁନରୁଲ୍ଲେଖ ନିଷ୍ପ୍ରୟୋଜନ ।

'କଲ୍‌ଚର୍' କହିଲେ ବୁଝୁନ୍ତି ପାଠଶାଠ, ଗୀତବାଦ୍ୟ,ଚାରୁ ଓ କାରୁକଳା । ଦୀର୍ଘକାଳ ଅନୁଶୀଳନ ବଳରେ ଏ ଉତ୍କର୍ଷ ଆୟତ୍ତ କରିଚନ୍ତି ଯିଏ, ସାଧାରଣତଃ ଅଳ୍ପସଂଖ୍ୟକ ଅଭିଜାତ । ତାଙ୍କ ସାମାଜିକ ପରିଚୟ 'ଭଦ୍ରଲୋକ'; ଅବଶିଷ୍ଟ 'ଛୋଟଲୋକ' କିମ୍ବା 'ବଜାରୀ' । ଆରିଷ୍ଟୋଟ୍‌ଲ୍‌ଙ୍କ କଳ୍ପିତ ରାଷ୍ଟ୍ରର ଉଦ୍ଦେଶ୍ୟ ଏଇଭଳି ଏକ ଅଭିଜାତ ଶ୍ରେଣୀର ଅଭ୍ୟୁଦୟ ଓ ବିକାଶ, ସଂସ୍କୃତିସମ୍ପନ୍ନ, ଶିଷ୍ଟାଚାରରେ ଶିକ୍ଷିତ, ସୁଶୀଳ । ଶ୍ରମଜୀବୀର ପ୍ରତିପକ୍ଷ ସୁଶୀଳ ଏଇ ବୁଦ୍ଧିଜୀବୀ । ମେଧା ଓ ସଂସ୍କୃତିର ଏ ମେଳବନ୍ଧନ ଚରମ ଉତ୍କର୍ଷ ଲାଭକରିଚି ପେରିକ୍ଲିଜ୍‌ଙ୍କ ଅମଳ ଆଥେନ୍ସରେ; ଅବଶ୍ୟ ସମ୍ପନ୍ନ ଗୃହସ୍ଥଙ୍କ ଭିତରେ; ସର୍ବସାଧାରଣ ରହିଚନ୍ତି ଭବ୍ୟମଣ୍ଡଳ ସୀମାନ୍ତରେ ଚିରକାଳ । ଦୂରତ୍ୱ ଘୁଞ୍ଚିଯିବାକୁ ଆରମ୍ଭକରିଚି ପେରିକ୍ଲିଜ୍‌ଙ୍କ ଜମାନାର ଅନ୍ତିମ ପର୍ବରେ, ଏବଂ ତଥାକଥିତ ସଂସ୍କୃତିରୁ ବଞ୍ଚିତ ଇତରଜନ ପେରିକ୍ଲିଜ୍‌ଙ୍କ ପାରିଷଦବର୍ଗକୁ ଆକ୍ରମଣକରିଚନ୍ତି ସଦର୍ପ । ପେରିକ୍ଲିଜ୍‌ଙ୍କ ଅନୁରକ୍ତ ବାଧହୋଇଚନ୍ତି ସମ୍ପଦଶାଳୀଙ୍କ ସୁବିଧା-ସୁଯୋଗକୁ ଓଗାଳି ରଖିବାକୁ; ମାତ୍ର ପ୍ରତିରୋଧ ଖାଡ଼ାକରିଚନ୍ତି ଯୋଉ ଉପାୟରେ, ଶିଷ୍ଟସୁଲଭ କି ସଂସ୍କୃତିପ୍ରେରିତ ନୁହେଁ । ଯେପରି, ବିଶ୍ୱାସଘାତକତା ଗୁପ୍ତହତ୍ୟା ସ୍ୱୈରାଚାର । ତେବେ ସୋକ୍ରତିଜ୍ ମୃତ୍ୟୁଦଣ୍ଡ ପାଇବା ଉତାରୁ, ଆଥେନୀୟ ଗଣତନ୍ତ୍ରର ଅନ୍ଧବିଦ୍ୱେଷ ପ୍ରଶମିତହୋଇଚି ଯଥେଷ୍ଟ । ମାତ୍ର ରାଜନୀତିକ କ୍ଷମତା ଅପସୃତ ହୋଇଯାଇଚି ଅନ୍ୟତ୍ର । ତଥାପି ଆଥେନ୍ସ ରହିଚି ପ୍ରାଚୀନ ସଂସ୍କୃତିର ପ୍ରାଣକେନ୍ଦ୍ର । ପରବର୍ତ୍ତୀ କାଳରେ କ୍ଷମତା ଓ ସଂସ୍କୃତି ବିଚ୍ଛିନ୍ନ ହୋଇଯାଇଚି ପାରସ୍ପରିକ ସଂସ୍ରବରୁ; କ୍ଷମତା ରହିଚି କର୍କଶସ୍ୱଭାବ ସୈନ୍ୟସାମନ୍ତଙ୍କ ହାତରେ, କଲ୍‌ଚର୍‌କୁ ଧରିବସିଚନ୍ତି ନିର୍ବୀର୍ଯ୍ୟ ଗ୍ରୀକ୍, ବହୁକ୍ଷେତ୍ରରେ ପୂର୍ବତନ କ୍ରୀତଦାସ ।

ଭଦ୍ରଲୋକ ଓ ଛୋଟଲୋକଙ୍କ ବିଭାଜନ, ଅର୍ଥାତ୍ କଲ୍‌ଚର୍ ଓ ପଲିଟିକ୍ସର ମେରୁକରଣ, ଅବ୍ୟାହତ ରହିଚି ସିଶରୋଃ (ଖ୍ରୀଷ୍ଟପୂର୍ବ ୧୦୬-୪୩)ଙ୍କ ପର୍ଯ୍ୟନ୍ତ ମାର୍କ୍ ଅ୍ୟାଣ୍ଟନିଙ୍କୁ ବିରୋଧକରିବା ଯୋଗୁଁ ରୋମାନ୍ ସୈନ୍ୟଙ୍କ ହାତରେ ଯିଏ ପ୍ରାଣ ହରାଇଥିଲେ । ଏପରିକି, ମାର୍କସ୍ ଅଉରେଲିଅସ୍ (ରୋମାନ୍ ସମ୍ରାଟ୍ ,୧୨୬୧-୮୦)ଙ୍କ ତିରୋଧାନ ସତ୍ତ୍ୱେ ଏ ମେରୁକରଣ ସ୍ଥଗିତ ହୋଇନାହିଁ । କିନ୍ତୁ ବାର୍‌ବାରିଆନ୍ ଆକ୍ରମଣ ଉତାରୁ, ଉତ୍ତରାଞ୍ଚଳର ଅଣଗ୍ରୀକ୍ ପାଲଟିଯାଇଚନ୍ତି ଭଦ୍ରଲୋକ; କଲ୍‌ଚର୍‌କୁ କିନ୍ତୁ ଦଖଲକରିଚନ୍ତି ଦକ୍ଷିଣାଞ୍ଚଳର ଅଣଗ୍ରୀକ୍, କାହିଁକିନା, ଧୂର୍ତ୍ତ ଏଇ ବହିରାଗତ ଧରିଚନ୍ତି ଧର୍ମଯାଜକ ବୃତ୍ତି । ଏ ଅବସ୍ଥା ବହାଲ୍ ରହିଚି ରନେଇସନ୍ସ (୧୪ରୁ ୧୬ ଶତକ) ପର୍ଯ୍ୟନ୍ତ । ଧର୍ମାନଭିଜ୍ଞ ସାଧାରଣଲୋକ ସେଇ ଅବସରରେ ଆହରଣକରିଚନ୍ତି 'ସଂସ୍କୃତି' । କିନ୍ତୁ ରନେଇସନ୍ସ ସମୟରୁ 'ଭଦ୍ରଲୋକ ରାଜତ୍ୱ' ଭଳି ଆଇଡିଆ ମଧ ବିସ୍ତାର

ଲାଭକରିଚି ଉତ୍ତରୋତ୍ତର; ତାର ଶ୍ରେଷ୍ଠ ନିଦର୍ଶନ ଅଷ୍ଟାଦଶ ଶତକର ଇଉରୋପ୍ । ଆଇଡିଆକୁ ବାତିଲ୍‌କରିଦେଇଚି କିନ୍ତୁ ଫରାସୀ ବିପ୍ଳବରୁ ନିଃସୃତ ମୁକ୍ତିଚେତନା । ପେରିକ୍ଲିଜ୍‌ଙ୍କ ସମର୍ଥକ ଆପଣା ସୁବିଧାସୁଯୋଗକୁ ଓଗାଳିବାକୁ ଯାଇ କୁଳ-ଶୀଳ ହରାଇଚନ୍ତି ଯେମିତି, ଅଷ୍ଟାଦଶ ଶତକର ସାମନ୍ତତନ୍ତ୍ର ଭାଙ୍ଗିପଡ଼ିଚି ସେମିତି ଶିକ୍ଷପ୍ରସାର ଓ ଉନ୍ନତ ପ୍ରଯୁକ୍ତିକୁ ଆତ୍ମସାତ୍ କରିନପାରି । ପାରମ୍ପରିକ ଜୀବନଧାରା (ସଂସ୍କୃତି) ହାରିଯାଇଚି ତେଣୁ ବିଜ୍ଞାନ ଓ ପ୍ରଯୁକ୍ତି ପାଖରୁ । ପ୍ରଯୁକ୍ତିଗତ ବିପ୍ଳବ ମଧ୍ୟ ବାଧ୍ୟକରିଚି ସାକ୍ଷରତାର ଅଭୂତପୂର୍ବ ବିସ୍ତାର; ମାତ୍ର ସାଧାରଣଲୋକ ଲେଖିବା-ପଢ଼ିବା ଅଧିକାର ଅର୍ଜନକଲେ ସୁଦ୍ଧା, ସାକ୍ଷରତା ଯେହେତୁ ଶିକ୍ଷା ନୁହେଁ, କଲ୍‌ଚର୍ ରହିଚି ବାମନ ପାଇଁ ଚନ୍ଦ୍ର ସ୍ପର୍ଶର ଅଭିଳାଷ । ତାଙ୍କରି ଭିତରୁ ବାହାରିଚନ୍ତି ଯୋଉ ପଲିଟିସିଆନ୍, ଗ୍ରୀକ୍‌ଭାଷାରେ ତାଙ୍କ ପରିଚୟ ଡ୍ରେମାଗଗ୍ । ସଂସ୍କୃତିସମ୍ପନ୍ନ ଭଦ୍ରଲୋକର ସାମାଜିକ ଆଧିପତ୍ୟ ଲୁପ୍ତହୋଇଚି ବୋଲି କୁମ୍ଭୀରାଶ୍ରୁ ତର୍ପଣକରି ଲାଭନାହିଁ,କାହିଁକିନା, ଆରିଷ୍ଟୋଟ୍ଲଙ୍କ ଭାବଜଗତ ମଧ୍ୟ ବନ୍ଧନକରୁଚି ସେଇ ବୈପରୀତ୍ୟର ଉତ୍ତେଜନା ।

ଏକାଳର ବିଦ୍ୱାନ୍ କହୁଚନ୍ତି, ରାଷ୍ଟ୍ରର ଚରିତ୍ର କିମ୍ବା କର୍ତ୍ତବ୍ୟ-ଭିତ୍ତି, ଅନୁସନ୍ଧାନର ବିଷୟ ନୁହେଁ, କାହିଁକିନା, ଆରିଷ୍ଟୋଟ୍ଲଙ୍କ *ପଲିଟିକ୍ସ* ଅଧିବିଦ୍ୟା ଓ ନୀତିସୂତ୍ରର ସଂପ୍ରସାରଣ ମାତ୍ର । ରାଜନୀତିରେ 'ନୈତିକତା'ର ଭୂମିକା କେବଳ ଅନୁସଂଧାନର ବିଷୟ । ଏବଂ ନୈତିକତା ଯେହେତୁ ଫଳିତବିଦ୍ୟା (ଦିବ୍ୟଜୀବନରେ ପହଞ୍ଚିବାର ଉପାୟ), ମଣିଷର ସହଜାତ ସ୍ୱଭାବକୁ ଲକ୍ଷ୍ୟକରି ବୁଝିଚନ୍ତି, କ୍ଷମତା-ରାଜନୀତି ପ୍ରେକ୍ଷିତରେ ନୈତିକତାକୁ ସମୀକ୍ଷା ନକଲେ, ଦିବ୍ୟଜୀବନର ସମ୍ଭାବନା ରହିଯିବ ସଂକୀର୍ଣ୍ଣ । ରାଜନୀତି ତେଣୁ ଆନୁଷଙ୍ଗିକ । ଆନୁଷଙ୍ଗିକ, କାହିଁକିନା, ବ୍ୟକ୍ତିବିଶେଷ ପକାଶେ ରାଷ୍ଟ୍ର ଏକ ଇତର ସତ୍ତା; ବ୍ୟକ୍ତିର ଆନୁଗତ୍ୟ ଆଦାୟକରେ ରାଷ୍ଟ୍ର ଯେହେତୁ ବଳପୂର୍ବକ । ବଳପ୍ରୟୋଗ ବା ବାଧ୍ୟବାଧକତା ଯେ ନୈତିକ ପ୍ରୟୋଜନ, ଆଇଡିଆଟାକୁ ତତ୍ତ୍ୱର ସ୍ୱିକୃତା ଦେବା ଆରିଷ୍ଟୋଟ୍ଲଙ୍କ ଅସଲ ଉଦ୍ଦେଶ୍ୟ । ରାଷ୍ଟ୍ର ଯେହେତୁ ଏକ ଜାତିଗୋଷ୍ଠୀ ବା କମିଉନିଟି, କମିଉନିଟି ବାହାରେ ଜୀବନଧରି କେହି ବଞ୍ଚିପାରେନା । ସେଥିପାଇଁ, ମାନବପ୍ରଜାତିର ଯୋଉ ପାରସ୍ପରିକ ବନ୍ଧନ ଆଦିମକାଳରୁ ଅତୁଟ ରହିଚି, ତା ଭିତରୁ ବାଛିଚନ୍ତି ଦୁଇଟି ଅପରିହାର୍ଯ୍ୟ ଉପାଦାନ, ଯେପରି : (୧) ନାରୀ-ପୁରୁଷ ମିଳନ, ଯା ନଥିଲେ, ମଣିଷ ନିଜକୁ ପୁନରୁତ୍ପନ୍ନ କରିପାରେନା, (୨) ପୁନରୁତ୍ପନ୍ନ ପ୍ରଜାତିକୁ ବଞ୍ଚାଇରଖିବାକୁ ପ୍ରଭୁ-ଭୃତ୍ୟ ଦ୍ୱାନ୍ଦିକତା । ଆଦିମତମ ଏଇ ପାରସ୍ପରିକ ସମ୍ପର୍କରୁ ଉଠିଆସିଚି ଗୃହସ୍ଥାଳି, *Oikia* । ସ୍ୱାଭାବିକଭାବେ ଗୃହସ୍ଥାଳିରୁ ଗ୍ରାମ, *Kome* । ସ୍ୱାଭାବିକ, କାହିଁକିନା, ଜୀବନଧାରଣର ନିତ୍ୟାବଶ୍ୟକ ମେଣ୍ଟାଇବାକୁ ଯେମିତି, ହିଂସ୍ରପଶୁର ଆକ୍ରମଣରୁ

ଆତ୍ମରକ୍ଷା ପାଇଁ ସେମିତି, ସଂଗଠିତ ସାମୂହିକ ଜୀବନଯାତ୍ରାର ବିକଳ୍ପ ନଥିଲା । ପରିବାର ଓ ଜନପଦ ଯେହେତୁ ପ୍ରୟୋଜନର ପରିଣାମ, ଆରିଷ୍ଟୋଟ୍ଲଙ୍କ ଦୃଷ୍ଟିରେ 'ନ୍ୟାଚରାଲ୍' । ମାତ୍ର, ଯାଯାବର ମଧ୍ୟ ବିନା ଗୃହସ୍ଥାଳି ଓ ବିନା ସ୍ଥାୟୀବସତି ସତ୍ତ୍ୱେ ପିଲାଛୁଆ ଜନ୍ମକରେ ଏବଂ ବିନା ଚାକରବାକରରେ ଯୋଗାଡ଼କରେ ନିତ୍ୟାବଶ୍ୟକ ରସଦ । ସାମୂହିକ ଜୀବନନିର୍ବାହ ଓ ନାରୀ-ପୁରୁଷ ସଙ୍ଗମକୁ 'ନ୍ୟାଚରାଲ୍' ଭାବିଲେ ସୁଦ୍ଧା, ଯେହେତୁ ସେବକ-ସେବ୍ୟ ସମ୍ପର୍କକୁ 'ନ୍ୟାଚରାଲ୍' କହିବା ଯୁକ୍ତିଯୁକ୍ତ ନୁହେଁ, କ୍ରୀତଦାସ (ସ୍ଲେଭ୍) ଯେହେତୁ ପରିଣତହୋଇଛି ଗ୍ରୀକ୍‌ସମାଜର ବ୍ୟକ୍ତିଗତ ସମ୍ପତ୍ତି । ବ୍ୟକ୍ତିଗତ ସମ୍ପତ୍ତି ଏକ ପାରମ୍ପରିକ ଅନୁଷ୍ଠାନ; 'ନ୍ୟାଚରାଲ୍' ହୋଇପାରେନା, କାହିଁକିନା, ସାମୂହିକ ଜୀବନ ପକ୍ଷରେ ସମ୍ପତ୍ତିଗତ ତାରତମ୍ୟ ବିବଦମାନ ଏକ ସମସ୍ୟା । ସ୍ୱାଭାବିକତା ଧାରଣା ଆରିଷ୍ଟୋଟ୍ଲ ପାଇଚନ୍ତି ପ୍ରାକୃତିକ ଜଗତରୁ; ଯେପରି, ମଞ୍ଜିରୁ ପୁଆ/ପୁଆରୁ ଗଛ/ଗଛରୁ ମହୀରୁହ । ସେ ବାଟରେ କିନ୍ତୁ ପରିବାରରୁ ଗ୍ରାମ, ଗ୍ରାମରୁ କମିଉନିଟି, କମିଉନିଟିରୁ ରାଷ୍ଟ୍ର ତିଆରିହୁଏନା; କି ପ୍ରାଣୀବିଜ୍ଞାନ ବା ଶରୀରତତ୍ତ୍ୱ ନିୟମରେ ମଧ୍ୟ ସମାଜର ବିବର୍ତ୍ତନ ଘଟେନା । ପୁଣି, ଆରିଷ୍ଟୋଟ୍ଲଙ୍କ ଧାରଣା, ସାମୂହିକ ଜୀବନଯାପନ ଦ୍ୱାରା ମଣିଷ ହୁଏ ଆତ୍ମନିର୍ଭର । ସ୍ୱାବଲମ୍ବନ ଅବଶ୍ୟ ମୂଳଲକ୍ଷ୍ୟ; କିନ୍ତୁ ବ୍ୟକ୍ତିବିଶେଷ ପକ୍ଷରେ ଆତ୍ମନିର୍ଭରତା କିମ୍ବା ରାଷ୍ଟ୍ର ପକ୍ଷରେ ସ୍ୱୟଂସମ୍ପୂର୍ଣ୍ଣତା କହିଲେ ପୁଙ୍ଖାନୁପୁଙ୍ଖ କଣ ବୁଝନ୍ତି, *ପଲିଟିକ୍ସ* ଗ୍ରନ୍ଥରେ ପୂର୍ଣ୍ଣାଙ୍ଗ ବିବରଣ ମିଳିବନାହିଁ; କାହିଁକିନା, ଏକମାତ୍ର ହେତୁନିର୍ଦ୍ଦେଶ କରାଯାଇଛି, ଜୀବନଧାରଣ ସକାଶେ ରାଷ୍ଟ୍ରର ପ୍ରୟୋଜନ ଖାଦ୍ୟପେୟ ପରି ଅପରିହାର୍ଯ୍ୟ ! ନାଗରିକ ରାଷ୍ଟ୍ରକୁ ବଞ୍ଚାଇରଖେ, କାହିଁକିନା, ଦିବ୍ୟଜୀବନ ତା ଭବିତବ୍ୟ । ନୀତିସୂତ୍ରରେ କହିଚନ୍ତି, ଦିବ୍ୟଜୀବନକୁ ବିକଶିତକରେ ସଦ୍‌ଗୁଣ ଓ ମେଧା; ରାଷ୍ଟ୍ରସଂଗଠନ କି ଉପାୟରେ ତେବେ ଭର୍ଚ୍ୟୁ ଓ ମନନକୁ କରେ ଅନୁପ୍ରେରିତ ? କିମ୍ବା, ରାଷ୍ଟ୍ରର ଆଦିମ ସଂସ୍କରଣ ଯଦି ଗୃହସ୍ଥାଳି ଓ ଗ୍ରାମ, କି ବ୍ୟଞ୍ଜନାରେ ସେ ବିବର୍ତ୍ତନ ଦିବ୍ୟଜୀବନ ଭଳି ଅନ୍ତିମ ଲକ୍ଷ୍ୟ ସହିତ ସୁମଞ୍ଜସ ? ଅନ୍ୟ ଶବ୍ଦରେ, ଦେବୋପମ ଜୀବନ ଯଦି ମୂଲ୍ୟବୋଧର ନିର୍ଦ୍ଦିଷ୍ଟ କୋଡ ସିଷ୍ଟେମ୍, ସେ ମୂଲ୍ୟ ନିଶ୍ଚୟ ଆହାର-ନିଦ୍ରା-ମୈଥୁନ-ଭୟ ଭଳି ଚକ୍ରାକାର ଆବର୍ତ୍ତନ ନୁହେଁ । ନୁହେଁ ଯଦି, ସେ ମୂଲ୍ୟବୋଧକୁ ଉତ୍ସାରିତକରେ କି ପ୍ରକାର ରାଷ୍ଟ୍ରବ୍ୟବସ୍ଥା ? ଆଦିମ ଗୃହସ୍ଥାଳି କି ଗ୍ରାମସଂଗଠନ ନିଶ୍ଚୟ ନୁହେଁ, କାହିଁକିନା, ଜୀବନଯାପନ ଉପରେ ଦିବ୍ୟଗୁଣ ଆରୋପ ଆଦୌ ପ୍ରାକୃତିକ ପ୍ରକ୍ରିୟା ନୁହେଁ । ତା ସକାଶେ ଆବଶ୍ୟକ ଅପ୍ରାକୃତିକ ସିଦ୍ଧି, ଯୋଉ ସିଦ୍ଧି ଦରକାରହେବ ମଣିଷ ଯଦି ଆକାଶରେ ଉଡ଼ିବାକୁ ମନକରେ । ତେବେ, ଆରିଷ୍ଟୋଟ୍ଲଙ୍କ ଆଉଏକ ପ୍ରସିଦ୍ଧ ଉକ୍ତି ହେଲା : 'ମଣିଷ ଏକ ରାଜନୀତିକ ପ୍ରାଣୀ' । ରାଷ୍ଟ୍ର ତେଣୁ ଏକ ପ୍ରାକୃତିକ

ପ୍ରୟୋଜନ, କାହିଁକିନା, Nature does nothing in vain । ରାଷ୍ଟ୍ରକୁ ପୂଜାକରିବା କଥା, କାହିଁକିନା, ରାଷ୍ଟ୍ର ଶରୀର ହେଲେ, ବ୍ୟକ୍ତିବିଶେଷ କେବଳ ଅଙ୍ଗପ୍ରତ୍ୟଙ୍ଗ । ଏବଂ ସେଇ ବିବେଚନାରେ, ଦେହ ପାଏ ଅବୟବ ଉପରେ ଅଗ୍ରାଧିକାର, ସମଗ୍ର ପାଏ ଅଂଶ ଉପରେ ପ୍ରାଇଅରିଟି । ଯୋଉ ଅଂଶ ସମଗ୍ରକୁ ସକ୍ରିୟ କରିପାରେନା, ଯେମିତି କେମ୍ପାହାତ କି ଛୋଟାଗୋଡ଼ କି ଅନ୍ଧଆଖି, ସେଭଳି ନାଗରିକ ସାକ୍ଷାତ୍ ପଶୁ ପୁଚ୍ଛବିଷାଣହୀନଃ । କିନ୍ତୁ ରାଷ୍ଟ୍ରର ବିନା ସହାୟତାରେ ଯିଏ ସ୍ୱୟମ୍ଭର ଅତିମାନବ, ଆରିଷ୍ଟୋଟ୍ଲଙ୍କ ପରିଭାଷାରେ 'ଗଡ୍' (a 25-9), ନାଗରିକ ହେବାକୁ କିନ୍ତୁ ଅଯୋଗ୍ୟ । ଜନ୍ମସୂତ୍ରରେ ପ୍ରାପ୍ତ ଅଯୋଗ୍ୟତା ଯେହେତୁ ପ୍ରକୃତିର ଅବଦାନ, ପ୍ରତିଷେଧ ହୋଇପାରେ କେବଳ ପ୍ରାକୃତିକ । ରତିସୂତ୍ରବିଶାରଦ ମଧ ଶରୀର-ଲକ୍ଷଣରୁ ନାରୀକୁ ଦେଖୁଚନ୍ତି ଚାରିବର୍ଗ : ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ, ହସ୍ତିନୀ । ତଦନୁସାରେ ଶଯ୍ୟା ଓ ସଙ୍ଗମବିଧି ପୂର୍ବନିର୍ଦ୍ଧାରିତ । ଆରିଷ୍ଟୋଟ୍ଲ ସେଇଭଳି ନିର୍ଦ୍ଧାରଣକରିଚନ୍ତି କିଏ ହେବ ସେବ୍ୟ ଆଉ କିଏ ହେବ ସେବକ । ବିଦ୍ୱାନ୍ କହୁଚନ୍ତି, ମାଷ୍ଟର୍-ସ୍ଲେଭ୍ ଡାୟଲେକ୍‌ଟିକ୍ । ଅର୍ଥାତ୍, ସମ୍ପର୍କଟା ପ୍ରକୃତିଦତ୍ତ, ନ୍ୟାଚରାଲ୍ । ପ୍ରଭୁ ସମଗ୍ର, ଦାସ ଅଂଶବିଶେଷ (୧୨୫୪ ଓ ୧୨୫୫); ଯେମିତି ରାଷ୍ଟ୍ର ସମଗ୍ର, ନାଗରିକ ଅଂଶବିଶେଷ । ଅଥଚ *ମେଟାଫିଜିକ୍ସ* ( 982b ୨୫-୨୭)ରେ କହିଚନ୍ତି, a free man is for his own sake and not for the sake of another । ସ୍ଲେଭ୍ ତେବେ ଅନ୍ୟ କାହାର ବ୍ୟକ୍ତିଗତ ସମ୍ପତ୍ତି ହୁଏ କେମିତି ?

ବିଦ୍ୱାନ୍ ପୁଣି କହୁଚନ୍ତି, ଦାସତ୍ୱକୁ ଆରିଷ୍ଟୋଟ୍ଲ ନିର୍ବିଚାରରେ ସମର୍ଥନ କରିନାହାନ୍ତି; ବିଜିତ ରାଜ୍ୟରୁ ବାନ୍ଧିଆଣିଥିବା ଲୋକଙ୍କୁ ମନେକରିଚନ୍ତି ନ୍ୟାଚେରାଲ୍ ସ୍ଲେଭ୍; ଗ୍ରୀକ୍‌ଜାତିରୁ ଆସିଥିବା ଭୃତ୍ୟକୁ ସ୍ୱଭାବତଃ ଅକ୍ଷମ ଭାବିନାହାନ୍ତି, କାହିଁକିନା, ଚାକର ହେବାପାଇଁ ଗ୍ରୀକ୍ ଜନ୍ମହୁଏନା । ଭୃତ୍ୟର ସ୍ୱଭାବ ନିଜଭିତରେ ବହନକରି ଯିଏ ଭୂମିଷ୍ଠହୁଅନ୍ତି, ତାଙ୍କୁହିଁ ଧରିଚନ୍ତି ନିକୃଷ୍ଟମାନବ, ପଶୁବତ୍ ତାଙ୍କ ଉପଯୋଗ । ଭୃତ୍ୟର ନିହିତ ସ୍ୱଭାବ ତେବେ କି ରକମ ? ବିଦ୍ୱାନ୍ *ପଲିଟିକ୍ସ*ରୁ କୋଟେସନ୍ ଦେଇଚନ୍ତି : in all things which form a composite whole and which are made up of parts, whether continuous or discrete, a distinction between the ruling and the subject element comes to light. ....... A living creature consists in the first place of soul and body, and of these two, the one is by nature the ruler, and the other the subject. But then we must look for the intentions of nature in things which retain their nature, and not in things

which are corrupted. And therefore we must study the man who is in the most perfect state both of body and soul, for in him we shall see the true relation of the two; although in bad or corrupted natures the body will often appear to rule over the soul, because they are in an evil and unnatural condition. At all events we may firstly observe in living creatures both a despotical and constitutional rule; for the soul rules the body with a despotical rule, whereas the intellect rules the appetites with a constitutional and royal rule. And it is clear that the rule of the soul over the body, and of the mind and the rational element over the passionate, is natural and expedient; whereas the equality of the two or the rule of the inferior is always hurtful. The same holds good of animals in relation to men; for tame animals are better off when they are ruled by man; for then they are preserved. Again, the male is by nature superior, and the female inferior; and the one rules and the other is ruled; this principle of necessity extends to all mankind. Where then there is a difference as that between soul and body, or between men and animals (as in the case of those whose business it is to use their body, and who can do nothing better), the lower sort are by nature slaves, and it is better for them as for all inferiors that they should be under the rule of a master. For he who can be, and therefore is, another's and he who participates in rational principle enough to apprehend, but not to have, such a principle, is a slave by nature. *Politics* (1.5 1254 a28-b 23).

*ନିକୋମାକିଆନ୍ ଏଥିକ୍ସ*ରେ ଆରିଷ୍ଟୋଟ୍ଲ ନିଜ ଉଦ୍ଦେଶ୍ୟ ଜଣାଇଚନ୍ତି : in order to complete to the best of our ability the philosophy of human nature । ଏଭଳି *ପରିପ୍ରେକ୍ଷୀ*ରେ ପଢ଼ନ୍ତୁ ଦେଖିଲେ, ସେ ସ୍ୱଭାବ ସ୍ୱାଭାବିକ

ନୁହେଁ; ମଣିଷଙ୍କ ସ୍ୱଭାବ ଭିତରେ ନିହିତ ରହିଚି ବ୍ୟାପକ ତାରତମ୍ୟ; କେତେକ ଜନ୍ମ ହୋଇଚନ୍ତି ପ୍ରଭୁହୋଇ, ଆଉ କେତେକ ଆଜନ୍ମ ଭୃତ୍ୟ । ନାରୀ ବି ଜନ୍ମହୋଇଚି ପୁରୁଷର ଅଧସ୍ତନହୋଇ । ମାନବପ୍ରଜାତିର ଏଇ ବ୍ରାତ୍ୟ ପରିଜନଙ୍କର ନିଜ ପ୍ରବୃତ୍ତି ଉପରେ ଲଗାମ ନାହିଁ; ଆତ୍ମା ଦେହକୁ ଶାସନକରେନା; ଦେହକରେ ଆତ୍ମାକୁ ଶାସନ । ବିକଳାଙ୍ଗଦେହକୁ ସମଗ୍ରର ଅବୟବ କରିବା ସକାଶେ ତା ଉପରେ ପ୍ରଭୁ/ଗୁରୁ/ସ୍ୱାମୀ ଭଳି ଅଭିଭାବକ ରଖିବାକୁ ପଡ଼ିବ । ଅନ୍ୟଥା, ସମାଜରେ ଶୃଙ୍ଖଳା ରହିବନାହିଁ, ରହିବ ନାହିଁ ହିତାହିତ ଜ୍ଞାନ, କି ଗୁରୁ-ଲଘୁ ବିଚାର । ଏବଂ, ଏମାନଙ୍କୁ ନିୟନ୍ତ୍ରଣରେ ରଖିବାକୁ ଦରକାର ଶାସ୍ତି ପ୍ରତି ଭୀତି : for most people obey necessity rather than argument, and punishment rather than the sense of what is noble । ତେଣୁ ମଣିଷ ସଂଗଠିତକରିଚି ରାଷ୍ଟ୍ର (ନଗର-ରାଷ୍ଟ୍ର, ଜାତି-ରାଷ୍ଟ୍ର ନୁହେଁ) ପ୍ରୟୋଜନ ତାଡ଼ନାରେ; ପ୍ରୟୋଜନର ଅତିରିକ୍ତ କୋଉ ପ୍ରରୋଚନା ତାକୁ ଚାଳିତକରିନାହିଁ । ଅର୍ଥାତ୍, ପୌରସମାଜ ଭିତରେ ନିହିତ ଗୁଣଧର୍ମର ବିକାଶ ସର୍ବାଧିକ ବୋଲି, ମଣିଷ ବାଛିନେଇଛି ସାମୂହିକ ଅବସ୍ଥାନ । ମାତ୍ର ଆତ୍ମଖଣ୍ଡନ ମଧ୍ୟ ଆରିଷ୍ଟୋଟ୍ଲଙ୍କ ଚିନ୍ତାର ଅନ୍ୟତମ ବୈଶିଷ୍ଟ୍ୟ, ଯେପରି

> Hence it is evident that the State is creation of nature and that man is by nature a political animal. And he who by nature and not by mere accident is without a State is either a bad man or above humanity. He is like the tribe-less, lawless, heartless one whom Homer denounces - the natural outcast is forthwith a lover of war : he may be compared to an isolated checkers-piece. *Politics*, 1253 a 2 ।

ରାଷ୍ଟ୍ର କାହିଁକି ପ୍ରକୃତିର ଅବଦାନ ? ନା, ପ୍ରାକୃତିକ ନିୟମରେ କ୍ଷୁଦ୍ରତମ ବୀଜ ମହାବୃକ୍ଷରେ ପରିଣତ ହେବାପରି, ଗୃହସ୍ଥାଳି /ପରିବାରରୁ ତାର ବିକାଶ ଘଟିଚି ସମ୍ପ୍ରଦାୟ କି କୌମ ପର୍ଯ୍ୟାୟ ଭିତରଦେଇ । କିନ୍ତୁ ମଣିଷ କାହିଁକି, ପଶୁହୋଇ ସୁଦ୍ଧା, ମନକରେ ରାଜନୀତିକୁ ? ଭୋଟ୍‌ରେ ଜିତିବାକୁ ? ନା, ହୋମର୍ କହିବାଭଳି, ଚୁଲିଚାଳ, ବଂଶଗୌରବ, ଦେବଦେବୀ, ଧର୍ମକର୍ମର ଟେକରଖିବାକୁ । ଅର୍ଥାତ୍, ଐତିହ୍ୟ ଓ ସଂସ୍କୃତିର ସୁରକ୍ଷା ସକାଶେ ମଣିଷ କାମନାକରେ ରାଜନୀତିକ କର୍ତ୍ତୃତ୍ୱ । ଯେପରି, ହିଟ୍‌ଲର୍ କି ମୁସୋଲିନି ! ଏବଂ ସଂସ୍କୃତି ଯେହେତୁ ପରମାର୍ଥର ଅନ୍ୱେଷଣ, ସାମାଜିକ ଉତ୍ପାଦନ-

ବଣ୍ଟନ କ୍ରିୟାକୁ ଦରକାର ଅନନ୍ତ ଅବସର, ଏବଂ ସେ ଅବସର ଯୋଗାଇଦେବାକୁ ନିର୍ମିତହେବ ମେଧାବୀ ମନନ ଓ ଶାରୀରିକ ପରିଶ୍ରମ ମଝିରେ ଅଲଂଘ୍ୟ ପ୍ରାଚୀର, ଏବଂ ସବୁଗୁଡ଼ାକୁ କୁହାଯିବ ଋତୁପରିବର୍ତ୍ତନ ପରି ପ୍ରାକୃତିକ, ବ୍ୟତିକ୍ରମବିହୀନ ! ଏବଂ, ଏ ସ୍ଥାଣୁତ୍ୱ ବିରୋଧରେ ଯିଏ ଅଣ୍ଟାଭିଡ଼ି ଛିଡ଼ାହେବ, ସିଏ ମନୁଷ୍ୟେତର ଅତିପ୍ରାକୃତ ପ୍ରାଣୀ ! ଯୁଦ୍ଧପ୍ରବଣ ଓ ଜାତିଭ୍ରଷ୍ଟ ଇତର !

ହୁଏତ କହିବାକୁ ଚାହିଁଛନ୍ତି, ଇତର ପ୍ରାଣୀଙ୍କ ସହିତ ପ୍ରାକୃତିକ ସାମଞ୍ଜସ୍ୟ ରହିଥିବା ସତ୍ତ୍ୱେ,ସ୍ୱଭାବତଃ ମଣିଷ ସ୍ୱତନ୍ତ୍ର । ଗୋଟାପଣେ ନାଗରିକ । ପ୍ରବୃତ୍ତି ସାମାଜିକ ବୋଲି, ଅପରାପର ମଣିଷଙ୍କ ସହିତ ଭାଷା ଦ୍ୱାରା ବାନ୍ଧିହୁଏ ବିବିଧ ଉପଲକ୍ଷ୍ୟରେ; ଏବଂ ଭାଷା ଯେହେତୁ ମନର ମାଧ୍ୟମ, ଭଲମନ୍ଦ ବିବେଚନା ମଧ୍ୟ ଏକ ପ୍ରାକୃତିକ ବିଭାବ:the power of speech is intended to set forth the expedient and the inexpedient, and therefore likewise the just and the unjust. And it is a characteristic of man that he alone has any sense of good and evil, of just and unjust, and the like, and the association of living beings who have this sense makes a family and a State. *Politics*, 1253 a 14-18 । ତାହେଲେ, ପରିବାର ହେଉ କି ରାଷ୍ଟ୍ର, ନିଜ ଉଦ୍ୟମରେ ମଣିଷ ଗଠନକରିଚି ସଜ୍ଞାନରେ ଏବଂ ସଦ୍‌ଉଦ୍ଦେଶ୍ୟରେ ।

ପରିବାର କି ରାଷ୍ଟ୍ରକୁ 'ପ୍ରାକୃତିକ' କହିବା ତେଣୁ ଅଯଥାର୍ଥ । ମନୁଷ୍ୟକୃତ ସେଇ ଅନୁଷ୍ଠାନ ଭିତରେ ଉଚ୍ଚ-ନୀଚ ଭେଦାଭେଦ ମଧ୍ୟ ମଣିଷର ସୃଷ୍ଟି,ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ସୃଷ୍ଟି । ସେଥିପାଇଁ, ବାସ୍ତବ । ମାତ୍ର ଦେବୋପମ ଜୀବନଯାତ୍ରାର ସହାୟକ ନୁହେଁ ସେଇ ବାସ୍ତବ । ନୁହେଁ ବୋଲି, 'ବାସ୍ତବ' ଆଦର୍ଶ ନୁହେଁ, କି 'ଆଦର୍ଶ' ବାସ୍ତବ ନୁହେଁ । ପଲିଟିକ୍ସରେ ଏକ୍ସପର୍ଟିଜ୍ କିନ୍ତୁ ମଣିଷକୁ ସମର୍ଥକରିବ ନିର୍ବିବାଦ କୁଟୁମ୍ବିତା ଭିତରଦେଇ ସକଳ ସୀମାବଦ୍ଧତାକୁ ସହଜ ଅବଲୀଳାରେ ଅତିକ୍ରମକରିବାକୁ । ଠିକ୍ ଯେମିତି ବିଶ୍ୱବ୍ରହ୍ମାଣ୍ଡ ଆବର୍ତ୍ତିତ ହେଉଚି ପ୍ରକୃତିର ଅଲଂଘ୍ୟ ନିୟମରେ । କିନ୍ତୁ ଏ ତତ୍ତ୍ୱଭିତ୍ତି ଏତେ ଦୁର୍ବଳ ଯେ, ସେ ବିନ୍ଦୁରୁ ଭବିଷ୍ୟତ ଦିଶୁଚି ଅତିଶୟ ବିଷଣ୍ଣ । ବିଷଣ୍ଣ ବୋଲି, ଗଣତନ୍ତ୍ର ତାଙ୍କୁ ଦିଶିଚି ଅବକ୍ଷୟର ନିଦର୍ଶନ : riches became the path to honour, and so oligarchies naturally grew up. These passed into tyrannies and tyrannies into democracies; for love of gain in the ruling classes was always tending to diminish their number, and so to strengthen the masses, who in the

end set upon their masters and established democracies. Since cities have increased in size, no other form of government appears to be any longer even easy to establish. *Politics* III, 15, 1286b 15-22 । ଅର୍ଥାତ୍, ଗଣତନ୍ତ୍ରରେ ଭର୍ଚ୍ଚିଉର କର୍ଷଣ ସମ୍ଭବନୁହେଁ । ଅନୁରୂପ ଏକ ଅବବୋଧ ଏଜ୍ରା ପାଉଣ୍ଡଙ୍କୁ ପ୍ରେରିତ କରିଥିଲା ଫ୍ୟାସିଜ୍ମକୁ ଆଲିଙ୍ଗନ କରିବାକୁ ।

ଫ୍ୟାସିବାଦ ଉପରେ ଆରିଷ୍ଟୋଟ୍ଲଙ୍କ ପ୍ରଭାବ ଉଣା-ଅଧିକ ହୋଇପାରେ, ମାତ୍ର ବାଇବ୍ଲ ରଚନା ବେଳକୁ ତାଙ୍କ ତତ୍ତ୍ୱାବଳୀ ହୋଇଯାଇଚି ବେଦବାକ୍ୟ, ଯେପରି ଆଦମ୍‌ର ପଞ୍ଜରାହାଡ଼ରୁ ଇଭ୍ ବାହାରିଥିବାରୁ ନାରୀ ପୁରୁଷର ସେବାଦାସୀ, କିମ୍ବା ନିଷିଦ୍ଧ ଫଳ ଚାଖିବାକୁ ପୁରୁଷକୁ ପ୍ରବର୍ତ୍ତାଇଥିବାରୁ ଈଶ୍ୱରଆଜ୍ଞାରେ ନାରୀ ଅବିଶ୍ୱାସୀ । ଅର୍ଥାତ୍ ନିକୃଷ୍ଟ ଆତ୍ମା, କେବଳ ଶାସ୍ତି ଭୟ ତାକୁ ଆଟକ କରିପାରେ । ସେହିପରି ରାଷ୍ଟ୍ରଚିନ୍ତାରେ ଜାତି (ରେସ୍) ଓ ଜାତୀୟତାବାଦ (ନ୍ୟାସନାଲିଜ୍ମ)ର ଭୂମିକା । ଗ୍ରୀକ ଜାତିକୁ ଅବଶିଷ୍ଟ ଜାତିମାନଙ୍କ ଉପରେ ଥୋଇଦେଇ, ଜାତିଗତ ଉତ୍କର୍ଷର ଯୋଉ ଆଇଡିଆ ସର୍ବପ୍ରଥମ ରୋପଣକରିଚନ୍ତି ଆରିଷ୍ଟୋଟ୍ଲ, ଫଳେପୁଷ୍ପେ ପଲ୍ଲବିତ ହୋଇ ହିଟ୍‌ଲର୍ ହାତରେ ପରିଣତହୋଇଚି ଆ୍ୟାଣ୍ଟି-ସେମିଟିଜ୍ମ । ଜାତିରାଷ୍ଟ୍ର ଗଠନ ମୂଳରେ ସକ୍ରିୟ ଯୋଉ ଜାତୀୟବାଦ, ବିଂଶଶତକରେ ହୋଇଚି ଦୁଇ-ଦୁଇଟା ମହାଯୁଦ୍ଧର କାରଣ । ତା ବୀଜ ମଧ୍ୟ ବପନକରିଯାଇଚନ୍ତି 'ଫିଲ୍‌ଜପର୍' ଆରିଷ୍ଟୋଟ୍ଲ । ଅଥଚ ଜାତୀୟତାବଦ ସବୁ ସାର୍ବଭୌମ ରାଷ୍ଟ୍ରକୁ ସମାନ ନଜରରେ ଦେଖେନା । ଦେଖେନା ବୋଲି, ଦାସ-ପ୍ରଭୁ/ସେବକ-ସେବ୍ୟ ବିଭାଜନ ରଞ୍ଜିତକରେ ମଣିଷର ଚେତନାକୁ, ଏବଂ କରେ ବୋଲି, ଆଲେକ୍‌ଜ୍ୟାଣ୍ଡର ବାହାରିଚନ୍ତି ପୃଥିବୀକୁ ପଦାନତ କରିବାକୁ । ସାମ୍ରାଜ୍ୟବାଦର ସେଇ ଭାବଜଗତ, ଜୁଲିଅସ୍ ସିଜର୍ ଓ ନୋପୋଲିଅଁ ଉପହାର ଦେଇଚି, ଇଉରୋପକୁ । ଆଉ ସାଂପ୍ରତିକ କାଳରେ ପୃଥିବୀକୁ ଦେଇଚି ଯୁକ୍ତରାଷ୍ଟ୍ର-ଆମେରିକା । ଆଶ୍ୱାସନାର କଥା ଏତିକି ଯେ ଅଷ୍ଟାଦଶ ଶତକ ବେଳକୁ ଇଉରୋପ ଛାଟିପିଟି ହୋଇଚି ମେଟାଫିଜିକ୍ସର ଏ ମାୟାଜାଲକୁ ଛିଡ଼ାଇପକାଇବାକୁ, ଏବଂ ସେ ଉତ୍କଣ୍ଠାର ତୀବ୍ରତା ଖାଲି କାର୍ଲ ମାର୍କ୍ସଙ୍କୁ ଆଁଲୋଡ଼ିତ କରିନାହିଁ, ଲମ୍ବିଆସିଚି ଜାକ୍ ଦେରିଦାଙ୍କ ପାଖରୁ ଉତ୍ତର-ଆଧୁନିକତା ପର୍ଯ୍ୟନ୍ତ ।



## ॥ ଚାରି ॥

'ଲଗସ୍'ରୁ ନିଷ୍ପନ୍ନହୋଇଚି 'ଲଜିକ୍' । ଓଡ଼ିଆ ତର୍ଜମାରେ ଲଜିକ୍ ତର୍କସୂତ୍ର ବା ଯୁକ୍ତିବିଦ୍ୟା; ମାତ୍ର ଆରିଷ୍ଟୋଟ୍ଲ କହିଚନ୍ତି *sullogismos*, ଇଂରେଜୀରେ syllogism । ନିଜକୁ ଘୋଷଣା କରିଚନ୍ତି, ଏ ବିଦ୍ୟାର ଆଦ୍ୟ ପ୍ରବର୍ତ୍ତକ : Of the present enquiry, on the other hand, it was not the case that part of the work had been thoroughly done before while part had not. Nothing existed at all ......Moreover, on the subject of rhetoric there exists much that has been said long ago, whereas on the subject of syllogism we had nothing else of an earlier date to speak of at all, but were kept at work for a long time in experimental researches । ଏ ଗବେଷଣା ଭାରତୀୟ ଦର୍ଶନରେ କରିଯାଇଚନ୍ତି ଗୌତମ; କିନ୍ତୁ ତାଙ୍କ ଅନୁସନ୍ଧାନର ପଦ୍ଧତି ପ୍ରତ୍ୟକ୍ଷ, ପ୍ରମାଣ ଓ ଅନୁମାନ । ଆରିଷ୍ଟୋଟ୍ଲଙ୍କ ପଦ୍ଧତି କିନ୍ତୁ ଡିଡକ୍ଟିଭ୍, ଅର୍ଥାତ୍ ଅବରୋହୀ ପ୍ରଥାରେ କାରଣରୁ କାର୍ଯ୍ୟ ନିର୍ଣୟ; ପୁଣି, ଇଣ୍ଡକ୍ଟିଭ୍ (ଆରୋହୀ ପ୍ରଥାରେ ବିଚାର), ଯେପରି ଔଷଧ ପ୍ରୟୋଗକରି ପ୍ରତ୍ୟାଶିତ ଫଳଲାଭ । କିନ୍ତୁ ସିଲ୍ୟଜିଜ୍ମ ମାନେ ଦୁଇଟି ପ୍ରତିଜ୍ଞା ବା ତଥ୍ୟ ଭିତରୁ ଯୁକ୍ତିବଳରେ ଗୋଟିକୁ ଗ୍ରହଣ ଓ ଅନ୍ୟଟିକୁ ବର୍ଜନ । ବର୍ଜନ ଯେହେତୁ ବିଯୋଗ, ପଦ୍ଧତିଟା ଡିଡକ୍ଟିଭ୍ । ଭାରତୀୟ ଚିନ୍ତାରେ ବର୍ଜନ ନାହିଁ, ଅଛି 'ପ୍ରମାଦ' ।

ପୁରାକାଳରେ, ଏପରିକି ପ୍ଲାଟୋଙ୍କ ଜୀବଦ୍ଦଶାରେ, ଆରିଷ୍ଟୋଟ୍ଲ ବିବେଚିତ ହୋଇଚନ୍ତି ଲଜିକ୍‌ରେ ଅପ୍ରତିଦ୍ୱନ୍ଦୀ, ପ୍ଲାଟୋଙ୍କ ସ୍ଥାନ ଯଦିଓ ମେଟାଫିଜିକ୍ସ ବା ପରାବିଦ୍ୟାରେ ଥିଲା ଅଦ୍ୱିତୀୟ । ତୁଙ୍ଗ ଏଇ କର୍ତ୍ତୃତ୍ୱ ଆରିଷ୍ଟୋଟ୍ଲ ବଜାୟରଖିଚନ୍ତି ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ । ଖ୍ରୀଷ୍ଟାନ୍ ଦାର୍ଶନିକ ସେତେବେଳେ ଲଜିକ୍‌ରୁ କାଢ଼ିନେଇ ଦେଇଚନ୍ତି ତାଙ୍କୁ ମେଟାଫିଜିକ୍ସର ଅଧିକାର । ସେ ଅଧିକାର ରନେସାନ୍ସ ପରବର୍ତ୍ତୀ କାଳରେ ଅନ୍ତର୍ହିତ ହୋଇଯାଇଚି, ମାତ୍ର ଲଜିକ୍‌ର କର୍ତ୍ତୃତ୍ୱ ରହିଚି ତଥାପି ଅମ୍ଳାନ ।

ଏବଂ ଆଧୁନିକ ଲଜିକ୍ ସେ ସିଷ୍ଟେମ୍‌କୁ, ଟଲେମିଙ୍କ ଜ୍ୟୋତିର୍ବିଦ୍ୟାକୁ ପ୍ରତ୍ନବସ୍ତୁରେ ବିଜ୍ଞାନ ପର୍ଯ୍ୟବସିତ କଲାପରି, ଅଚଳ କରିଦେଇଛି; କ୍ୟାଥଲିକ୍ ଶିକ୍ଷାବ୍ୟବସ୍ଥାରେ ଆରିଷ୍ଟୋଟ୍ଲ ତଥାପି ରହିଛନ୍ତି ଧ୍ରୁବତାରା । ସନ୍ଦେହ ନାହିଁ, ଆରିଷ୍ଟୋଟ୍ଲଙ୍କ ଜଗତ୍ ପ୍ରାୟାନ୍ଧକାର ଏକ ଜଗତ୍, ଚିନ୍ତାର ସ୍ୱଚ୍ଛତା ଯୋଉଠି ଅଧିବିଦ୍ୟାର ମାୟାଜାଲରେ ଆଚ୍ଛନ୍ନ । ଏ ଅବସ୍ଥା ବହାଲ୍ ରହିନଥାନ୍ତା ହୁଏତ, ଦୁଇହଜାରବର୍ଷ ଧରି ପାଶ୍ଚାତ୍ୟ ଗୋଲାର୍ଦ୍ଧରେ ମେଧା ଓ ମନନର ଘଟିନଥାନ୍ତା ଯଦି ବନ୍ଧ୍ୟାଦଶା । ଶବ୍ଦ ମୋହରେ ଛନ୍ଦିହୋଇ ପୂର୍ବସୂରୀ କିନ୍ତୁ ସତ୍ୟକୁ ବରବାଦ କରିନାହାନ୍ତି; ଅଥଚ ଆରିଷ୍ଟୋଟ୍ଲଙ୍କ ରଚନାର ପ୍ରଧାନ ପ୍ରେରଣା ଥିଲା ଶବ୍ଦଝଙ୍କାର ଓ ପରିଭାଷାର ଆତିଶଯ୍ୟ । ଆଶ୍ଚର୍ଯ୍ୟ ହେବା ତେଣୁ ଉଚିତ ହେବନାହିଁ ଯେ ତାଙ୍କ ଲଜିକ୍ ହୋଇଯିବ ରଣକ୍ଷେତ୍ର, କାହିଁକିନା, ତାର ଇତିହାସ ନାହିଁ, ଆଗନାହିଁ କି ପଛନାହିଁ ।

କିନ୍ତୁ ଦରକାରହେଲା କାହିଁକି ଲଜିକ୍ ? ସାମୂହିକ ଜୀବନଯାତ୍ରା ଭିତରଦେଇ ଜଗତକୁ ଉପଲବ୍ଧିକରିବ ବୋଲି ମଣିଷ ନାଗରିକ ହୁଏ; ନାଗରିକ ହୋଇ ଭର୍ତ୍ତିଉ ଆହରଣ କରିପାରିଲେ ପାଏ ପ୍ରକୃତ ସୁଖର ଆସ୍ୱାଦ । ଲଜିକ୍ ଲାଗେ ତେବେ କି କାମରେ ? ବିଦ୍ୱାନ୍ କହୁଚନ୍ତି ଅଜବ କଥା । ଜିଜ୍ଞାସା ତାଡ଼ନାରେ ମଣିଷ କୁଆଡ଼େ ରହିପାରେନା ଆଚାରସର୍ବସ୍ୱ ହୋଇ, ଯଥାପ୍ରାପ୍ତ ସ୍ୱଭାବକୁ ଅତିକ୍ରମକରିବାକୁ ହୁଏ ଉଦ୍ୟତ । ରାଜନୀତି ଓ ନୀତିସୂତ୍ର ବାହାରେ ଯୋଉ ଅସ୍ତିତ୍ୱ, ସେଇ ଭିନ୍ନ ଅସ୍ତିତ୍ୱକୁ ମୁହାଁମୁହିଁ ଭେଟିବାକୁ ହୁଏ ବ୍ୟାକୁଳ, ଏବଂ ସେତିକିବେଳେ ମନନ ଓ ମେଧାକୁ ପରିଶୀଳିତ କରେ ଫର୍‌ମାଲ୍ ଲଜିକ୍ ବା ବିଧିବଦ୍ଧ ଯୁକ୍ତିଶୃଙ୍ଖଳା । ଗହନ କଥା ! ତେଣୁ ଦେଖାଯାଉ, ସିଲ୍ୟଜିକ୍ସ ଜିନିଷଟା କି ରକମ 'ଦର୍ଶନ' । କାହିଁକିନା, ଫିଲଜଫର୍ ଜଗତକୁ ଖାଲି ପ୍ରତ୍ୟକ୍ଷକରେନା, ପ୍ରତ୍ୟକ୍ଷକରି ଯା ଜାଣିଚି, ତା ସତ କି ମିଛ ପରଖକରିବାକୁ ବ୍ୟଗ୍ରହୁଏ । ତର୍କବିତର୍କ ହୋଇଯାଏ ତେଣୁ ଉପଲବ୍ଧିକୁ ସମ୍ପ୍ରସାରିତକରିବା ଉପାୟ; ପୁଣି ଅନ୍ୟମାନଙ୍କୁ ନିଜ ବିଶ୍ୱାସରେ ଦୀକ୍ଷିତକରବିାକୁ ମଧ୍ୟ ଦରକାରହୁଏ ଅକାଟ୍ୟ ଯୁକ୍ତି । ତର୍କବିଦ୍ୟା ସହିତ ଉପଲବ୍ଧି (ସତ୍ୟାସତ୍ୟ ନିରୂପଣ)ର ସମ୍ବନ୍ଧ ତେଣୁ ଉଦ୍ଦେଶ୍ୟ-ବିଧେୟ (ସବ୍‌ଜେକ୍ଟ-ପ୍ରେଡିକେଟ୍) ସମ୍ବନ୍ଧର ପ୍ରତିରୂପ । ତର୍କଦ୍ୱାରା ଉପଲବ୍ଧି ମାନେ, ବସ୍ତୁତ୍ୱ ପ୍ରମାଣଦ୍ୱାରା ନିଷ୍ପତ୍ତି, ସୂତ୍ରରୁ ସିଦ୍ଧାନ୍ତ । ସୂତ୍ର ବା ପ୍ରେମିସ୍ ସାଧାରଣତଃ ଏକ ପୂର୍ବାନୁମାନ । ତା ଭିତରେ ଯା ବ୍ୟାପକ, ତାକୁ ଆଶ୍ରୟବାକ୍ୟ ଭାବରେ ବ୍ୟବହାର କରାଯାଏ, ଯେପରି, 'ଭଗବାନ୍ ସର୍ବଶକ୍ତିର ଆଧାର' - ଏଇ ଆଶ୍ରୟବାକ୍ୟର ସତ୍ୟାସତ୍ୟ ନିରୂପଣ ସକାଶେ ଦରକାର ସ୍ୱଚ୍ଛଯୁକ୍ତି ଏବଂ ସିଦ୍ଧାନ୍ତରେ ଉପନୀତହେବାକୁ ମେଧା ଓ ମନନ । ବିଚାର ବୁଦ୍ଧିସମ୍ପନ୍ନ ଯେକୌଣସି ଲୋକର ସନ୍ଦେହଭଞ୍ଜନ ସେଇ

ବାଟରେ ହିଁ ସମ୍ଭବପର । ଏଇ ବିଚାରବୁଦ୍ଧିକୁ ଆରିଷ୍ଟୋଟ୍ଲ ମନେକରନ୍ତି ଚରିତ୍ରର ନିଷ୍କର୍ଷ ବା ଏସେନ୍ସ୍ । ତର୍କ ପ୍ରବାହର ବିଧିବଦ୍ଧ ପରିଚାଳନା ମାଧ୍ୟମରେ ଅସ୍ତିତ୍ୱ କୁଆଡ଼େ ପ୍ରକଟ କରେ ନିଜ ସତ୍ତାର ସାରାଂଶ । ତର୍କର କଠୋର ଶୃଙ୍ଖଳା ଭିତରଦେଇ ତେଣୁ ଆରିଷ୍ଟୋଟ୍ଲ ବୁଝାଇବାକୁ ଚାହିଁଚନ୍ତି ଜଗତର ସ୍ୱଭାବ । ଆଶ୍ରୟବାକ୍ୟ ଯୋଉ ମୌଳିକ ତଥ୍ୟକୁ ପ୍ରକାଶକରେ, ତାକୁ ବୁଝିବାପାଇଁ ଉପାଧି ଦରକାର ହୁଏନା, ଆପେଆପେ ବୁଝାପଡ଼େ ।

କଥାଗୁଡ଼ାକ, ସନ୍ଦେହ ନାହିଁ, ବିବାକ ଆଧିଭୌତିକ । କାହିଁକିନା, ର୍ୟାସନାଲିଟି ଯଦି ସହଜାତ, ଧର୍ମ କି ଆଇନ୍‌କାନୁନ୍ ଦରକାର ହୁଅନ୍ତାନାହିଁ ଜମାରୁ; ଆଉ, ଇସ୍କୁଲ୍ ବସାଇ ଲଜିକ୍ ପଢ଼ାଇଲେ ଲୋକ ଯଦି ଜଗତ୍ ଓ ଜୀବନପ୍ରତି ସୁନୀତି ପ୍ରୟୋଗ କରୁଥାଆନ୍ତେ, ଆରିଷ୍ଟୋଟ୍ଲ ନିଜେ ଅନୁମୋଦନ କରିନଥାନ୍ତେ ଦାସପ୍ରଥା କି ପିତୃତନ୍ତ୍ର । ତା ମାନେ ନୁହେଁ ଯେ, ଆ୍ୟାକାଡେମିକ୍ ଡିସିପ୍ଲିନ୍ ହିସାବରେ ଲଜିକ୍‌ର କୋଉହେଲେ ଉପଯୋଗିତା ନାହିଁ । କିନ୍ତୁ, ଆରିଷ୍ଟୋଟ୍ଲଙ୍କ ଲଜିକ୍‌ର ସବୁଠୁଁ ବଡ଼ ଅବଦାନ ସିଲ୍ୟଜିଜ୍ମ ସମ୍ପର୍କିତ ମତବାଦ । ସିଲ୍ୟଜିଜ୍ମରେ ତର୍କର ଗଠନ ତିନିଭାଗରେ ବିନ୍ୟସ୍ତ : ପ୍ରଧାନ ଆଶ୍ରୟବାକ୍ୟ (ମେଜର୍ ପ୍ରେମିସ୍), ଗୌଣ ଆଶ୍ରୟବାକ୍ୟ (ମାଇନର୍ ପ୍ରେମିସ୍) ଓ ମୀମାଂସା (କନ୍‌କ୍ଲୁଜନ୍) । ସିଲ୍ୟଜିଜ୍ମ ଏକାପ୍ରକାର ନୁହେଁ; ପ୍ରକାରଭେଦ ଅନୁସାରେ ଶିକ୍ଷାବ୍ରତୀ ନାମକରଣ କରିଚନ୍ତି : ବାର୍‌ବାରା, ସେଲାରେଣ୍ଟ, ଡାରି ଓ ଫେରିଓ । ତନ୍ମଧ୍ୟରେ ବାର୍‌ବାରା ଅପେକ୍ଷାକୃତ ବେଶି ପରିଚିତ । ଯେପରି,

ମଣିଷ ମାତ୍ରକେ ମରଣଶୀଳ (ମେଜର୍ ପ୍ରେମିସ୍) ।
ସୋକ୍ରଟିଜ୍ ଜଣେ ମଣିଷ (ମାଇନର୍ ପ୍ରେମିସ୍) ।
ଅତଏବ ସୋକ୍ରଟିଜ୍ ମରିଚନ୍ତି ନିଶ୍ଚୟ (କନ୍‌କ୍ଲୁଜନ୍) ।

କିମ୍ବା, ମଣିଷମାତ୍ରକେ ମରଣଶୀଳ ।
ଗ୍ରୀକ୍‌ମାନେ ସମସ୍ତେ ମଣିଷ ।
ଅତଏବ ଗ୍ରୀକ୍ ବି ମରିବେ ବିବାକ ।

ଉଭୟ ପ୍ରସ୍ତାବରେ ପ୍ରଧାନ ଆଶ୍ରୟବାକ୍ୟକୁ ଗ୍ରାହ୍ୟକରନ୍ତି ସମସ୍ତେ; ମାତ୍ର ପ୍ରଥମ ପ୍ରମାଣରେ ରହିଚି ଏକବଚନ ଓ ଅତୀତକାଳ, ଦ୍ୱିତୀୟ ପ୍ରମାଣରେ ବହୁବଚନ ଓ ଭବିଷ୍ୟତ୍‌କାଳ ।

ମାଛମାତ୍ରକେ ଯୁକ୍ତି ବୁଝେନା ।
ହାଙ୍ଗର ବି ଗୋଟିଏ ମାଛ ।

ଅତଏବ ଗୋଟାଏହେଲେ ହାଙ୍ଗର ଯୁକ୍ତି ବୁଝେନା ।

ଡାରି (*Darii*)ର ଦୃଷ୍ଟାନ୍ତ :

ମଣିଷମାତ୍ରକେ ଯୁକ୍ତିପ୍ରବଣ ।

ଅନ୍ୟ କେତେ ପ୍ରାଣୀ ମଧ୍ୟ ମଣିଷ ଭଳି ।

ଅତଏବ ମନୁଷ୍ୟେତର କିଛି ଜୀବ ମଧ୍ୟ ଯୁକ୍ତିପ୍ରବଣ ।

ଫେରିଅ (*Ferio*)ର ଉଦାହରଣ :

ଗ୍ରୀକ୍ ଲୋକ କୃଷ୍ଣକାୟନୁହେଁ ।

କିନ୍ତୁ ମଣିଷଙ୍କ ଭିତରେ ଅଳ୍ପ ଲୋକ ଗ୍ରୀକ୍ ।

ଅତଏବ ଅଳ୍ପ ଲୋକ କୃଷ୍ଣକାୟ ନୁହେଁ ।

ଏକତ୍ର ସମାବେଶରେ ଉଦାହରଣ ଚତୁଷ୍ଟୟ, ଯୁକ୍ତିର ଯୋଉ ଗଢ଼ଣ ସୃଷ୍ଟିକରୁଚି, ସେଇ ଗଠନର ତା ପ୍ରଥମ ନକ୍ସା (ଫିଗର୍); ଆରିଷ୍ଟୋଟ୍ଲ ଆହୁରି ଦୁଇଟି ଫିଗର୍ ଯୋଡ଼ିଦେଇଚନ୍ତି; ଚତୁର୍ଥ ଫିଗର୍ ପ୍ରବର୍ତ୍ତନ କରିଚନ୍ତି ପରବର୍ତ୍ତୀ ଶିକ୍ଷାବ୍ରତୀ (ମଧ୍ୟଯୁଗର ସ୍କଲାଷ୍ଟିକ୍ସ) । କିନ୍ତୁ ପରବର୍ତ୍ତୀ ତିନିଟିଯାକ ନକ୍ସାକୁ ଜ୍ୟାମିତିର ସୂତ୍ରାନୁସାରେ ପର୍ଯ୍ୟବସିତ କରାଯାଇପାରେ ପ୍ରଥମଟିରେ । ପୁଣି, ଏକା ଆଶ୍ରୟବାକ୍ୟରୁ ଏକାଧିକ ସିଦ୍ଧାନ୍ତରେ ମଧ୍ୟ ପହଞ୍ଚିହେବ । ଯେପରି, 'କିଛି ମଣିଷ ମରଣଶୀଳ' ଆଶ୍ରୟବାକ୍ୟରୁ ଅନୁମାନ କରାଯାଇପାରେ 'ମରଣଶୀଳ ପ୍ରାଣୀଙ୍କ ଭିତରେ କେହି କେହି ମଣିଷ ।' ଆରିଷ୍ଟୋଟ୍ଲଙ୍କ ମତରେ ଅଭିନ୍ନ ସିଦ୍ଧାନ୍ତ ମଧ୍ୟ ସମ୍ଭବପର 'ମଣିଷ ମାତ୍ରକେ ମରଣଶୀଳ' ଭଳି ଆଶ୍ରୟବାକ୍ୟରୁ । (ଭାରତରେ ଏ ସମସ୍ୟାର ମୀମାଂସା କରିଦେଇଚି ମ୍ୟାଜିଷ୍ଟ୍ରେଟ୍-ସୁଲଭ ଘୋଷଣା : ଜାତସ୍ୟହି ଧ୍ରୁବ ମୃତ୍ୟୁ; ମଣିଷକୁ ବୁଝିବା ସକାଶେ ସିଲ୍ୟଜିଜ୍ମ ଅପେକ୍ଷା ଅଧିକ ଫଳପ୍ରସୂ) । ସେହିପରି, 'ଦେବତା କେହି ମଣଣଶୀଳ ନୁହେଁ'ରୁ ସିଦ୍ଧାନ୍ତ କରାଯାଇପାରେ, 'ମରଣଶୀଳ ମାତ୍ରକେ କେହି ଦେବତା ନୁହେଁ'; ମାତ୍ର 'କିଛିଲୋକ ଗ୍ରୀକ୍ ନୁହେଁ'ରୁ ଯଦି ଅନୁମାନକରୁଁ, 'କିଛି ଗ୍ରୀକ୍ ମୂଳରୁ ମଣିଷ ନୁହେଁ', ସିଦ୍ଧାନ୍ତଟା ହେବ ପ୍ରମାଦ । ଏଇଭଳି ଯେତେ ଅନୁମିତି, ସେଗୁଡ଼ିକୁ ବାଦ୍‌ଦେଲେ ସୁଦ୍ଧା, ଆରିଷ୍ଟୋଟ୍ଲ ଓ ତାଙ୍କ ଅନୁବର୍ତ୍ତୀ ଭାବିଚନ୍ତି, କାରଣ ଦେଖି କାର୍ଯ୍ୟନିର୍ଣ୍ଣୟ ଭଳି ଅବରୋହୀ ତର୍କ, ନିଷ୍ଠାପୂର୍ବକ ଚଳାଇପାରିଲେ, ଯୋଉ ସିଦ୍ଧାନ୍ତ ବାହାରିବ, ବିନା ବ୍ୟତିକ୍ରମରେ ହେବ ସିଲ୍ୟଜିଜ୍ମର ଅନ୍ତର୍ଗତ । ଅର୍ଥାତ୍, ସିଲ୍ୟଜିଜ୍ମର ନିର୍ଭୁଲ୍ ପ୍ରୟୋଗ ହେତ୍ୱାଭାସ (ଫ୍ୟାଲାସି) ସମ୍ଭାବନାକୁ ପ୍ରତିରୋଧ କରିପାରେ ।

ଏଇ ସିଷ୍ଟେମ୍ ସୂଚନାକରିଚି ଆକାରବିଶିଷ୍ଟ ଲଜିକ୍‌ର ପ୍ରଚଳନ । ଅଥଚ ମହିମାନ୍ୱିତ ସୂତ୍ରପାତ ସତ୍ତ୍ୱେ, ପରିଣତ ଅବସ୍ଥାରେ, ଫର୍ମାଲ୍ ଲଜିକ୍ ସମ୍ମୁଖୀନହୋଇଚି

ତିନିରକମ ସମାଲୋଚନା : (୧) ସିଷ୍ଟେମ୍‌ର ଅନ୍ତର୍ନିହିତ ଅପୂର୍ଣ୍ଣତା, (୨) ଅବରୋହୀ ପଦ୍ଧତିର ଅନ୍ୟାନ୍ୟ ଧାରଣ ତୁଳନାରେ ସିଲ୍ୟଜିଜ୍ମ ଉପରେ ମାତ୍ରାଧିକ ନିର୍ଭରତା, ଓ (୩) ତର୍କପରିଚାଳନାର ନାନାଦି ପ୍ରକରଣ ଭିତରୁ ଅବରୋହୀ ସିଷ୍ଟେମ୍ ପ୍ରତି ବିଶେଷ ପକ୍ଷପାତ । ତ୍ରୁଟିଗୁଡ଼ିକ ବିଷୟରେ ଆଲୋଚନା କରାଯାଉ ସଂକ୍ଷେପରେ । 'ଫର୍‌ମାଲ୍' କହିଲେ ବୁଝିବାକୁ ହେବ, ରୂପବିଶିଷ୍ଟ କିନ୍ତୁ ନିଷ୍ପ୍ରାଣ; ଖାଲି ନୀତିନିୟମର ଆଡ଼ମ୍ବର, ଅର୍ଥାତ୍ 'ଔପଚାରିକ' । ଔପଚାରିକ ତ୍ରୁଟି ଚିହ୍ନଟକରିବା ସକାଶେ ଦୁଇଟି ବୟାନକୁ କେବଳ ବିଚାରକୁ ନିଆଯାଉ : 'ସୋକ୍ରଟିଜ୍ ଜଣେ ମଣିଷ' ଏବଂ 'ଗ୍ରୀକ୍ ମାତ୍ରକେ ମନୁଷ୍ୟ' । ଦୁଇଟିଯାକ ବୟାନ ମଧ୍ୟରେ ରହିଚି ତୀକ୍ଷ୍ଣ ପାର୍ଥକ୍ୟ, ଆରିଷ୍ଟୋଟ୍ଲୀୟ ଲଜିକ୍ ଯା ଧରିପାରେନା । 'ଗ୍ରୀକ୍ ମାତ୍ରକେ ମନୁଷ୍ୟ' – ଏ ବାକ୍ୟ ସାଧାରଣତଃ ବୁଝାଇବ ମଣିଷଙ୍କ ଭିତରେ ଗ୍ରୀକ୍ ଅନ୍ୟତମ । ଗ୍ରୀକ୍‌ମାନଙ୍କ ଅସ୍ତିତ୍ୱ ବିଷୟରେ ନିଃସଂଶୟ ଇଙ୍ଗିତ ନ ଥିଲେ, ଆରିଷ୍ଟୋଟ୍‌ଲଙ୍କ ସିଲ୍ୟଜିଜ୍ମ ବିବେଚିତ ହେବନାହିଁ ବୈଧ । କାହିଁକିନା, 'ଗ୍ରୀକ୍ ମାତ୍ରକେ ମନୁଷ୍ୟ, ଗ୍ରୀକ୍ ମାତ୍ରକେ ଶ୍ୱେତକାୟ, ଅତଏବ କେତେକ ମନୁଷ୍ୟ ଶ୍ୱେତକାୟ' – ଏ ସିଦ୍ଧାନ୍ତ ନିର୍ଭୁଲ୍ ହେବ ଗ୍ରୀକ୍ ଯଦି ସତକୁସତ ଦୁନିଆରେ ଥାଆନ୍ତି; ଅନ୍ୟଥା ହେବନାହିଁ । ପୁଣି, ଯଦି କହିବୁଁ : 'ସୁନାପାହାଡ଼ ମାତ୍ରକେ ପାହାଡ଼, ସୁନାପାହାଡ଼ ମାତ୍ରକେ ସୁନେଲି, ଅତଏବ କେତେକ ପାହାଡ଼ର ବର୍ଣ୍ଣ ସ୍ୱର୍ଣ୍ଣାଭ' – ଆଶ୍ରୟବାକ୍ୟ ବିଭିନ୍ନ ଅର୍ଥରେ ନିର୍ଭୁଲ୍ ହେଲେସୁଦ୍ଧା, ମୀମାଂସା ହେବନାହିଁ 'ସତ୍ୟ' ପଦବାଚ୍ୟ । ବୟାନକୁ ସ୍ପଷ୍ଟକରିବାକୁ ହେଲେ, 'ଗ୍ରୀକ୍ ମାତ୍ରକେ ମନୁଷ୍ୟ' ବାକ୍ୟଟାକୁ ଦୁଇଭାଗରେ ବିଭକ୍ତକରିବାକୁ ପଡ଼ିବ : (୧) 'ଗ୍ରୀକ୍ ଅଛନ୍ତି ଅନେକ', (୨) ଏବଂ 'ଗ୍ରୀକ୍ ବୋଲି ଯଦି କେହି ଥାଏ, ସିଏ ଜଣେ ମନୁଷ୍ୟ' । ଦ୍ୱିତୀୟ ଅଂଶଟି ସମ୍ପୂର୍ଣ୍ଣ ଏକ ହାଇପଥେସିସ୍ ଏବଂ ଇଙ୍ଗିତକରୁନାହିଁ ଯେ ଗ୍ରୀକ୍ ଅଛନ୍ତି ସତକୁସତ । ଆକାର(ରୂପ)ରେ ତେଣୁ 'ଗ୍ରୀକ୍ ମାତ୍ରକେ ମନୁଷ୍ୟ' ଏକ ଜଟିଳ ପ୍ରସ୍ତାବ, 'ସୋକ୍ରଟିଜ୍ ଜଣେ ମଣିଷ' ଅପେକ୍ଷା ଜଟିଳ । 'ସୋକ୍ରଟିଜ୍ ଜଣେ ମଣିଷ' – ବାକ୍ୟର କର୍ତ୍ତା (ସବ୍‌ଜେକ୍ଟ୍) ସୋକ୍ରଟିଜ୍; ମାତ୍ର 'ଗ୍ରୀକ୍ ମାତ୍ରକେ ମନୁଷ୍ୟ' – ବାକ୍ୟର କର୍ତ୍ତା ସବୁଯାକ ଗ୍ରୀକ୍ ନୁହନ୍ତି, କାହିଁକିନା, 'ଗ୍ରୀକ୍ ଅଛନ୍ତି ଅନେକ'ର ଯେମିତି କର୍ତ୍ତା ନାହିଁ, 'ଗ୍ରୀକ୍ ଯଦି କେହି ଥାଏ, ସିଏ ଜଣେ ମନୁଷ୍ୟ'ର ମଧ୍ୟ କର୍ତ୍ତା ନାହିଁ ।

ଔପଚାରିକ ଏଇ ତ୍ରୁଟି ତେଣୁ ପ୍ରସବକରିଚି ନାନାଦି ବିଭ୍ରାନ୍ତି । ଆରିଷ୍ଟୋଟ୍‌ଲଙ୍କ *ମେଟାଫିଜିକ୍ସ*ରେ ଯେତିକି, *ଥିୟରି ଅଫ୍ ନଲେଜ୍*ରେ ତଦପେକ୍ଷା ଊଣା ନୁହେଁ । ଯେପରି, 'ସୋକ୍ରଟିଜ୍ ମଧ୍ୟ ମୃତ୍ୟୁର ଅଧୀନ' ଓ 'ମଣିଷ ମାତ୍ରକେ ମରଣଶୀଳ' – ଏଇ ଦୁଇ ପ୍ରସ୍ତାବରୁ ଅନୁମାନ କରିହେବ ଜ୍ଞାନର ଅବସ୍ଥା ଥିଲା କି ରକମ । ସୋକ୍ରଟିଜ୍ ମଧ୍ୟ

ମୃତ୍ୟୁର ଅଧୀନ ଅଥବା ସୋକ୍ରଟିଜ୍ ମଧ୍ୟ ମରିଚନ୍ତି, ବାକ୍ୟର ସତ୍ୟତା ନିର୍ଭରକରୁଚି ପ୍ରତ୍ୟକ୍ଷ ପ୍ରମାଣ ଉପରେ; କିନ୍ତୁ ପତ୍ୟକ୍ଷ ପ୍ରମାଣ ବିଶ୍ୱାସଯୋଗ୍ୟ ହେବ, ଯଦି କିଏ ସୋକ୍ରଟିଜ୍‌ଙ୍କୁ ଜାଣିଥିବ ଓ ତାଙ୍କ ମୃତ୍ୟୁକୁ କରିଥିବ ପ୍ରତ୍ୟକ୍ଷ । ଅର୍ଥାତ୍, ସୋକ୍ରଟିଜ୍‌ଙ୍କ ମୃତଶରୀରକୁ ନିଜେ ଦେଖିଥିବ ଓ ଦେଖିସାରି ଦେହଟାକୁ ଲୋକ କହୁଥିଲେ 'ସୋକ୍ରଟିଜ୍' ବୋଲି ଜାଣିପାରିଥିବ – ଏଇ ଦୁଇଟି ପ୍ରମାଣ ଉପରେ ନିର୍ଭରକରୁଚି ସୋକ୍ରଟିଜ୍‌ଙ୍କ ମରଣଶୀଳତାର ସତ୍ୟତା । କିନ୍ତୁ 'ମଣିଷ ମାତ୍ରକେ ମରଣଶୀଳ' – ଏ ଜ୍ଞାନ, ଲଜିକ୍‌ରୁ ଆସିନାହିଁ, କାହିଁକିନା, ସର୍ବସାଧାରଣ ସତ୍ୟକୁ ଠାବକରିବା ଭଳି ଜ୍ଞାନ ଆଦୌ ନିର୍ଭରଯୋଗ୍ୟ ନୁହେଁ । ସେ ଜ୍ଞାନ ଖାଲି ବାଚନିକ (ଲୋକଶ୍ରୁତି), ଯେମିତି 'ଗ୍ରୀକ୍ ମାତ୍ରକେ ମନୁଷ୍ୟ' । ଏ ଜ୍ଞାନ ଅମଳପାଇଚି ଯେହେତୁ 'ଗ୍ରୀକ୍' ବୋଲି କାହାକୁ ଚିହ୍ନିବା ସମ୍ଭବପର ନୁହେଁ, ଯଦି ମନୁଷ୍ୟ କେବଳ ମାତ୍ର ନାମ-ରୂପ ନୁହେଁ । 'ଗ୍ରୀକ୍' ଭଳି ଏକ ସାଧାରଣ ପରିଚୟର ଜ୍ଞାନ ଅଭିଧାନରୁ ମଧ୍ୟ ମିଳିପାରେ ମାତ୍ର ଅଭିଧାନ ଜଗତ୍ ସମ୍ବନ୍ଧରେ କିଛିହେଲେ କହିପାରେନା, ଜଣାଏ କେବଳ ଶବ୍ଦପ୍ରୟୋଗ ବିଧି । 'ମଣିଷ ମାତ୍ରକେ ମରଣଶୀଳ' ବାଚ୍ୟାର୍ଥ ନୁହେଁ କି ଭାବାର୍ଥ ନୁହେଁ । କୁହାଯାଇପାରେ , ବିଶୁଦ୍ଧ ଜ୍ଞାନ । ଯେପରି, ମଣିଷ ମରଣକୁ ଜୟକରିପାରେ ଅଥବା ମଣିଷ ବିବର୍ତ୍ତନର ଅନ୍ତିମ ବିନ୍ଦୁ ନୁହେଁ । ତତ୍ତ୍ୱସ୍ତରରେ ଅନ୍ତତଃ, ବୟାନ ଭିତରେ ସ୍ୱବିରୋଧ ନାହିଁ । କାହିଁକିନା, 'ଅମରମାନବ' ଲଜିକ୍ ଦୃଷ୍ଟିରେ ଫ୍ୟାଲାସି ନୁହେଁ । ଏ ପ୍ରତ୍ୟୟ ସିଦ୍ଧହୋଇପାରେ ଆରୋହୀ (ଇଣ୍ଡକ୍ଟିଭ୍) ପଦ୍ଧତିରେ । ଦେଢ଼ଶ' ବର୍ଷରୁ ଅଧିକ ବଞ୍ଚିଥିବା ଲୋକର ପ୍ରତ୍ୟକ୍ଷ ନିଦର୍ଶନ ମିଳିନାହିଁ ଅଦ୍ୟାବଧି; କିନ୍ତୁ ଦେଢ଼ଶ'ବର୍ଷ ପରମାୟୁ ଅମରତ୍ୱ ପ୍ରତ୍ୟୟକୁ କରିଦେଉଚି ସମ୍ଭାବ୍ୟ, ନିଶ୍ଚିତ ନୁହେଁ । ମରଶରୀର ବିଶିଷ୍ଟ ମଣିଷ ଚତୁର୍ଦ୍ଦିଗରେ ଚଲାବୁଲା କରୁଥିବା ଯାଏଁ ଅମରତ୍ୱ ବିଷୟରେ ନିଶ୍ଚିତହେବା ଅସମ୍ଭବ । କିଏ କହିବ, ତାଙ୍କ ଭିତରେ କିଏ ମୃତ୍ୟୁଞ୍ଜୟ ! ଭାରତରେ କୁଆଡ଼େ ସେଭଳି ମହାପୁରୁଷଙ୍କ ସାକ୍ଷାତ୍ ମିଳୁଚି କ୍ୱଚିତ୍ କଦାଚିତ୍ । ଆରିଷ୍ଟୋଟ୍ଲଙ୍କ ଜ୍ଞାନ ସମ୍ବନ୍ଧୀୟ ଅବବୋଧ ତେଣୁ ମୁଖ୍ୟତଃ ବଚନନିର୍ଭର । ଏବଂ ସେଥିପାଇଁ ଆରୋହୀ ପଦ୍ଧତି ବା ଇଣ୍ଡକ୍ଟିଭ୍ ଲଜିକ୍ ପ୍ରତ୍ୟକ୍ଷ ପ୍ରମାଣ ନୁହେଁ, ବିଶୁଦ୍ଧ ଜ୍ଞାନ । ଯା ପ୍ରତ୍ୟକ୍ଷ, ତା ଇନ୍ଦ୍ରିୟଗାହ୍ୟ । ଏବଂ ଯା ଇନ୍ଦ୍ରିୟଗ୍ରାହ୍ୟ, ତା ଗୋଟାପଣେ ପ୍ରେଡିକେଟ୍ ନୁହେଁ, ନିଜେ ମଧ୍ୟ ସବଜେକ୍ଟ, ଅର୍ଥାତ୍ ଅନ୍ୟ କାହାର ଗୁଣଧର୍ମ, ଅଙ୍ଗପ୍ରତ୍ୟଙ୍ଗ ବା ଲକ୍ଷଣ ହେବା ଉପରେ ତା ଅସ୍ତିତ୍ୱ ନିର୍ଭର କରେନା ।

ମେଟାଫିଜିକ୍ୟାଲ୍ ବିଭ୍ରାନ୍ତି ଉପୁଜିଚି ଏଇ ଅନୁମାନରୁ ଯେ 'ମଣିଷ ମାତ୍ରକେ' ଏକ କର୍ତ୍ତାପଦ; 'ମଣିଷ ମାତ୍ରକେ ମରଣଶୀଳ'ବାକ୍ୟର କର୍ତ୍ତା । କର୍ତ୍ତା ହୋଇପାରେ ବ୍ୟାକରଣ ଦୃଷ୍ଟିରେ; ମାତ୍ର ଯୋଉ ଅର୍ଥରେ 'ସୋକ୍ରଟିଜ୍ ମରଣଶୀଳ', ସେଇ ଅର୍ଥରେ

ନୁହେଁ । କାହିଁକିନା, 'ମଣିଷ ମାତ୍ରକେ'କୁ କର୍ତ୍ତା ଭାବିବାକ୍ଷଣି 'ମଣିଷ ମାତ୍ରକେ' ଚିହ୍ନିତକରିବ ଏକଶ୍ରେଣୀଭୁକ୍ତ ସମସ୍ତ ମଣିଷ; ଏପରି ଅବିଭାଜ୍ୟ ସତ୍ତା, 'ସୋକ୍ରେଟିଜ୍' ନାମଧେୟ କର୍ତ୍ତାପଦ ଯାହାକୁ ଚିହ୍ନିତକରିପାରେ । ଆରିଷ୍ଟୋଟ୍ଲଙ୍କୁ ତେଣୁ କହିବାକୁ ସୁବିଧାହୋଇଚି ଯେ କୋଉନାକୋଉ ବ୍ୟଞ୍ଜନାରେ ପ୍ରଜାତି ହିଁ ଅସଲ ସତ୍ୱ ( ଏସେନ୍ସ), ଭାରତୀୟ ଚିନ୍ତାରେ ଯେପରି 'ପୁରୁଷ' । ଅବଶ୍ୟ ଯଥେଷ୍ଟ ସତର୍କତା ଅବଲମ୍ବନ କରିଚନ୍ତି ପ୍ରଜାତି ଭଳି ସତ୍ତାକୁ ବୈଶିଷ୍ଟ୍ୟ ଦେବାବେଳେ; ମାତ୍ର ଶିଷ୍ୟ, ବିଶେଷତଃ ପଅଫ୍ରୁହୀ (ଖ୍ରୀ. ୨୩୩-୩୦୪), ଆରିଷ୍ଟୋଟ୍ଲଙ୍କ *କ୍ୟାଟିଗରିଜ୍*ର ଭାଷ୍ୟ ଲେଖିବାବେଳେ ଭାବିନାହାନ୍ତି, ଗୁଣାରୋପ ଆଦୌ ଆବଶ୍ୟକ । କିନ୍ତୁ ମେଟାଫିଜିକ୍ସର ଅନ୍ୟତମ ପ୍ରଧାନ ଉପସର୍ଗ, ଅଣ୍ଟୋଲଜି । ଆଣ୍ଟୋଲଜି ହିଁ ବତାଇଦିଏ କୋଉ ଉପାଦାନ ରିଆଲିଟି ଗଠନ ପ୍ରକ୍ରିୟାରେ ସର୍ବାଧିକ ମୌଳିକ । ବସ୍ତୁବାଦୀ କହିବେ ପଞ୍ଚଭୂତ । ମାତ୍ର ଆରିଷ୍ଟୋଟ୍ଲ ବସ୍ତୁବାଦୀ ନୁହେଁ; ଜଗତ୍ ତାଙ୍କ ଦୃଷ୍ଟିରେ ଆକସ୍ମିକ ଘଟଣା ନୁହେଁ; ପ୍ରତୀୟମାନ ସମସ୍ତ ପ୍ରପଞ୍ଚ ଉଦ୍ଦେଶ୍ୟଯୁକ୍ତ ଏବଂ ଉଦ୍ଦେଶ୍ୟ ସର୍ବଦା ମଙ୍ଗଳ । ମାନବପ୍ରଜାତି, ଗ୍ରୀକ୍‌ଜାତି ଓ ସୋକ୍ରେଟିଜ୍‌ଙ୍କ ଅଣ୍ଟୋଲଜିକ୍ୟାଲ୍ ପରିସର ତେବେ ଭିନ୍ନଭିନ୍ନ ହେବା ସଙ୍ଗତ । ଆରିଷ୍ଟୋଟ୍ଲଙ୍କ କଳ୍ପନାରେ କିନ୍ତୁ ତିନିଟିଯାକ ଚିହ୍ନାୟନ ଶଙ୍କରଙ୍କ 'ମାୟା'ଭଳି ଭେଳିକି । ମୂଳ ପରିଚୟରେ, ଅଭିନ୍ନ ସତ୍ୱ; ଅର୍ଥାତ୍, ସତ୍‌ସ୍ୱରୂପର ଭିନ୍ନଭିନ୍ନ ପ୍ରକାଶମାତ୍ର । ସବ୍‌ଜେକ୍ଟଠାରୁ ପ୍ରେଡିକେଟ୍ ତେଣୁ ଅଭିନ୍ନ । ପ୍ରଜାତି, ଜାତି, ଏକକ ମାନବ, ପୁଣି ଗୁଣଯୁକ୍ତ ସୋକ୍ରେଟିଜ୍ ପରସ୍ପରଠାରୁ ଅବିଚ୍ଛିନ୍ନ । ମାତ୍ର, ଏ ବିଚାରରେ ଲଜିକ୍‌ର ଶୃଙ୍ଖଳା ନାହିଁ, ସତ୍ୟପ୍ରମାଣ ପ୍ରତି ନିଷ୍ଠା ମଧ୍ୟ ନାହିଁ ।

ଏଇ ପ୍ରମାଦକୁ ଅନୁସରଣକରି ଆଉଯୋଉ ବିଭ୍ରାନ୍ତି ସମ୍ମୁଖୀନହୋଇଚନ୍ତି ଆରିଷ୍ଟୋଟ୍ଲ, ମେଧାବୀ ପାଖରୁ ତା ଅପ୍ରତ୍ୟାଶିତ : ଭାବିଚନ୍ତି, ପ୍ରେଡିକେଟ୍‌ର ପ୍ରେଡିକେଟ୍ ମଧ୍ୟ ହୋଇପାରେ ଆଦିକର୍ତ୍ତାର ପ୍ରେଡିକେଟ୍ । ଯଦି କହୁଁ, ସୋକ୍ରେଟିଜ୍ ଗ୍ରୀକ୍,ପୁଣି ଗ୍ରୀକ୍ ମାତ୍ରକେ 'ଜାତିରେ ମନୁଷ୍ୟ', ଆରିଷ୍ଟୋଟ୍ଲ କହିବେ, 'ଜାତିରେ ମନୁଷ୍ୟ' ଗ୍ରୀକ୍-ର ପ୍ରେଡିକେଟ୍ ଆଉ 'ଗ୍ରୀକ୍' ସୋକ୍ରେଟିଜ୍‌ଙ୍କ ପ୍ରେଡିକେଟ୍ ଏବଂ ଅନିବାର୍ଯ୍ୟଭାବେ 'ଜାତିରେ ମନୁଷ୍ୟ' ମଧ୍ୟ ସୋକ୍ରେଟିଜ୍‌ଙ୍କ ପ୍ରେଡିକେଟ୍ । କିନ୍ତୁ ବାସ୍ତବରେ 'ଜାତିରେ ମନୁଷ୍ୟ' ଗ୍ରୀକ୍‌ର ପ୍ରେଡିକେଟ୍ ନୁହେଁ । ନାମବାଚକ ଶବ୍ଦ ଓ ପ୍ରେଡିକେଟ୍ ମଧ୍ୟସ୍ଥ ପାର୍ଥକ୍ୟ ମାତ୍ର । ପରାବିଦ୍ୟା ପରିଭାଷାରେ ନିର୍ଦ୍ଦିଷ୍ଟ ଓ ନିଖିଳ ମଧ୍ୟସ୍ଥ ପାର୍ଥକ୍ୟ ହୋଇଥାଏ ଅସ୍ପଷ୍ଟ; ଯୋଉ ଅସ୍ପଷ୍ଟତା ଦର୍ଶନବିଦ୍ୟା ପକ୍ଷରେ ଆକସ୍ମିକ ଦୁର୍ଘଟଣା । ଯେପରି, କୋଉ ହେଲେ ଶ୍ରେଣୀ/ଜାତିର ଜଣେମାତ୍ର ଲୋକକୁ ସମଗ୍ର ଶ୍ରେଣୀ/ଜାତିର ଅଭିନ୍ନ ରୂପ ବୋଲି ଯଦି ଗଣ୍ୟ କରାଯାଏ, 'ଏକ' ସଂଖ୍ୟା ବିଷୟରେ ନିର୍ଭୁଲ୍ ଅବବୋଧ ତିଆରି ହେବନାହିଁ,

ବିଶେଷତଃ ତତ୍ତ୍ୱ ସ୍ତରରେ । ସେଥିରୁ ଉପୁଜିବ ଇଉନିଟି ବା ଐକ୍ୟ ବିଷୟରେ ଅନ୍ତହୀନ ବିଭ୍ରାନ୍ତି, ମେଟାଫିଜିକ୍ସରେ ଅନ୍ତତଃ । ଅର୍ଥାତ୍, ପରାବିଦ୍ୟାରେ 'ଏକ'/'ଅନେକ'/ 'ଐକ୍ୟ' ଭଳି ପ୍ରତ୍ୟୟର ସ୍ୱତନ୍ତ୍ରତା ସବୁବେଳେ ଅନିଶ୍ଚିତ; ଆରିଷ୍ଟୋଟ୍ଲଙ୍କ ତର୍କ-ସିଷ୍ଟେମ୍‌ର ଯା ନିହିତ ଅପୂର୍ଣ୍ଣତା ।

ଦ୍ୱିତୀୟ ଆପତ୍ତି : ଅବରୋହୀ ପଦ୍ଧତିର ଅପରାପର ଆକାର ତୁଳନାରେ ସିଲ୍ୟଜିଜ୍ମ ଉପରେ ମାତ୍ରାଧିକ ଗୁରୁତ୍ୱ ଆରୋପ । ସିଲ୍ୟଜିଜ୍ମ ଆରିଷ୍ଟୋଟ୍ଲଙ୍କ ଉଦ୍‌ଭାବନ ହେଲେସୁଦ୍ଧା, ଅବରୋହୀ ପଦ୍ଧତିର ଅନ୍ୟତମ ଧରଣ ମାତ୍ର, ଏକମାତ୍ର ପ୍ରକରଣ ନୁହେଁ । ଗଣିତରେ ମଧ୍ୟ ସିଦ୍ଧାନ୍ତରେ ପହଞ୍ଚିବା ପଦ୍ଧତି ପୂରାପୂରି ଅବରୋହୀ, କିନ୍ତୁ ସିଲ୍ୟଜିଜ୍ମ ଘଟେ କଦାଚିତ୍ । ସିଲ୍ୟଜିଜ୍ମ ନୋର୍ଟେସନ୍‌ରେ ଗଣିତର ଯୁକ୍ତିକ୍ରମକୁ ମଧ୍ୟ ଲେଖିହେବ; ମାତ୍ର ପଦ୍ଧତି ହେବ କୃତ୍ରିମ; ସ୍ୱାଭାବିକ ନହେଲେ ଯୁକ୍ତିଧାରା ତେଣୁ ହେବନାହିଁ ଦୃଢ଼ କି ଅକାଟ୍ୟ । ପାଟିଗଣିତରୁ ଉଦାହରଣ ନିଆଯାଉ : ଯଦି ଟ. ୪.୬୩ ପଇସା ମୂଲ୍ୟର ଜିନିଷ କିଣି ଦୋକାନୀକୁ ପାଞ୍ଚଟଙ୍କିଆ ନୋଟ୍ ଦିଆଯାଏ, କେତେ ରେଜାପଇସା ଫେରାଇବ ? ଖୁଚୁରା ପଇସାକୁ ସିଲ୍ୟଜିଜ୍ମ ଆକାରରେ ଲେଖିଲେ ଖାଲି ହାସ୍ୟାସ୍ପଦ ହେବନାହିଁ, ଦେଣ-ଲେଣ ବି ହୋଇଯିବ ବାଟବଣା; ଅର୍ଥାତ୍ ଯୁକ୍ତିର ଚରିତ୍ରକୁ ଢାଙ୍କିପକାଇବ ପ୍ରେମିସ୍ । ପୁଣି ଲଜିକ୍ ଯଦି ସତ୍ୟସନ୍ଧାନର ଅନ୍ୟତମ ବିଧାନ, ତା ଭିତରେ ଏପରି ଅନେକ ସିଦ୍ଧାନ୍ତ ରହିବ ସିଲ୍ୟଜିଜ୍ମରୁ ଯା ନିର୍ଗତନୁହେଁ । ଯେପରି, 'ଘୋଡ଼ା ଏକ ପଶୁ, ଅତଏବ ଘୋଡ଼ାମୁଣ୍ଡ ଏକ ପଶୁମୁଣ୍ଡ' । ବୈଧ ସିଲ୍ୟଜିଜ୍ମ ପ୍ରକୃତରେ ବୈଧ ଏକ ଡିଡକ୍‌ସନ୍; ତେଣୁ ଅନ୍ୟାନ୍ୟ ଡିଡକ୍ସନ୍ ଉପରେ ଅଗ୍ରାଧିକାର ପାଇବା ସିଲ୍ୟଜିଜ୍ମ ପାଇଁ ଅସଙ୍ଗତ । ଅପରାପର ମୀମାଂସା ଉପରେ ସିଲ୍ୟଜିଜ୍ମକୁ ଥୋଇବା ଫଳରେ ଦର୍ଶନବିଦ୍ ଗଣିତର ଯୁକ୍ତିକୁ ବି ବୁଝିପାରିନାହାନ୍ତି ଯଥାଯଥ । ଗଣିତର ଯୁକ୍ତି ମାନେ, ଯୋଉ ରୀତିରେ ସମାଧାନ କରାଯାଏ ସମସ୍ୟା; ସେ ରୀତି ସିଲ୍ୟଜିଜ୍ମଠାରୁ ସମ୍ପୂର୍ଣ୍ଣ ଅଲଗା । କାଣ୍ଟ ପ୍ରଥମେ ବୁଝିପାରନ୍ତି ଏ ପ୍ରଭେଦ; କିନ୍ତୁ ଅନୁମାନକରନ୍ତି, ଗଣିତର ଯୁକ୍ତିଧାରା ଲଜିକ୍‌ର ଅତିରିକ୍ତ ହେଲେସୁଦ୍ଧା, ଲଜିକ୍ ଭଳି ନିଃସଂଶୟ । ଆରିଷ୍ଟୋଟ୍ଲଙ୍କ ପ୍ରତି ଶ୍ରଦ୍ଧାର ଏଇ ଖେସାରତ୍ ।

ତୃତୀୟ ଆପତ୍ତି : ତର୍କ ପରିଚାଳନାର ବିବିଧ ପଦ୍ଧତି ଭିତରୁ ଅବରୋହ ପଦ୍ଧତି ପ୍ରତି ମାତ୍ରାଧିକ ପକ୍ଷପାତ । ହୋଇପାରେ, ଜ୍ଞାନଲାଭର ଉପାୟ ଭାବରେ ଗ୍ରୀକ୍ ଦେଇଚନ୍ତି ଡିଡକ୍ସନ୍‌କୁ ସମଧିକ ଗୁରୁତ୍ୱ । ଏକାଳର ଦର୍ଶନବିଦ୍ କିନ୍ତୁ ଡିଡକ୍ସନ୍‌କୁ ମନେକରନ୍ତି ଲଜିକ୍‌ର ଅନ୍ୟତମ ପ୍ରକରଣ, ଏମାତ୍ର ନୁହେଁ । ସେ ବିଚାରରେ ପ୍ଲାଟୋଙ୍କ ଅପେକ୍ଷା ଆରିଷ୍ଟୋଟ୍ଲ ଉଦାରମନସ୍କ, କାହିଁକିନା, ଇଣ୍ଡକ୍ସନ୍ ଉପରେ ଆରିଷ୍ଟୋଟ୍ଲ

ଜୋର୍‌ଦେଇଚନ୍ତି ବାରମ୍ବାର ଏବଂ ଯୋଉ ଗୋଟିଏ ପ୍ରଶ୍ନର ଉତ୍ତର ଖୋଜିବାକୁ ଯଥେଷ୍ଟ ମନୋନିବେଶ କରିଚନ୍ତି, ତା କେବଳ ସେଇ ଆଦ୍ୟ ପ୍ରତିଜ୍ଞାଟି ଯୋଉଥିରୁ ସୁରୁହେବ ଅବରୋହୀ ପଦ୍ଧତିରେ ଅନୁସନ୍ଧାନ । ଏବଂ ପ୍ରାସଙ୍ଗିକ ସଂଶୟ ସତ୍ତ୍ୱେ, ଅପରାପର ଗ୍ରୀକ୍ ଭାବୁକଙ୍କ ଭଳି ନିଜ ଜ୍ଞାନତତ୍ତ୍ୱ ନିର୍ମାଣରେ ଡିଡକ୍‌ସନ୍‌କୁ ଦେଇଚନ୍ତି ଅସଙ୍ଗତ ପ୍ରାଧାନ୍ୟ ।

ମାନିବାକୁ କୁଣ୍ଠାନାହିଁ ଯେ ଫକୀରମୋହନ ଥିଲେ ନିଜେ ମରଣଶୀଳ । ଜାଣିଲୁଁ କେମିତି ନା, ମରିବାକୁ ଦେଖିଛୁଁ ବିବାକ ମଣିଷଙ୍କୁ । କିନ୍ତୁ ସତକୁସତ ବିବାକ ମଣିଷ ମରୁନାହାନ୍ତି ଆମ ଆଖିଆଗରେ । ବରଂ, ମଣିଷ ମରଣଶୀଳ ବୋଲି ଜାଣୁଛୁଁ, କେମିତି ନା, ଦେଢ଼ଶ' ବର୍ଷ ଆଗରୁ ଯେତେଲୋକ ଜନ୍ମ ହୋଇଥିଲେ, ମରିଯାଇଚନ୍ତି ସମସ୍ତେ, ଏବଂ, ଏକ୍ଷଣି ଦେଖୁଛୁଁ ଶହେବର୍ଷ ଆଗରୁ ଜନ୍ମ ହୋଇଥିବା ଲୋକ ମରିଯାଉଚନ୍ତି ଗୋଟିକ ପଛକୁ ଗୋଟିଏ । ଏଇ ନିରୀକ୍ଷଣରୁ ବୁଝୁଛୁଁ ଫକୀରମୋହନ ମରିଚନ୍ତି, ଆଉ ତାଙ୍କରି ଭଳି ଅନ୍ୟ ଲୋକ ବି ବୁଢ଼ାହୋଇ ମରିଯିବେ । ଏ ଯୁକ୍ତି ଗୋଟିଏ ଇଣ୍ଡକ୍‌ସନ୍, ଡିଡକ୍‌ସନ୍ ନୁହେଁ କାହିଁକିନା, 'ମଣିଷ ମରଣଶୀଳ' ଭଳି ଆଦ୍ୟ ପ୍ରତିଜ୍ଞାକୁ ସିଦ୍ଧକରୁନାହିଁ, ସୂଚନାକରୁଚି ସମ୍ଭାବନା ବା ପ୍ରୋବେବିଲିଟି । ମାତ୍ର ପ୍ରବେବିଲିଟିରୁ ଉଦ୍‌ଗତହେଉଚି ଯୋଉ ନୂତନ ଜ୍ଞାନ, ଡିଡକ୍‌ସନ୍ ପ୍ରସବକରିପାରେନା ଅନୁରୂପ ଅବବୋଧ । ସେଥିପାଇଁ, ଲଜିକ୍ ଓ ବିଶୁଦ୍ଧଗଣିତ ବହିର୍ଭୂତ ଯେତେ ଯୁଗାନ୍ତକାରୀ ସିଦ୍ଧାନ୍ତ, ସବୁଗୁଡ଼ାକ ଇଣ୍ଡକ୍‌ଟିଭ୍ । ଏକମାତ୍ର ବ୍ୟତିକ୍ରମ ଆଇନ୍‌କାନୁନ୍ ଓ ଈଶ୍ୱରତତ୍ତ୍ୱ (ଥିୟଲଜି), କାହିଁକିନା, ଆଦ୍ୟ ପ୍ରତିଜ୍ଞାକୁ ସେଥିରେ ପ୍ରଶ୍ନକରାଯାଏନା କସ୍ମିନ୍‌କାଳେ । ଯେପରି, ଧର୍ମଗ୍ରନ୍ଥ କି ସ୍ମୃତିସଂହିତାରେ ବିବୃତ ଜ୍ଞାନତତ୍ତ୍ୱର ଆଦ୍ୟପ୍ରତିଜ୍ଞା । ଆରିଷ୍ଟୋଟ୍ଲ ଶେଷକୁ ଧରିଛନ୍ତି ସେଇବାଟ; ଈଶ୍ୱର ଏକମାତ୍ର ସବ୍‌ଜେକ୍ଟ, ଇନ୍ଦ୍ରିୟଗୋଚର ଜଗତ ତାଙ୍କ ପ୍ରେଡ଼ିକେଟ୍ । ଲଜିକ୍ ଆଉ ବାଟରେ ଅଟକିବା ପ୍ରଶ୍ନ ଉଠୁନାହିଁ ।

*ପ୍ରାଇଯର୍ ଅ୍ୟାନାଲିଟିକ୍ସ* ଗ୍ରନ୍ଥରେ ଆରିଷ୍ଟୋଟ୍ଲ ବ୍ୟାଖ୍ୟାକରିଚନ୍ତି ସିଲ୍ୟଜିଜ୍ମକୁ କେବଳ, ତାଙ୍କ ଅନ୍ୟାନ୍ୟ ରଚନାର ପ୍ରଭାବ କିନ୍ତୁ ଦର୍ଶନବିଦ୍ୟାର ଇତିହାସ ଉପରେ ଊଣା କି ଗୌଣ ନୁହେଁ; ଏବଂ ସେଭଳି ଏକ ନାତିଦୀର୍ଘ ରଚନା *ଦ୍ୟ କ୍ୟାଟିଗରିଜ୍* । ପଅଫୁହୀଙ୍କୁ କୁହାଯାଏ ନବ୍ୟପ୍ଲାଟୋନିସ୍ଟ; ଲେଖିଚନ୍ତି *କ୍ୟାଟିଗରିଜ୍*ର ଭାଷ୍ୟ; ସେ ଭାଷ୍ୟ *ଗୀତା*ର ଶଙ୍କରଭାଷ୍ୟ ଭଳି, ମଧ୍ୟଯୁଗର ଦର୍ଶନଚିନ୍ତାକୁ କରିରଖିଚି ଆପ୍ଲୁତ; ମାତ୍ର ସ୍ୱୟଂ ଆରିଷ୍ଟୋଟ୍ଲ ଏଠି ବିବେଚ୍ୟ । 'କ୍ୟାଟିଗରି' ଶବ୍ଦଟିକୁ ବହୁଳ ବ୍ୟବହାର କରିଚନ୍ତି କାଣ୍ଟ୍ ଆଉ ହେଗ୍ଲ । ମାତ୍ର ଆରିଷ୍ଟୋଟ୍ଲ ଠିକ୍ କଣ ବୁଝାଇବାକୁ ଚାହିଁଚନ୍ତି, ସ୍ପଷ୍ଟ କରିପାରିନାହାନ୍ତି । କ୍ୟାଟିଗରି ଏକ ସାଧପଦ; କିନ୍ତୁ ଦର୍ଶନଚର୍ଚ୍ଚାରେ ପରିଚ୍ଛନ୍ନ

କୌଣ ପ୍ରତୀତିର ପ୍ରତିନିଧିତ୍ୱ କରେନା । ଆରିଷ୍ଟୋଟ୍ଲଙ୍କ ଆଲୋଚନାରେ ରହିଚି ଦଶରକମ କ୍ୟାଟିଗରି; ଯେପରି,ସତ୍ୱ ବା ମର୍ମ (ସବ୍‌ସ୍ଟନ୍ସ), ପରିମାଣ, ଉତ୍‌କର୍ଷ, ସମ୍ବନ୍ଧ,ସ୍ଥାନ, କାଳ, ଅବସ୍ଥାନ,ଦଶା, କ୍ରିୟା (ଆ୍ୟାକ୍‌ସନ୍) ଓ ଅନୁରାଗ (ଆଫେକ୍ସନ୍) । ସାଧପଦଟିର ଏକମାତ୍ର ସଂଜ୍ଞା କିନ୍ତୁ expressions which are in a way composite । ଅର୍ଥାତ୍, ଏପରି ଶବ୍ଦ ଯାର ଅର୍ଥ ଅନ୍ୟ ଶବ୍ଦାର୍ଥର ଯୋଗଫଳ ନୁହେଁ, ଏବଂ ଶବ୍ଦାର୍ଥ ଯେହେତୁ ଯୌଗିକ ବା ମିଶ୍ର ନୁହେଁ, ଶବ୍ଦର ଅବିକୃତ ମର୍ମ (ସବ୍‌ସ୍ଟନ୍ସ) ଉଦ୍‌ଘାଟନ କରିବାକୁ ସମର୍ଥ । ସେ ମର୍ମାର୍ଥ ତେଣୁ ଚିହ୍ନିତକରେ ପରିମାଣ ଉତ୍କର୍ଷ ଇତ୍ୟାଦି । କିନ୍ତୁ କୌଣ ନିୟମରେ ଜଗତର ବହୁ ବିଚିତ୍ର ବିଷୟ ଭିତରୁ ବଛାବଛିକରି ମାତ୍ର ଦଶଟି ବିଷୟକୁ 'କ୍ୟାଟିଗରି' ପଦବାଚ୍ୟ କରାଯାଇଚି, ସେ ସଂକେତ ସ୍ଥାନପାଇନାହିଁ ବ୍ୟାଖ୍ୟା କି ଭାଷ୍ୟରେ ।

ସବ୍‌ସ୍ଟନ୍ସ (ସତ୍ୱ/ମର୍ମ) କୌଣସିହେଲେ ଉଦ୍ଦେଶ୍ୟର ବିଧେୟ ନୁହେଁ, କର୍ତ୍ତାର କର୍ମ (ପ୍ରେଡିକେଟ୍) ନୁହେଁ, କି ବିଷୟସ୍ଥିତ ମର୍ମ ନୁହେଁ । ବିଷୟସ୍ଥିତ ମର୍ମ ମାନେ ଏପରି ଗୁଣଧର୍ମ, ଯା ବିଷୟର ଅଂଶବିଶେଷ ନହେଲେ ସୁଦ୍ଧା, ବିଷୟ ବ୍ୟତିରେକେ ଅସ୍ତିତ୍ୱ ଅର୍ଜନ କରିପାରେନା । ନିଦର୍ଶନ ଯା ଉପସ୍ଥାପନ କରିଚନ୍ତି, ବ୍ୟାକରଣ-ପ୍ରସୂତ ଜ୍ଞାନ କେବଳ, ଯା ଅବସ୍ଥାନକରୁଚି ମଣିଷର ମନୋରାଜ୍ୟରେ; ଯେପରି, 'ଗୋରା' ବୋଲି ଚିହ୍ନିତ ଗାତ୍ରବର୍ଣ୍ଣ ଅବସ୍ଥାନକରୁଚି ମଣିଷ ଦେହର ଚମଡ଼ା ଉପରେ । ସବସ୍ଟନ୍ସ କିନ୍ତୁ ମୌଳିକ ଉପାଦାନ; କୌଣସିହେଲେ ଏକକ ବସ୍ତୁ ବ୍ୟକ୍ତି ବା ଜୀବପିଣ୍ଡ । ଆନୁଷଙ୍ଗିକ ବ୍ୟଞ୍ଜନାରେ ଜୀବପ୍ରଜାତି କି ବସ୍ତୁବର୍ଗ । 'ମାନବ' କି 'ପଶୁ' ଯେମିତି ସବ୍‌ସ୍ଟନ୍ସ ବା ସତ୍ୱ । ଆନୁଷଙ୍ଗିକ ଏ ମର୍ମାର୍ଥକୁ ବଞ୍ଚାଇରଖିବା କିନ୍ତୁ କାଠିକର ପାଠ ; କାହିଁକିନା, ପରବର୍ତ୍ତୀ ଦର୍ଶନବିଦ୍‌ଙ୍କ ସକାଶେ 'ସବ୍‌ସ୍ଟନ୍ସ' କରିଦେଇଚି ସାହାଣ ମେଲା, କାପଟ୍ୟଜର୍ଜର ପରାବିଦ୍ୟାକୁ ଯା ଅବାଧ ଆମନ୍ତ୍ରଣ ।

ଅବରୋହୀ ପଦ୍ଧତିରେ ଦର୍ଶନତତ୍ତ୍ୱ ତିଆରିକରିବାକୁ ହେଲେ ବିଷମ ଯୋଉ ସମସ୍ୟା ସମ୍ମୁଖୀନ ହେବାକୁ ପଡ଼େ, ତା ନିଜେ ଏକ ଦାର୍ଶନିକ ପ୍ରତିପାଦ୍ୟ : How are first premisses obtined ? ମୂଳ ପ୍ରତିଜ୍ଞାଟି ମିଳୁଚି କେମିତି ? ମୂଳ ପ୍ରସ୍ତାବଟି ଉତ୍ଥାପିତ ନ ହେଲେ ଡିଡକ୍ସନ୍ ଚାଲିବନାହିଁ; ଆରିଷ୍ଟୋଟ୍ଲ ସେଥିପାଇଁ ଉତ୍ତର ଖୋଜିଚନ୍ତି *ପସ୍ଟିୟରିଅର୍ ଆ୍ୟନାଲିଟିକ୍ସ* ଗ୍ରନ୍ଥରେ । ଡିଡକ୍ସନ୍ ଯେହେତୁ କୌଣସିନାକୌଣସି ପ୍ରତିଜ୍ଞାରୁ ଉତ୍ସାରିତ ହୁଏ, ଅନିସନ୍ଧିତ୍ସୁ ଏପରି ଏକ ପ୍ରସ୍ତାବ ଉଠାଇବ ଯା ପ୍ରମାଣିତ ହୋଇନାହିଁ ତଥାପି, ଅଥଚ ପ୍ରସ୍ତାବଟା ଏକ ଜ୍ଞାତ ପ୍ରସଙ୍ଗ । ଜ୍ଞାତ, କିନ୍ତୁ ପ୍ରତିପାଦିତ ନୁହେଁ । ଆରିଷ୍ଟୋଟ୍ଲଙ୍କ ଏ ତତ୍ତ୍ୱର ପୁଙ୍ଖାନୁପୁଙ୍ଖ ବିଚାର ନିର୍ଭରକରୁଚି ନିର୍ଯ୍ୟାସ (ଏସେନ୍ସ)

ସମ୍ପର୍କିତ ଅନୁମାନ ଉପରେ । ସଂଜ୍ଞା, ତାଙ୍କ ମତରେ, ବିଷୟର ମୌଳିକ ଚରିତ୍ର ସମ୍ପର୍କରେ ବୟାନ ମାତ୍ର । ଏବଂ ପରବର୍ତ୍ତୀ ବିବାକ ଦର୍ଶନଚର୍ଚ୍ଚା ସହିତ 'ଏସେନ୍ସ୍' ଧାରଣା ରହିଚି ଓତପ୍ରୋତ । ଆଧୁନିକକାଳ ଅବଶ୍ୟ ବ୍ୟତିକ୍ରମ । ଧାରଣାଟା ଜଡ଼ବୁଦ୍ଧି-ସଂଜାତ; ମାତ୍ର ଦର୍ଶନବିଦ୍ୟାର ଇତିହାସରେ ଏସେନ୍ସକୁ ଦିଆଯାଏ ମୌଳିକ ପ୍ରତୀତିର ମର୍ଯ୍ୟାଦା; ଆଲୋଚନା କରାଯାଉ ଚୁମ୍ବକରେ ।

ଏସେନ୍ସ ମାନେ ଜିନିଷର ଅନ୍ତର୍ନିହିତ ସାରବତ୍ତା, those of its properties which it cannot change without losing its identity । ସୋକ୍ରେଟିଜ୍ ହୁଏତ ଏକ୍ଷଣି ଖୁସୀ, ପରକ୍ଷଣରେ ଉଦାସ; ଏକ୍ଷଣି ସୁସ୍ଥ, ପରକ୍ଷଣରେ ଆକ୍ରାନ୍ତ । କିନ୍ତୁ ଗୁଣଗୁଡ଼ାକୁ ବଦଳାଇ ପାରିବେ; ବଦଳାଇ ପାରିଲେ ସୁଦ୍ଧା, ସୋକ୍ରେଟିଜ୍ ହୋଇ ରହିଥିବେ । ଅବସ୍ଥାଗୁଡ଼ାକ ତେଣୁ ତାଙ୍କ ସତ୍ତାର ଅଂଶବିଶେଷ ନୁହେଁ । ସତ୍ତାର ଅପରିବର୍ତ୍ତନୀୟ ବିଭାବ କେବଳ : ସୋକ୍ରେଟିଜ୍ ଜଣେ ମନୁଷ୍ୟ । ମାତ୍ର ପିଥାଗୋରୀୟ ଦର୍ଶନବିଦ୍ ମନୁଷ୍ୟ-ରୂପକ ନିର୍ଯ୍ୟାସକୁ ସ୍ଥିର ବୋଲି ମାନିବେନାହିଁ, କାହିଁକିନା, ଆତ୍ମା କୁଆଡ଼େ ଭିନ୍ନ ପ୍ରାଣୀର ଶରୀରରେ ମଧ ପ୍ରବେଶ କରିପାରେ; ଯେପରି, କର୍ମଫଳ ଅନୁସାରେ ମଣିଷ ହୁଏ ଶିଆଳକୁକୁର । ବାସ୍ତବ ବିବେଚନାରେ ତେଣୁ ଏସେନ୍ସ ଶବ୍ଦଟା କି ପ୍ରେକ୍ଷିତରେ ପ୍ରୟୋଗହେଉଚି, ତାତ୍ପର୍ଯ୍ୟକୁ ନିରୂପଣ କରିବ ସେଇ ନିର୍ଦ୍ଦିଷ୍ଟ ପ୍ରେକ୍ଷିତ । ଏକା ନାଁକୁ ବିଭିନ୍ନ ଉପଲକ୍ଷ୍ୟ ଓ ବିଭିନ୍ନ ଘଟଣା ବୁଝାଇବାକୁ ପ୍ରୟୋଗ କରାଯାଇପାରେ; ଯେପରି, ବାଇଗଣ / ପୋଥିବାଇଗଣ / ବାଡ଼ିବାଇଗଣ / ବାହାଘରବେଳେ ବାଇଗଣ ରୁଆ / ଏମିତି ମାଡ଼ ପୁଲିସ୍ ମାରିଚି ଯେ ଚୋରଟା ହେଇଯାଇଚି ବାଇଗଣଭର୍ତ୍ତା । ଅଥଚ ସାଧାରଣତଃ ଭାବିଥାଉଁ, ଉପଲକ୍ଷ୍ୟ କି ପ୍ରେକ୍ଷିତ ବଦଳିଗଲେ ବି 'ବାଇଗଣ' ବ୍ୟକ୍ତକରୁଚି ଏକାଜିନିଷକୁ, ଯାର ବିକଳ୍ପ ନାହିଁ, କି ଯା ପରିମାଣରେ ଏକାଧିକ ନୁହେଁ । ମଣିଷ ବା ଇତରପ୍ରାଣୀ ସମ୍ବନ୍ଧରେ ବି ଯୁକ୍ତିଟା ଖାଟିବ । ଏକା ନାଁର ବିବିଧ ପ୍ରୟୋଗ ତେଣୁ ପ୍ରକୃତରେ ବାଚନିକ ଉପଯୋଗ ମାତ୍ର । ସୋକ୍ରେଟିଜ୍‌ଙ୍କ ଏସେନ୍ସ ଏଭଳି ଗୁଣଧର୍ମକୁ ବୁଝାଇବା ସଙ୍ଗତ, ଯା ନଥିଲେ, 'ସୋକ୍ରେଟିଜ୍' ନାଁଟା ଉପଯୋଗ କରିହେବନାହିଁ । ଅନ୍ୟ ଶବ୍ଦରେ, ସମସ୍ୟାଟା ଭାଷାତାତ୍ତ୍ୱିକ, କାହିଁକିନା, ଶବ୍ଦର ଗୂଢ଼ାର୍ଥ (ଏସେନ୍ସ) ଥାଇପାରେ, ବସ୍ତୁ ବା ଜୀବପିଣ୍ଡରେ ନିହିତ ଏସେନ୍ସ କିନ୍ତୁ ଗୋଟାପଣେ କାଳ୍ପନିକ ପ୍ରତୀତି ।

ଆଉଗୋଟିଏ ଶବ୍ଦ 'ସବସ୍ଟାନ୍ସ' ବା ସତ୍ତ୍ୱ । ଏସେନ୍ସ ବା ସତ୍ତା ଭଳି ବାଚନିକ ଉପଯୋଗ ମାତ୍ର । 'ସତ୍ତ୍ୱ'ର ବିଷୟାନ୍ତରଣ ଘଟିଚି ମେଟାଫିଜିକ୍ସକୁ । ଯେପରି, ମଣିଷ ଭିତରେ ଯା ଅପରିବର୍ତ୍ତନୀୟ,ମାନେ, ସବ୍‌ସ୍ଟାନ୍ସ, ତାକୁ ଶସ୍ତ୍ର ଛେଦନ କରିପାରେନା,

ଅଗ୍ନି କରିପାରେନା ଦହନ, ଜଳ କରିପାରେନା ଦ୍ରବଣ, ଇତ୍ୟାଦି । ପ୍ରମାଣ ନାହିଁ, କିନ୍ତୁ ଲୋକମୁଖରେ ବହୁଶ୍ରୁତ । ଲଜିକ୍ ସାବ୍ୟସ୍ତକରିନାହିଁ କି ଲୋକଶ୍ରୁତି 'ଜ୍ଞାନ' ନୁହେଁ । ଜଗଦ୍‌ଟାକୁ ବର୍ଣନାକରିବାକୁ କେବଳ ବ୍ୟବହାରକରୁଁ ଏ ଶବ୍ଦ । 'ସୋକ୍ରତିକ୍' ନାମକ ଲୋକର ଜୀବନରେ ଘଟିଥିବା କିଛି ଘଟଣାକୁ ଚରମ ପରିଣାମ ବୋଲି କହିବାପାଇଁ ମଧ୍ୟ ବ୍ୟବହାରକରୁଁ ଅନ୍ୟ ଘଟଣା, ଯା ଫକୀରମୋହନଙ୍କ ଜୀବନରେ ଘଟିଚି, ତାକୁ ବ୍ୟକ୍ତକରିବାକୁ ମଧ୍ୟ ଏ ଶବ୍ଦଟି ପ୍ରଶସ୍ତ । ସୋକ୍ରତିକ୍ ହୁଅନ୍ତୁ କି ଫକୀରମୋହନ, ଦୁହିଁଙ୍କ ଜୀବନକାଳ ଦୀର୍ଘ; ସେଇ ଦୀର୍ଘକାଳଧରି ଏ ସତ୍‌ସ୍ୱନ୍ତ ନିରନ୍ତର କର୍ମରତ; ଏବଂ ସେଥିପାଇଁ, କୋଉନାକୋଉ ବାଟରେ ସତ୍‌ସ୍ୱନ୍ତ ଯୋଉ ଘଟଣାର ଲକ୍ଷଣ, ଆହାର-ନିଦ୍ରା-ମୈଥୁନ-ଭୟ ଭଳି ନିତ୍ୟକ୍ରିୟା (ଘଟଣା) ତୁଳନାରେ ସେ ଲକ୍ଷଣ ଅଧିକତର ସତ୍ୟ ଓ ଅପରିବର୍ତ୍ତନୀୟ । କାହିଁକିନା, ଆଜି ଯଦି ସୋକ୍ରତିକ୍ ଅସୁସ୍ଥ, ଅନ୍ୟ ସମୟରେ ନିଶ୍ଚୟ ସୁସ୍ଥ, ଏବଂ ସେଇ କାରଣରୁ, ସୋକ୍ରତିକ୍ ରୂପକ ସତ୍ତା (ବ୍ୟକ୍ତିସତ୍ତା) ସୁସ୍ଥତା-ଅସୁସ୍ଥତା ଉର୍ଦ୍ଧ୍ୱରେ । କିନ୍ତୁ ବ୍ୟକ୍ତିସତ୍ତା ଯଦି ବିଦ୍ୟମାନ ନାହିଁ, ଦେହର ବି ରହିବନାହିଁ ଅସ୍ତିତ୍ୱ । ସୁସ୍ଥ-ଅସୁସ୍ଥ ପ୍ରଶ୍ନ ବି ଉଠିବନାହିଁ । ସୁସ୍ଥତା-ଅସୁସ୍ଥତାର ଅପରିହାର୍ଯ୍ୟ ଓ ଏକମାତ୍ର ସର୍ତ୍ତ ତେଣୁ ବ୍ୟକ୍ତିସତ୍ତାର ବିଦ୍ୟମାନତା, ସତ୍ୱ ବା ସତ୍ତାର କାଳ୍ପନିକ ଅସ୍ତିତ୍ୱ ନୁହେଁ । ସୁସ୍ଥତା-ଅସୁସ୍ଥତାକୁ ଛାଡ଼ି ଆହୁରି ବେଜାଏ କଥା ଘଟିବା ଦରକାର ସୋକ୍ରତିକ୍ ନାମକ ଲୋକଟିର ଅସ୍ତିତ୍ୱ ସାବ୍ୟସ୍ତ କରିବା ସକାଶେ । ଅର୍ଥାତ୍, ଜୀବନକାଳରେ ଯେତେ କଥା ଘଟିଚି, ତଦପେକ୍ଷା ସୋକ୍ରତିକ୍ ନିଜେ ଅଧିକତର ସତ୍ୟ ହୋଇପାରିବେ ନାହିଁ । ଜୀବନ ଯେମିତି ଏକ ଘଟମାନତା, ଘଟଣାର ନିରବଚ୍ଛିନ୍ନତା ସେମିତି ଜୀବନ ।

ତେଣୁ 'ସତ୍‌ସ୍ୱନ୍ତ' ଏପରି ଏକ ପ୍ରତ୍ୟୟ, ଯାର ଆନ୍ତରିକ ଆଲୋଚନା ଡାକିଆଣିବ ନାନାଦି ବିପତ୍ତି । କାହିଁକିନା, ସତ୍‌ସ୍ୱନ୍ତ ହିଁ ନିର୍ଦ୍ଧାରଣକରେ ଗୁଣଧର୍ମ; ଏବଂ ସେଇ ଅର୍ଥରେ ସତ୍‌ସ୍ୱନ୍ତ ହିଁ ଗୁଣଧର୍ମର କର୍ତ୍ତା । ଅଥଚ ଆରିଷ୍ଟୋଟ୍ଲଙ୍କ ଅବଲୋକନରେ ସତ୍ୱ ଏକେବାରେ ନିର୍ଗୁଣ, ଏବଂ ସେଇ ଅର୍ଥରେ, ସତ୍‌ସ୍ୱନ୍ତ ଗୁଣଧର୍ମଠାରୁ ସ୍ୱତନ୍ତ୍ର । କିନ୍ତୁ ଗୁଣଧର୍ମକୁ ବାଦ୍‌ଦେଇ, ନିର୍ଗୁଣ ସତ୍ୱକୁ ଯଦି କଳ୍ପନାକରୁଁ, ପ୍ରତିଭାତ ହେବ ଶୂନ୍ୟତା । ସ୍ୱତଃ ପ୍ରଶ୍ନ ଉଠିବ, ଏଇ ସତ୍ୱକୁ ଅନ୍ୟ ସତ୍ୱଠାରୁ ପୃଥକ୍ କରିହେବ କି ଉପାୟରେ ? ଗୁଣଧର୍ମଗତ ପ୍ରଭେଦ ତ କାମଦେବନାହିଁ, କାହିଁକିନା, ଆରିଷ୍ଟୋଟ୍ଲ କହିଚନ୍ତି, ଗୁଣଧର୍ମରେ ପ୍ରଭେଦ ଖୋଜିବା ମାନେ, ସତ୍ୱକୁ ଅନନ୍ୟ ମନେନକରି ସଂଖ୍ୟାସୂଚକ ବିବିଧତାକୁ ପ୍ରଶ୍ରୟ । ଦୁଇଟି ସତ୍‌ସ୍ୱନ୍ତର ସଂଖ୍ୟା ତେଣୁ ଅନୂର୍ଦ୍ଧ୍ୱ ଦୁଇ, ଅଥଚ କେହି କାହାରିଠୁଁ ସ୍ୱତନ୍ତ୍ର ନୁହେଁ । ତା ହେଲେ, ସତ୍‌ସ୍ୱନ୍ତର ସଂଖ୍ୟା ଯେ ଦୁଇ, ଜାଣିଲେ କେମିତି ?

ଭାରତୀୟ ଦର୍ଶନରେ ପ୍ରତ୍ୟୟଟା ସ୍ପଷ୍ଟ । ପ୍ରାଣ/ଆତ୍ମା କଳ୍ପନାକରାଯାଇଛି ସତ, ଏବଂ ଆରିଷ୍ଟୋଟ୍ଲ ହୁଏତ ସବ୍‌ଷ୍ଟାନ୍ସ/ଏସେନ୍ସ ଅବବୋଧ ସଂଗ୍ରହକରିଚନ୍ତି ସେଇଠୁ; ମାତ୍ର ମହାଶୂନ୍ୟରେ ବସାଇନାହାନ୍ତି ଋଷି ସେଗୁଡ଼ାକୁ, ବସାଇଚନ୍ତି ନାମ-ରୂପ ଆଶ୍ରୟ ଭିତରେ । ନାମ-ରୂପ ଆଶ୍ରୟରେ ଆତ୍ମା ହେବ ସଂଖ୍ୟାସୂଚକ । ସେ ଅସୁବିଧାକୁ ଅତିକ୍ରମକରିବାକୁ ଶଙ୍କର ଉଦ୍‌ଭାବନ କରିଚନ୍ତି 'ମାୟା'; ଅର୍ଥାତ୍ ଅନେକ ବୋଲି ଚର୍ମଚକ୍ଷୁ ଯା ଦେଖୁଚି ତା ପ୍ରକୃତରେ ଏକ, ଅଭିନ୍ନ, ଅବିନଶ୍ବର । ଜ୍ଞାନ ଲାଭହେଲେ ସାଧକ ନିଜେ ଉପଲବ୍ଧି କରିବେ । କିଏ କରିଚି କି ନାହିଁ, ଅଲଗା ପ୍ରଶ୍ନ; କିନ୍ତୁ ତତ୍ତ୍ୱଟା ଜଡ଼ବୁଦ୍ଧି-ପ୍ରସୂତ ନୁହେଁ । ଆରିଷ୍ଟୋଟ୍ଲ ଧରିଚନ୍ତି କିନ୍ତୁ ସହଜ ବାଟ । ଜୀବନରେ ଘଟୁଥିବା ଘଟଣାଗୁଡ଼ିକୁ ନାନା ରକମ ପୁଟୁଳିରେ ବୁକୁଳାବାନ୍ଧି ସବ୍‌ଷ୍ଟାନ୍ସ ରୂପକ ଅଦୃଶ୍ୟ ଖୁଣ୍ଟିଦିହରୁ ଝୁଲାଇ ଦେଇଚନ୍ତି । ଏକ୍ଷଣି, ଭାବନ୍ତୁ, ଫକୀରମୋହନଙ୍କୁ ଜାଣିବା କେମିତି ? ତାଙ୍କ ଆଡ଼କୁ ଅନାଇବାମାତ୍ରେ ଦେଖିବା ନାନାଦି ରଙ୍ଗର ପ୍ୟାଟର୍ଣ; ତାଙ୍କ କଥା ଶୁଣିବା (ପଢ଼ିବା) ମାତ୍ରେ କାନରେ ବାଜିବ ମାଳାକାରରେ ସଜ୍ଜିତ ଧ୍ୱନିପୁଞ୍ଜ । ବୁଝିପାରିବୁଁ , ଠିକ୍ ଆମରି ଭଳି ଅନୁଭବକରନ୍ତି, ଭାବନ୍ତି, କଥାକହନ୍ତି । କିନ୍ତୁ ଏଇ ଘଟଣାସ୍ରୋତ ବାହାରେ ଫକୀରମୋହନ ଫେର୍ ଆଉ କି ଜିନିଷ ? କାନ୍ଥରେ ଏକ ଅଦୃଶ୍ୟ ଖୁଣ୍ଟି ଯୋଉଥିରୁ ଝୁଲୁଚି ଘଟଣାର ବିବିଧ ବିଚିତ୍ର ପୁଟୁଳି ? ଅଥଚ ଘଟଣା ସକାଶେ ଖୁଣ୍ଟି କି ସଙ୍ଗା ଦରକାର ନାହିଁ ଜମାରୁ, ଯେମିତି ଚାଲିବା ସକାଶେ ଜଗତକୁ ଦରକାର ପଡୁନାହିଁ ହାତୀ କି ଓଟ । ସେମିତି, 'ଭାରତ' ପରି ଶବ୍ଦକୁ ବ୍ୟବହାର କରିବାବେଳେ 'ଭାରତମାତା' କେହି ଦେଖେନା; ଦେଖେ ଦେଶର ଭୂଗୋଳ ଇତିହାସ । ଭୂଗୋଳ ଇତିହାସ ବାହାରେ କେହି ଭାରତକୁ ଦେଖେନା, ଦେଖିପାରେନା । ସେଇଭଳି ଫକୀରମୋହନ । ବହୁ ବିଭିନ୍ନ ପାର୍ଥିବ ଘଟଣାର ସମଷ୍ଟିବାଚକ ବିଶେଷ୍ୟ, ଏବଂ ଯୁଗପଦ୍ ଏକ ବାଚନିକ ଉପଯୋଗ । ଇଆଠୁଁ ଅଧିକ ଭାବିଲେ, ଫକୀରମୋହନ ହୋଇଯିବେ ସମ୍ପୂର୍ଣ୍ଣ ଅଜ୍ଞେୟ,ଏବଂ ସେଥିପାଇଁ, ଯା ଜ୍ଞାତ ତାକୁ ପ୍ରକାଶକରିବାକୁ ଅତିରିକ୍ତ ଖବର ଦରକାର ପଡ଼େନା ।

ଅଳ୍ପକଥାରେ, ସବ୍‌ଷ୍ଟାନ୍ସ ବୃହଦ୍ ଏକ ଆଧିଭୌତିକ ପ୍ରମାଦ, କାହିଁକିନା, ଭାଷାର ଗଢ଼ଣକୁ ଆରିଷ୍ଟୋଟ୍ଲ ଜୋର୍‌କରି ଚପାଇଦେଇଚନ୍ତି ଜଗତ୍‌ସଂସାରର ଗଢ଼ଣ ଉପରେ । ବାକ୍ୟର ଗଢ଼ଣରେ ରହିଚି ଉଦ୍ଦେଶ୍ୟ-ବିଧେୟ, ସବ୍‌ଜେକ୍ଟ-ପ୍ରେଡିକେଟ୍; ଜଗତର ଗଢ଼ଣରେ କର୍ତ୍ତା-କର୍ମ ଧାରଣା ବିମୂର୍ତ୍ତ । ବିମୂର୍ତ୍ତ ହେଲେସୁଦ୍ଧା, ବାକ୍ୟକୁ ଜଗଦ୍ ମନେକରିବା ଅଯୌକ୍ତିକ, ଭ୍ରାନ୍ତ ଚୈତନ୍ୟ । ଅନ୍ୟ ଶବ୍ଦରେ, ଔପଚାରିକ ସିଲ୍ୟଜିଜ୍ମକୁ ଛାଡ଼ିଦେଲେ, ଲଜିକ୍ ବିଷୟରେ ଆରିଷ୍ଟୋଟ୍ଲଙ୍କ ଚିନ୍ତାଭାବନା ଅତିଶୟ ଦୁର୍ବଳ, ଏପରିକି

ବିଭ୍ରାନ୍ତ । ସିଲ୍ୟାଜିକ୍ସ ସୁଦ୍ଧା ବିରାଟ କିଛି ଅବଦାନ ନୁହେଁ । ଆଜି ଯଦି କେହି ଲଜିକ୍ ଶିଖିବାକୁ ମନକରେ, ଆରିଷ୍ଟୋଟ୍ଲ କି ତାଙ୍କ ଶିଷ୍ୟଙ୍କ ପାଖରୁ ପାଠ ଗ୍ରହଣକରିବା ହେବ ସମୟର ଅପଚୟ । ତଥାପି, ତାଙ୍କ ଲେଖାଲେଖି ଭିତରେ ଯୋଉ ଶକ୍ତି ରହିଚି, ସେଥିରୁ ଅନୁମାନ କରିହେବ, ମେଧାର ମୌଳିକତା ଯେତେବେଳେ ସରିଯାଇନାହିଁ, ସେତେବେଳେ ଯଦି ଏ ଲେଖା ପ୍ରକାଶପାଇଥାଆନ୍ତା, ଅଶେଷ ଉପକାର ହୋଇଥାନ୍ତା ମାନବଜାତିର । ମାତ୍ର ଦୁର୍ଭାଗ୍ୟ ବଶତଃ, ଗ୍ରୀକ୍‌ମନନର ସର୍ଜନଶୀଳ ପର୍ଯ୍ୟାୟର ସୂର୍ଯ୍ୟାସ୍ତବେଳକୁ ବାହାରିଚି ତାଙ୍କ ରଚନା, ଯା ଫଳରେ, ମତବାଦଗୁଡ଼ାକ ଗୃହୀତହୋଇଚି ନିର୍ବିବାଦରେ । ଲଜିକ୍‌ଚର୍ଚ୍ଚାରେ ମୌଳିକତା ଦେଖାଦେଲା ଫେର୍ ଯେତେବେଳେ, କ୍ରମାଗତ ଦୁଇଜହାର ବର୍ଷବ୍ୟାପୀ ରାଜତ୍ୱକରିଚି ଯୋଉ ଅବିସମ୍ବାଦିତ କର୍ତ୍ତୃତ୍ୱ, ତାକୁ ସିଂହାସନଚ୍ୟୁତ କରିବା ଅନାୟାସ ହୋଇନାହିଁ । ଏବଂ ଫଳତଃ, ଏକାଳର ବିଜ୍ଞାନ କି ଲଜିକ୍ ଯୋଉଠି ଯେତେବେଳେ ନୂତନତ୍ୱର ସନ୍ଧାନପାଇଚି, ଆରିଷ୍ଟୋଟ୍ଲଙ୍କ ଶିଷ୍ୟସମ୍ପ୍ରଦାୟ ସହିତ ବିନା ଯୁଦ୍ଧରେ ପାଇନାହିଁ ସୂଚ୍ୟଗ୍ର ମେଦିନୀ । ଯେପରି, ଗାଲିଲେଓ ।

* * * * * *

ମାତ୍ର ଅତିସମ୍ପ୍ରତି 'ଗବେଷଣା' ହେଇଯାଇଚି ଆ୍ୟାକାଡେମିକ୍ ଇଣ୍ଡଷ୍ଟ୍ରି ; ଆରିଷ୍ଟୋଟ୍ଲଙ୍କ ଉପରେ ଲେଖାହୋଇଚି କାଣ୍ଡିକାଣ୍ଡି କିତାବ । ଦୁଷ୍ପ୍ରାପ୍ୟ କିମ୍ବା ଦୁଷ୍ପାଠ୍ୟ । ତେଣୁ ତିନୋଟି ପ୍ରଧାନ ପ୍ରତ୍ୟୟ : କ୍ୟାଟିଗରି, ଏସେନ୍ସ ଓ ସବ୍‌ଷ୍ଟାନ୍ସ ସମ୍ପର୍କରେ ସାମ୍ପ୍ରତିକତମ ଗବେଷଣାର ପରିଣାମ ଜାଣିଲେ ଯଥେଷ୍ଟ ହେବ ।

ଗ୍ରୀକ୍‌ଭାଷାରେ *Kategoria* ଶବ୍ଦର ଇଂରେଜୀ କରାଯାଇଚି predicate । ପ୍ରେଡିକେଇଟ୍ ବ୍ୟାକରଣରେ 'ବିଧେୟ' । ବ୍ୟାକରଣ ବାହାରେ, ଉଦ୍ଦେଶ୍ୟ (ସବ୍‌ଜେକ୍ଟ)ର ଗୁଣ କିମ୍ବା ଧର୍ମ, ସତ୍ୟ ବୋଲି ନିର୍ଦ୍ଦେଶିତ । ସତ୍ୟ ମାନେ ଯାର ଅସ୍ତିତ୍ୱ ଅବିସମ୍ବାଦିତ । ସେପରି ଜିନିଷକୁ ତାଲିକାଭୁକ୍ତକରି ଆରିଷ୍ଟୋଟ୍ଲ ସଂଖ୍ୟା ନିର୍ଦ୍ଦେଶକରିଚନ୍ତି ମାତ୍ର ଦଶଟି । ଏକ୍ଷଣି ବିଦ୍ୱାନ୍ କହୁଚନ୍ତି, ଅସ୍ତିତ୍ୱଯୁକ୍ତ ଜିନିଷର ସଂଖ୍ୟା ଢେର ବେଶି, କିନ୍ତୁ ସେଗୁଡ଼ିକୁ ମାତ୍ର ଦଶଟି ବର୍ଗରେ ଅନ୍ତର୍ଭୁକ୍ତ କରାଯାଇପାରେ । ଯେପରି, ବିରାଡ଼ି । ବିରାଡ଼ିର ଅସ୍ତିତ୍ୱ ମନାକରି ହେବନାହିଁ । ସେହିପରି, ସ୍ତନ୍ୟପାୟୀ ଯେକୌଣସି ପ୍ରାଣୀର ଅସ୍ତିତ୍ୱ । ସେହିପରି, ଯେକୌଣସି ପଶୁର । ବିରାଡ଼ି ସ୍ତନ୍ୟପାୟୀ,ପଶୁ ମଧ ସ୍ତନ୍ୟପାୟୀ । ତିନିଟିଯାକ ଅସ୍ତିତ୍ୱକୁ ଥାକକରି ଥୋଇଦେଲେ ଦେଖାଯିବ ବିରାଡ଼ି ହିଁ ଏକମାତ୍ର ସତ୍ୟ । ତେଣୁ ବିରାଡ଼ିର ତିନିଟିଯାକ ପ୍ରେଡିକେଟ୍ ଏକତ୍ରହୋଇ ତିଆରିକରୁଚି ଗୋଟିଏ କ୍ୟାଟିଗରି । ଦ୍ୱିତୀୟ ଦୃଷ୍ଟାନ୍ତ : ଗଛ । ଗଛର ଅଗ ଅଛି, ମୂଳ ଅଛି, ଡାଳ ଅଛି, ପତ୍ର ଅଛି; ଏବଂ ସେଗୁଡ଼ିକ ଗୋଟିଏ ଗୋଟିଏ ଅସ୍ତିତ୍ୱଯୁକ୍ତ ଜିନିଷ ବା ଏଣ୍ଟିଟି । ଏଣ୍ଟିଟିଗୁଡ଼ିକ

ମଧ୍ୟରେ ରହିଛି ପାରସ୍ପରିକ ସମ୍ବନ୍ଧ, ଏବଂ ସମ୍ବନ୍ଧ ଭିତରେ କ୍ରମୋଚ୍ଚ ଶ୍ରେଣୀବିଭାଗ ବା ହାଇଆର୍‌ର୍କୀ । ଏକତ୍ର ବିବେଚନାରେ ଗଛ ମଧ୍ୟ ଗୋଟିଏ କ୍ୟାଟିଗରି । ଏଭଳି ବିଚାରକଲେ ଜଗତ୍‌ଯାକ ଜିନିଷକୁ ନାମିତକରିହେବ କ୍ୟାଟିଗରି; ଅସୁମାରି କ୍ୟାଟିଗରି । କିନ୍ତୁ ଯଦି ମନେକରୁଁ ଯେ ଅସ୍ତିତ୍ୱଶୀଳ ଜିନିଷକୁ ଖାଲି ଗଣିହେବ, ତେବେ ବି ଗଛର ରହିବ ମଗଡାଳ, ସବୁଠୁଁ ଉଚ୍ଚା ଅଗ୍ରଭାଗ । ଏପରି ଏକ ଅସ୍ତିତ୍ୱ ଯା କାହାରି ଅଧସ୍ତନ ନୁହେଁ । ସେପରି ଜିନିଷ ମଧ୍ୟ ଅଗଣିତ, କିନ୍ତୁ ଏକବର୍ଗ । ଶୀର୍ଷସ୍ଥାନୀୟ ସେଇ ବର୍ଗ ତେଣୁ ଆରିଷ୍ଟୋଟ୍‌ଲ୍‌ଙ୍କ ବିବେଚନାରେ ଗୋଟିଏ ଗୋଟିଏ କ୍ୟାଟିଗରି । ଗଣନାକରିଚନ୍ତି ଅବଶ୍ୟ ଅଳ୍ପକିଛି ଶୀର୍ଷବର୍ଗ, ଅନ୍ୟାନ୍ୟ ବର୍ଗ (ଡାଳପତ୍ର ଫୁଲ ଫଳ) ଯେହେତୁ ଆକସ୍ମିକ ମାତ୍ର । ଏ ବିଚାର କାଣ୍ଡଜ୍ଞାନ ନୁହେଁ କି ଫିଲଜଫି ନୁହେଁ, କାହିଁକିନା, କାଣ୍ଡଜ୍ଞାନକୁ ସ୍ପଷ୍ଟଦିଶୁଚି, ବର୍ଗ ଓ ସତ୍ୱ, କ୍ୟାଟିଗରି ଓ ସବ୍‌ସ୍ଟାନ୍ସ, ସବୁଗୁଡ଼ାକ ଅଭିନ୍ନ ଅସ୍ତିତ୍ୱ । ଫରକ୍ କେବଳ ବର୍ଣ୍ଣନାରେ ।

ଗଛ କ୍ୟାଟିଗରି ହେଲେ ଡାଳ ଆକ୍ସିଡେଣ୍ଟ, ସବ୍‌ସ୍ଟାନ୍ସ ନୁହେଁ । କିନ୍ତୁ ଡାଳର ଅସ୍ତିତ୍ୱ ତ ଅସ୍ୱୀକାର କରିହେବନାହିଁ, ଡାଳ ମଧ୍ୟ ଏକ ଏଣ୍ଟିଟି । ଆରିଷ୍ଟୋଟ୍‌ଲ୍ 'ଅସ୍ତିତ୍ୱ' ବୁଝାଇବାକୁ କିନ୍ତୁ ଲେଖିଚନ୍ତି, Evidently there are many difference among things : some are characterized by the mode of composition of their matter, e.g. things, like honey-water, which are mixtures; others by being tied together, e.g. bundles; others by being glued, e.g. books, others by being nailed, e.g. boxes; others in several of these ways; and others by position, e.g. thresholds and lintels, which differ insofar as they have a different position; others by time, e.g., dinner and breakfast; others by place, e.g., the winds; others by features proper to sensible objects, e.g., hardness and softness, density and rareness, dryness and wetness; and things by some of these qualities, others by all of them, and in general some by excess and others by defect. Clearly, then, the word 'is' has as many significations : a thing is a threshold because it lies in such-and-such position, and its being means its lying in that position; being in ice means solidified in such-and-such way.

ଅର୍ଥାତ୍ ପାଣି ସବ୍‌ଜେକ୍ଟ, ବରଫ ପ୍ରେଡିକେଟ୍ । ପ୍ରେଡିକେଟ୍ ଆକ୍ସିଡେଣ୍ଟ, କାହିଁକିନା, ଅଛି ବା 'is' ର ରହିଚି ଅଶେଷ ପ୍ରକାର ଚିହ୍ନାୟନ । କେବଳ ଇନ୍ଦ୍ରିୟଗ୍ରାହ୍ୟ ହେଲେ

ଅସ୍ତିତ୍ୱ ପ୍ରମାଣ ହେବନାହିଁ । ବର୍ଗଭୁକ୍ତ ହେବାକୁ ପଡ଼ିବ, ଯା ଦଶମୂଳାରିଷ୍ଟ ବସ୍ତୁତଃ । କିନ୍ତୁ ଆହୁରି ବିଶଦକରିବା ସକାଶେ ଲେଖିଛନ୍ତି, Of things without any combination, each signifies either substance or quantity or qualification or a relative or where or when or being-in-a-position or having or doing or being affected. To give a rough idea, examples of substance are man, horse; of quantity : four-foot, five-foot ; of qualification : white, grammatical; of a relative : double, half, larger; of where: in the Lyceum, in the market place; or when : yesterday, last year; of being-in-a-position : is-lying, is-sitting; of having : has-shoes-on, has armour-on; of doing : cutting, burning; of being-affected : being-cut, being-burned.

କ୍ୟାଟିଗରି ତେଣୁ ସବ୍‌ଷ୍ଟାନ୍ସର ଚିହ୍ନାୟନ । ଯା ଅଛି, ତାକୁ ଚିହ୍ନିବାକୁ ତରିକା । ଯା ଅଛି ମାନେ ସତ୍ୟ ବା ରିଆଲିଟି । ମାତ୍ର ରିଆଲିଟିର ଇନ୍ଦ୍ରିୟଗୋଚର ରୂପ ପାଖରେ ଅଟକିଗଲେ ଚଳିବନାହିଁ, ସବ୍‌ଷ୍ଟାନ୍ସ ବା ସତ୍ୱକୁ ଖୋଜିବାକୁ ପଡ଼ିବ । ସବ୍‌ଷ୍ଟାନ୍ସ ଯୌଗିକ ସତ୍ତା ନୁହେଁ, ଅବିମିଶ୍ର ଓ ବିଶୁଦ୍ଧ; କ୍ୟାଟିଗରି ସେଥିପାଇଁ ପ୍ରେଡିକେଟ୍ । ଅନ୍ୟ ଶବ୍ଦରେ, ପ୍ରତ୍ୟେକ କ୍ୟାଟିଗରି ସୂଚନାକରେ ସମ୍ଭାବ୍ୟ ସମ୍ପର୍କ, ପ୍ରେଡିକେଟ୍ ଓ ସବ୍‌ଜେକ୍ଟ ମଧ୍ୟସ୍ଥ ସମ୍ଭାବ୍ୟ ସମ୍ପର୍କ । ପ୍ରତ୍ୟେକ ପ୍ରେଡିକେଟ୍ ନିଜ ସବ୍‌ଜେକ୍ଟ ବିଷୟରେ ପଚାରିପାରେ, 'ଏ କି ଜିନିଷ ?', କିମ୍ବା 'ଏ କାହାପରି / କେତେ ପରିମାଣ / କି ଅବସ୍ଥାରେ ଅଛି / ନରମ ନା କଠିନ', ଇତ୍ୟାଦି । ତାହେଲେ, 'ଏ କି ଜିନିଷ'/*ti esti* (= what is it ?) ଭଳି ପ୍ରଶ୍ନବାଚକ ଓ ଅନିର୍ଦ୍ଦିଷ୍ଟ କେବଳ ହୋଇପାରିବ କ୍ୟାଟିଗରି । ଅଥଚ ସତ୍ୱ, *ousia* (=substance) ଏପରି ଏକ ଏଣ୍ଟିଟି ଯା ସାକ୍ଷାତ୍ ରିଆଲିଟି । ସେ ରିଆଲିଟିକୁ *ମେଟାଫିଜିକ୍ସ* ଗ୍ରନ୍ଥରେ କହିଚନ୍ତି Being; ବିଇଙ୍ଗ୍ ମାନେ ଅସ୍ତିତ୍ୱ; ତେଣୁ ଏସେନ୍ସ ବା ସତ୍ତା । ବିଜ୍ଞାନ ମଧ୍ୟ ଅନ୍ୱେଷଣକରେ ଏସେନ୍ସ; ଅନିର୍ଦ୍ଦିଷ୍ଟକୁ ପ୍ରଶ୍ନକରିକରି ଆଗକୁ ଯାଏ; ଯା ପାଏ କି ପାଏନା, ବ୍ୟାବହାରିକ ରୀତିରେ ପ୍ରମାଣକରି ଦେଖାଇଦିଏ । ଇଂରେଜୀରେ କହନ୍ତି, ଡେମ୍ୟନ୍‌ଷ୍ଟ୍ରେସନ୍ । ଆରିଷ୍ଟୋଟ୍‌ଲଙ୍କ ବକ୍ତବ୍ୟ : ବିଜ୍ଞାନ ଯଦି ପ୍ରମାଣ କରିବାକୁ ଚାହେଁ, ଆରମ୍ଭକରୁ 'ଫାର୍‌ଷ୍ଟ ପ୍ରେମିସ୍' ଗୁଡ଼ିକରୁ । କିନ୍ତୁ ସର୍ବାଗ୍ରେ ସେଇ ପ୍ରସ୍ତାବ: What is Being ? – ସକାଶେ ପ୍ରମାଣ ଲୋଡ଼ାନାହିଁ, କାହିଁକିନା, ମୋ ଅସ୍ତିତ୍ୱ ମୋ ଦୃଷ୍ଟିରେ ପ୍ରତ୍ୟକ୍ଷ; ଅର୍ଥାତ୍, ପ୍ରତିପନ୍ନ । କିନ୍ତୁ ଆରିଷ୍ଟୋଟ୍‌ଲ ଏଭଳି ବିଜ୍ଞାନ (=ଯା ପ୍ରତିପାଦ୍ୟକୁ ପ୍ରମାଣକରେ) କୁ ପ୍ରତ୍ୟାଖ୍ୟାନ କରିଚନ୍ତି, କାହିଁକିନା, 'ଫାର୍‌ଷ୍ଟ ପ୍ରେମିସ୍' ଏପରି ସତ୍ୟ ଉପରେ ଆଧାରିତ ଯା ସହିତ ଅନ୍ୟାନ୍ୟ ସତ୍ୟ (ଯେପରି, କ୍ୟାଟିଗରି)ର

ଲେଶମାତ୍ର ସମ୍ବନ୍ଧ ନାହିଁ । ଭାରତୀୟ ଦାର୍ଶନିକ ଆରିଷ୍ଟୋଟ୍ଲଙ୍କ ଭଳି ବାଉଳିହୋଇନାହାନ୍ତି; ଉଦ୍‌ଭାବନ କରିଚନ୍ତି 'ତତ୍ତ୍ୱମସି'; ଯା ଅନାଦି ଅନନ୍ତ ଅରୂପ ଅନାମ ନିର୍ଗୁଣ ନିରଞ୍ଜନ; ଅଥଚ ନିତ୍ୟ, ଅମୃତ । ବର୍ଣ୍ଣନାରେ ଗୋଟିଏହେଲେ ଅସ୍ତିସୂଚକ ବିଶେଷଣ ନାହିଁ; ତେଣୁ 'ଫାର୍‌ସ୍ଟ ପ୍ରେମିସ୍' ମଧ ନାହିଁ । ଗୁଣ/ଧର୍ମ/ଲକ୍ଷଣ/ଅବସ୍ଥା/ବର୍ଣ୍ଣ-ଗଂଧ ନଥିଲେ ପ୍ରମାଣ କରାଯିବ କଣ ?

ଏଥର ଆସିବ 'ଏସେନ୍ସ' (ସତ୍ତା, ସାରାଂଶ, ମର୍ମ) । ଆଜି ଆମେ କହିପାରିବା ଜଗତର ସତ୍ତାକୁ ନିର୍ମାଣକରୁଚି ମ୍ୟାଟର୍ ବା ପଞ୍ଚଭୂତ, ଏବଂ ମ୍ୟାଟର୍‌ରୁ ଉଦ୍‌ଗତ ହୋଇଚି ମାଇଣ୍ଡ୍ ବା ଭାବିବାଚିନ୍ତିବା ଭଳି ମନନସାମର୍ଥ୍ୟ । ଆରିଷ୍ଟୋଟ୍ଲଙ୍କ ବହୁପୂର୍ବରୁ ଗ୍ରୀସ୍‌ରେ ଡେମୋକ୍ରିତସ୍ ଆବିଷ୍କାରକରିଚନ୍ତି 'ଆ୍ୟାଟମ୍' ବା ପରମାଣୁ, ଯା ପଞ୍ଚଭୂତର ସାରାଂଶ । କିନ୍ତୁ ଆରିଷ୍ଟୋଟ୍ଲ କହୁଚନ୍ତି, ପରମାଣୁ ଯେହେତୁ ବସ୍ତୁ (=ଭୂତ)ର ଅଂଶବିଶେଷ, ସ୍ୱୟଂ ହୋଇପାରେନା ଭୂତ(=ମ୍ୟାଟର୍)ର ପରିପୂର୍ଣ୍ଣ ସ୍ୱରୂପ । ସମଗ୍ର ସବୁବେଳେ ଅଂଶ ଓ ଅଂଶଗୁଡ଼ିକର ଯୋଗଫଳରୁ ଅଧିକ । ଅଂଶ ତେଣୁ ମୌଳିକ ସତ୍ତା ନୁହେଁ, ଯେପରି ପଞ୍ଚଭୂତ ମଧ 'ବିଇଙ୍ଗ୍'ର ଯଥାର୍ଥ ଚିହ୍ନାୟନ ନୁହେଁ ।

> The definition of an acute angle includes that of a right angle; for if you define an acute angle you invoke right angles (an acute angle is an angle less than a right angle). Similarly with circles and semicircles : semicircles are defined in terms of circles. And so, too, a finger is defined by reference to the whole body a finger is such-and-such a part of a man. Hence the parts which are of the nature of matter and into which, as its matter, a thing is divided, are posterior to it.

ମୂଳଗତ ଚିହ୍ନାୟନରେ ଅଂଶ ତେଣୁ ସମଗ୍ରର ହିଁ ଅଂଶ, ଆଙ୍ଗୁଳି ଯେମିତି ହାତର । ଅର୍ଥାତ୍, ହାତର ଅଂଶ ହୋଇନପାରିଲେ ଆଙ୍ଗୁଳି ନିଜେ କୋଉ ଅସ୍ତିତ୍ୱ ନୁହେଁ । ଆଙ୍ଗୁଳି ସେଥିପାଇଁ ଅସ୍ତିତ୍ୱର ମୂଳଭିତ୍ତି (=ଏସେନ୍ସ) ନୁହେଁ । ଏଇ ଅର୍ଥରେ କିନ୍ତୁ ଡେମୋକ୍ରିତସ୍‌ଙ୍କ ଅଣୁତତ୍ତ୍ୱକୁ ଖଣ୍ଡନ କରିହେବନାହିଁ, କାହିଁକିନା, ଅଣୁଦ୍ୱାରା ଭୂତ ଗଠିତହେଉଥିଲେ ସୁଦ୍ଧା, ଅଣୁ କୋଉହେଲେ ସମଗ୍ରର ଅଂଶବିଶେଷ ନୁହେଁ । ନିଜେ ଏକ ସତ୍ୱ ବା ସବ୍‌ଷ୍ଟାନ୍ସ୍ । ଆରିଷ୍ଟୋଟ୍ଲ ସେଥିପାଇଁ ଅନ୍ୟ ଯୁକ୍ତିର ଅବତାରଣା କରିଚନ୍ତି । ତାକୁ ଗଠିତକରିଚି

'ଏସେନ୍ସ' । ପଦାର୍ଥର ଏସେନ୍ସ ମାନେ ଚିହ୍ନାୟନ; ଯେପରି ବାଇଗଣ, କିମ୍ବା ବାଇଗଣ ଯା ହୋଇଚି, ତା ହେବାପାଇଁ ଦରକାର କି ଲକ୍ଷଣ । ଏସେନ୍ସ ଦେଇପାରେ ତେଣୁ ନିର୍ଭୁଲ୍ ସଂଜ୍ଞା । ଅର୍ଥାତ୍, ଏସେନ୍ସ୍ ହେଉଚି ସେଇ ଚରିତ୍ରଲକ୍ଷଣ, ଯା ଉପରେ ଜୀବ କି ନିର୍ଜୀବର ସକଳ ଗୁଣଧର୍ମ ନିର୍ଭରଶୀଳ । ଯେପରି ଗଛ । ପତ୍ର ସବୁଜ, ଫୁଲ ହୁଏତ ଲାଲ୍, ଛତା ଭଳି ଉର୍ଦ୍ଧାଂଶ, ଫଳଧରେ ହୁଏତ ବର୍ଷକୁ ଦି'ଥର । ଉଦ୍‌ଭିଦବିଜ୍ଞାନୀ କିନ୍ତୁ ଅତିପ୍ରତ୍ୟକ୍ଷ ଏଇ ଲକ୍ଷଣଗୁଡ଼ାକୁ ମନେକରନ୍ତିନାହିଁ ମୌଳିକ; କୋଉ କାରଣରୁ ଏ ଲକ୍ଷଣଗୁଡ଼ାକ ଉପୁଜିଚି, ସେତିକି ଜାଣିପାରିଲେ, ତାକୁହିଁ କହନ୍ତି ଜ୍ଞାନ । ଏବଂ ସେଇ ଆବିଷ୍କାର ହିଁ ସତ୍ତାକୁ ଆବିଷ୍କାର ବା ଚିହ୍ନାୟନ । ମାତ୍ର, ଏଇ ସତ୍ତା ସକାଶେ ଆରିଷ୍ଟୋଟ୍ଲ ବ୍ୟବହାରକରିଚନ୍ତି ଯୋଉ ଗ୍ରୀକ୍‌ଶବ୍ଦ, *ousia* , 'ସବ୍‌ଷ୍ଟାନ୍ସ'କୁ ବୁଝାଇବା ସକାଶେ ଗୃହୀତହୋଇଚି ସାଧାରଣ ପରିଭାଷା । ଅର୍ଥବୋଧ କରିବାକୁ ଅସୁବିଧାହେବ ବୋଲି, ଲେଖିଛନ୍ତି,

> we must inquire whether a thing and its essence are the same or different. This is of some use for the inquiry into substances; for a thing is thought to be not different from its substance, and the essence is said to be the substance of each thing.

ଇଙ୍ଗିତ ହେଲା, ସତ୍ୱ ଓ ସତ୍ତା ପରସ୍ପର ଅଙ୍ଗାଙ୍ଗୀ; ତେଣୁ ସତ୍ୱ ଯେତେବେଳେ ଆଧିଭୌତିକ ଅସ୍ତିତ୍ୱକୁ ନିର୍ଦ୍ଦିଷ୍ଟକରୁଚି, ସତ୍ତା ବା ଏସେନ୍ସ ସେତେବେଳେ ନିର୍ଦ୍ଦେଶକରୁଚି ଜ୍ଞାନାର୍ଜନ ସକାଶେ ଯା ମୌଳିକ : There are several senses in which things are said to be primary, and substances are primary in every sense : definition, in knowledge, and in time । ଅର୍ଥାତ୍, ଏସେନ୍ସ ଏଠି 'ପ୍ରାଇମେରି', ସବ୍‌ଷ୍ଟାନ୍ସ ଉପରେ ତାର ଅଗ୍ରାଧିକାର, କାହିଁକିନା, ଏସେନ୍ସ ସମ୍ବନ୍ଧରେ ଅବଗତ ନ ହେଲେ, ସବଷ୍ଟାନ୍ସକୁ ଉପଲବ୍ଧିକରିବା ଅସମ୍ଭବ । ଏଇ ବ୍ୟଞ୍ଜନାରେ, ଆ୍ୟାଟମ୍-ସମ୍ପର୍କିତ ଜ୍ଞାନ ମୌଳିକ ନୁହେଁ । କାହିଁକିନା, ସତ୍ୱ ସବୁବେଳେ ସବ୍‌ଜେକ୍ଟ, ଆଉ ସତ୍ତା ତା ପ୍ରେଡିକେଟ୍ । ଏଥିରୁ ବୁଝାପଡୁଚି, ଆରିଷ୍ଟୋଟ୍ଲଙ୍କ ଅବଲୋକନରେ, (୧) ଜଗତ୍ ପ୍ରହେଳିକା ନୁହେଁ, ଯୁକ୍ତିର ଅଧିଗମ୍ୟ; (୨) ରିଆଲିଟି ନିଟୋଳ ନୁହେଁ, ତାର ମଧ୍ୟ ରହିଚି ହାଇଆର୍‌କୀ । ମୂଳରେ ସବ୍‌ଷ୍ଟାନ୍ସ, ଯା ଅଣ୍ଟୋଲଜି ଦୃଷ୍ଟିରୁ ସ୍ୱାଧୀନ ଓ ସ୍ୱତନ୍ତ୍ର; ଏବଂ ସେଇ ହେତୁରୁ ଅନ୍ୟ ସକଳ ଅସ୍ତିତ୍ୱର ମୂଳାଧାର । ଉଭୟ ସର୍ତ୍ତକୁ ତୁଷ୍ଟକରିପାରେ ତେଣୁ 'ଏଇ ସେହିକିଛି' ଏବଂ 'ଏ କି ଜିନିଷ ?' ଭଳି ବର୍ଣ୍ଣନା । ଅନ୍ୟ

ଶବ୍ଦରେ,ଜଗତର ଅସ୍ତିତ୍ୱ ସଂଜ୍ଞାତୀତ ନୁହେଁ; ନୁହେଁ ବୋଲି, ସମ୍ୟକ ବୋଧଗମ୍ୟ । ଆରିସ୍ତୋତ୍ଲ୍ ଯଦି ଦେଖାଇ ନପାରନ୍ତି ଯେ ଅଣ୍ଟୋଲଜି ବିଚାରରେ ଯା ମୂଳାଧାର, ମନନରେ ମଧ୍ୟ ତା ପ୍ରତ୍ୟକ୍ଷ, ସ୍ଥିତ ଜଗତର ସମ୍ୟକ ବୋଧଗମ୍ୟତା ହୋଇଯିବ ଆପେଆପେ ବିପନ୍ନ । ସେଥିପାଇଁ, ଅନୁସନ୍ଧାନ ପଥରେ ସମ୍ଭାବ୍ୟ ଅନ୍ତରାୟଗୁଡ଼ିକୁ ଚିହ୍ନଟକରିବାକୁ ପଡ଼ିଚି; ଯେପରି, ସବ୍‌ସ୍ଟାନ୍ସ ନିର୍ଦ୍ଦିଷ୍ଟ ଏକକ ନା ସର୍ବଜନୀନ ଓ ସାଧାରଣ ? ଯଦି ନିର୍ଦ୍ଦିଷ୍ଟ, ରହିଯିବ ଅଜ୍ଞେୟ । ଯେପରି ସୋକ୍ରେଟିଜ୍ । ସଂଜ୍ଞାବଦ୍ଧ କରିପାରିନାହାନ୍ତି ବୋଲି ଜାଣିପାରିନାହାନ୍ତି । ମାତ୍ର, ପ୍ରମାଣକରିବାକୁ ପଡ଼ିବ ଯେ ସତ୍ତାକୁ ଜାଣିବା ସମ୍ଭବପର । ସତ୍ତା ସର୍ବଜନୀନ ହେଲେ ଜାଣିହେବ, ମାତ୍ର ସତ୍ତାର ଅସ୍ତିତ୍ୱ ବିବେଚିତ ହେବନାହିଁ ସ୍ୱାଧୀନ କି ସ୍ୱତନ୍ତ୍ର । କିନ୍ତୁ 'ଏଇ ସେଇକିଛି' ନିର୍ଦ୍ଦିଷ୍ଟ ନୁହେଁ କି ସର୍ବସାଧାରଣ ନୁହେଁ । ତା ହେଲେ, ସୋକ୍ରେଟିଜ୍‌ଙ୍କ ପରି ବ୍ୟକ୍ତିବିଶେଷକୁ ଧରାଯାଇପାରେ ଏକ ଯୁଗ୍ମସତ୍ତା, ପଞ୍ଚଭୂତ ପୁଣି ମନୁଷ୍ୟରୂପ । ସେ କ୍ଷେତ୍ରରେ ମଣିଷପ୍ରଜାତି ଏକ ସାଧାରଣ ସତ୍ତା ହେଲେସୁଦ୍ଧା, ରୂପଗତ ଓ ବସ୍ତୁଗତ ସ୍ୱାତନ୍ତ୍ର୍ୟ ଅବଶ୍ୟମ୍ଭାବୀ । ପ୍ରଜାତି ପରିଚୟରେ ମଣିଷ ହେବ ତେବେ ରକ୍ତମାଂସ କଳେବରରେ ଅବିନଶ୍ୱର ଆତ୍ମା । ଆତ୍ମା ଯେହେତୁ ରୂପାୟିତକରୁଚି ରକ୍ତମାଂସ ଅସ୍ତିତ୍ୱକୁ, ଆତ୍ମାହିଁ ମଣିଷପ୍ରଜାତିର ରୂପକାର । ଆତ୍ମା ତେଣୁ ପ୍ଲାଟୋଙ୍କ 'ଫର୍ମ'; ସଂଖ୍ୟାରେ ଓ ରୂପରଙ୍ଗରେ ବିଭିନ୍ନ ହେଲେସୁଦ୍ଧା, ଆତ୍ମା ଏକ ଓ ଅବିଭାଜ୍ୟ । ଅର୍ଥାତ୍, ଏକ ପ୍ରିନ୍‌ସିପ୍‌ଲ୍, ଜୀବନର ପ୍ରିନ୍‌ସିପ୍‌ଲ୍; ତେଣୁ ସବ୍‌ସ୍ଟାନ୍ସ ପଦବାଚ୍ୟ । କାହିଁକିନା, ଜୀବନଧାରଣ ସକାଶେ ମୌଳିକ, ଯଦିଚ ଜୀବନଯାପନ ଠାରୁ ସ୍ୱାଧୀନ । ପ୍ରଜାତିଗତ ଯେତେ ଆକୃତି, ଆରିସ୍ତୋତ୍ଲ୍‌ଙ୍କ ଦୃଷ୍ଟିରେ, ସବୁତକ ଚିରସ୍ଥାୟୀ; ଏବଂ ନିଜସ୍ୱ ଆକୃତି ଆହରଣକରିବା ପ୍ରକ୍ରିୟାରେ ପ୍ରତ୍ୟେକ ଜୀବନ୍ତ ବସ୍ତୁ ଏପରି ଏକ ମୌଳିକ ଓ ସ୍ୱତନ୍ତ୍ର ସତ୍ତାର ଅଂଶୀଦାର ହୁଏ, ଯୋଉ ସତ୍ତା ଦିବ୍ୟ ଓ ସକଳ ଅସ୍ତିତ୍ୱଯୁକ୍ତ ବସ୍ତୁରୁ ସ୍ୱତନ୍ତ୍ର । ହେଲେସୁଦ୍ଧା, ସଂଜ୍ଞାନିର୍ମାଣ ସମ୍ଭବପର, କାହିଁକିନା, (୧) ପ୍ରାଥମିକ ସତ୍ତା ଭାବରେ ତା ବୋଧଗମ୍ୟ ଏବଂ (୨) ମୌଳିକତା ଓ ବୋଧଗମ୍ୟତା ଯେହେତୁ ନିଃସନ୍ଦେହ, ନିରୂପଣ କରିହେବ ରିଆଲିଟିର କ୍ରମୋଚ୍ଚ ବିନ୍ୟାସ । ସ୍ପଷ୍ଟତଃ, 'ଫର୍ମ' କୁ ହିଁ ଆରିସ୍ତୋତ୍ଲ୍ ଭାବିଚନ୍ତି 'ପରମ କାରଣ' । ଅଥଚ, ***କ୍ୟାଟିଗରିଜ୍*** ଲେଖିବାବେଳେ ସୋକ୍ରେଟିଜ୍‌ଙ୍କ ଭଳି ନିର୍ଦ୍ଦିଷ୍ଟତା ଭିତରେ ଦେଖିଥିଲେ ପ୍ରାଥମିକ ସତ୍ତା, ଗୁଣଧର୍ମର ଅଧୀନ ହେଲେସୁଦ୍ଧା ଅନ୍ୟ କିଛିର ପ୍ରେଡିକେଟ୍ ନୁହନ୍ତି ଯେହେତୁ ସୋକ୍ରେଟିଜ୍ । ଏକ୍ଷଣି, ସବୁଯାକ ଗୁଣଧର୍ମକୁ ଯଦି ନିଷ୍କାଶିତ କରିଦିଆଯାଏ, ଅବଶିଷ୍ଟ ଯା ରହିବ, ତା କେବଳ ଅଚେତନ, ଅର୍ଥାତ୍ ମ୍ୟାଟର୍ ।

ମ୍ୟାଟର୍‌କୁ ଯେହେତୁ ଆଶ୍ରୟକରୁଚି ଗୁଣଧର୍ମ, ମ୍ୟାଟର୍ ହେବନାହିଁ କାହିଁକି ପ୍ରାଇମେରି ସବ୍‌ଷ୍ଟାନ୍ସ ? ଆରିଷ୍ଟୋଟ୍ଲଙ୍କ ଉତ୍ତର ହେଲା : By matter I mean that which in *itself* is neither a particular thing nor of a certain quantity nor assigned to any other of the categories by which being is determined । ମ୍ୟାଟର୍ ତେଣୁ ନିର୍ଗୁଣ ନୁହେଁ, କିନ୍ତୁ matter in itself ନିର୍ଗୁଣ । ଏବଂ ଗୁଣଧର୍ମ ସକାଶେ ସଙ୍ଗୀ ଭଳି, ନିଜେ ନିର୍ଦ୍ଦିଷ୍ଟ କୋଉ ବସ୍ତୁ ନୁହେଁ; ଉପଲକ୍ଷ୍ୟ ବା ଉପକରଣ ମାତ୍ର । ଅଥଚ ସବ୍‌ଷ୍ଟାନ୍ସକୁ ହେବାକୁ ପଡ଼ିବ 'ଏଇ ସେଇକିଛି', ପୁଣି ଅନ୍ୟ ସକଳ ଜିନିଷରୁ ସ୍ୱାଧୀନ (ଅଣ୍ଟୋଲଜି ଦୃଷ୍ଟିରୁ) । ମ୍ୟାଟର୍ ଯେହେତୁ ନିଜେ ସେପରି ସ୍ୱାଧୀନ କି ନିର୍ଦ୍ଦିଷ୍ଟ ନୁହେଁ, ହେବନାହିଁ ସବ୍‌ଷ୍ଟାନ୍ସ ପଦବାଚ୍ୟ । ତାହେଲେ, ସତ୍ୱତାଲିକାରୁ ମ୍ୟାଟର୍ ଓ ସବୁଯାକ ଯୌଗିକ ରୂପ ବାଦ୍‌ପଡ଼ିବ । ବାକିରହିବ 'ଫର୍ମ୍' । କିନ୍ତୁ ଆରିଷ୍ଟୋଟ୍ଲ ଫେର୍ କହିଲେ : substance is prior in every sense : in logos, in knowledge, in time । ଭାବାର୍ଥ ପ୍ରାଞ୍ଜଳ କରିବାକୁ ଯୋଡ଼ିଦେଲେ : A substance is prior in *logos* in the sense(1) that in the *order* of reality other things are dependent on anything else; so (2) when one gives an *account* or *definition* of other things one will ultimately have to mention their dependence on substance, and thus include the logos of substance. Substance is prior in knowledge in the sense that if our knowledge reflects the order of reality- if what is most knowable to us is what is most knowable, then substance will be known to be that which is prior in reality । ଏଥିରୁ ଦିଶୁଚି, ଆରିଷ୍ଟୋଟ୍ଲ ମନ ସ୍ଥିରକରି ସାରିଚନ୍ତି, 'ଫର୍ମ୍'କୁ କରିବେ ପ୍ରାଇମେରି ସବ୍‌ଷ୍ଟାନ୍ସ ବା ପ୍ରାଥମିକ ସତ୍ୱ । 'ଫର୍ମ୍' ଅବଶ୍ୟ ଏସେନ୍ସର ଅନ୍ୟ ନାମ । କିନ୍ତୁ ଫର୍ମ୍ କାହିଁକି ଏସେନ୍ସ ? ନା, ନିହିତ ଅନ୍ତର୍ଗୂଢ଼ ସ୍ୱଭାବ ସ୍ଥିରକରିଚି ବସ୍ତୁର ଆକୃତି; ଏବଂ ଏ ନିରୂପଣ ଏକ ଶୃଙ୍ଖଳା, ଆଗପଛ ବିନ୍ୟାସରେ ସଜ୍ଜିତ ଶୃଙ୍ଖଳା । ବିନ୍ୟାସର ଶୀର୍ଷରେ ଅବଶ୍ୟ ସବ୍‌ଷ୍ଟାନ୍ସ, କାହିଁକିନା, ଅନ୍ୟ ସକଳ ଅସ୍ତିତ୍ୱ ଆକୃତିପାଇଚି କେବଳ ସବ୍‌ଷ୍ଟାନ୍ସ ସହିତ ନିଜ ସମ୍ପର୍କ (ନିର୍ଭରଶୀଳତା) କାରଣରୁ, ଏବଂ ସେଥିପାଇଁ,essence is the ontological correlate of a definition। ଅର୍ଥାତ୍, ସଂଜ୍ଞାବଦ୍ଧ କରିହେବ ଏକମାତ୍ର ସବ୍‌ଷ୍ଟାନ୍ସକୁ, ଅନ୍ୟ ଉପାଦାନକୁ

ନୁହେଁ; କାହିଁକିନା, definition and essence in the primary and simple sense belong to substances । ଏ କିନ୍ତୁ *କ୍ୟାଟିଗରିଜ୍‌*ରେ ବର୍ଣ୍ଣିତ ପ୍ରାଥମିକ ସତ୍ୱ ନୁହେଁ । ଏ ସବ୍‌ସ୍ଟାନ୍ସ କେବଳ ସେଇ ଆକୃତି, ଶିଳ୍ପୀ ଯା ବନ୍ଧନକରେ ଆପଣା ଆତ୍ମାରେ; ଏବଂ ନିତ୍ୟସକ୍ରିୟ ସେଇ ଚିନ୍ତାରୁ ଉତ୍ସାରିତହୁଏ ସର୍ଜନା । ଅର୍ଥାତ୍, ଏ ସବ୍‌ସ୍ଟାନ୍ସ ମ୍ୟାଟ୍‌ର-ବର୍ଜିତ ଏବଂ ଶିଳ୍ପକୃତି ହିଁ ତାର ଇନ୍ଦ୍ରିୟଗ୍ରାହ୍ୟ ରୂପ .....from art proceed the things of which the form is in the soul. (By form I mean the essence of each thing and its primary substance) ..... There it follows that in a sense health comes from health and house from house, that with matter from that without matter : for the medical art and the building art are the form of health and of the house, and I call the essence substance without matter.

ଫର୍ମ୍ (ଆକୃତି) ତେଣୁ ପ୍ରାଥମିକ ସତ୍ୱ ଏବଂ ସୃଷ୍ଟବସ୍ତୁର ସାକ୍ଷାତ୍ ସତ୍ତା; ମାତ୍ର ଭୂତରହିତ ଅସ୍ତିତ୍ୱ । ପୁଣି, ଘର ଓ ବୃତ୍ତ ଉଦାହରଣରୁ ସ୍ପଷ୍ଟ ଯେ,ଆକୃତି ମନୁଷ୍ୟକୃତ ଫର୍ମ୍ ନୁହେଁ, ତା ଛାଞ୍ଚ ମଣିଷ-ଆତ୍ମାରେ ମୁଦ୍ରିତହୋଇ ରହିଚି ଆଚନ୍ତୁ; ସେଇ ଛାଞ୍ଚରେ ପକାଇ ମ୍ୟାଟର୍‌କୁ ରୂପଦେବା ହିଁ ସର୍ଜନା । ଅର୍ଥାତ୍, ଯଥାପ୍ରାପ୍ତ ଆକୃତିକୁ ଭୂତବସ୍ତୁରେ ପରିଣତକରିବା ବାଟଦେଇ ସତ୍ତା ବା ଏସେନ୍ସକୁ ଉପଲବ୍ଧି । ଫର୍ମ୍ ବା ଆକୃତିକୁ ତେଣୁ ମଣିଷ ସୃଷ୍ଟିକରେନା; କରେନା ବୋଲି, ଫର୍ମ୍ ମ୍ୟାଟର୍-ବର୍ଜିତ ଏବଂ ସୁଗନ୍ଧ (ଏସେନ୍ସ) ପରି ବିଦେହୀ । ଏବଂ ସେ ଆକୃତି (ମ୍ୟାଟର୍ ରୂପରେ ଯେହେତୁ ଉପଲବ୍ଧ ନୁହେଁ ) ଅନିର୍ଦ୍ଦିଷ୍ଟ, ଆରିଷ୍ଟୋଟ୍‌ଲ୍‌ଙ୍କ ପରିଭାଷାରେ, such । ଘରଟା ତେଣୁ this such । ମ୍ୟାଟର୍ ଓ ଫର୍ମ ଯେତେବେଳେ ମିଳିତଭାବେ ରଚନାକରିବେ ନିର୍ଦ୍ଦିଷ୍ଟତା, ତାକୁ ଚିହ୍ନିତକରାଯିବ 'ଘର' । ସେଇ ଅର୍ଥରେ 'ମନୁଷ୍ୟ' ମଧ୍ୟ ଏକ ଯୁଗ୍ମସତ୍ତା, ଆତ୍ମା ଓ ପଞ୍ଚଭୂତର ଯୌଗିକ ମିଳନ । ଏବଂ ଆକୃତିରେ ନିର୍ଦ୍ଦିଷ୍ଟ ହେଲେସୁଦ୍ଧା, ପ୍ରଜାତି ପରିଚୟରେ 'ମନୁଷ୍ୟ' ସର୍ବସାଧାରଣ । କିନ୍ତୁ ଆକୃତି ଯଦି ଯୁଗପତ୍ ନିର୍ଦ୍ଦିଷ୍ଟ ଓ ନିଖିଳ, ସଂଜ୍ଞାବଦ୍ଧ କରିବା ନିଶ୍ଚୟ ଦୁଷ୍କର । ମାତ୍ର ସେଭଳି ଅଦ୍‌ଭୁତ ଜିନିଷ କଳ୍ପନା କରିପାରୁନାହୁଁ ବୋଲି, ପ୍ରତ୍ୟୟଟାର ଦାର୍ଶନିକ ତାତ୍ପର୍ଯ୍ୟ ମିଛ ହୋଇଯିବନାହିଁ । କିନ୍ତୁ ଆରିଷ୍ଟୋଟ୍‌ଲ୍ ପୁଣି କହିଚନ୍ତି, ସବ୍‌ସ୍ଟାନ୍ସ ଖାଲି ନିର୍ଦ୍ଦିଷ୍ଟ ନୁହେଁ, ଅନ୍ୟ ସବୁଥିରୁ ସ୍ୱତନ୍ତ୍ର । ଏଣେ, ଜ୍ଞାନର ସ୍ୱଭାବ ସର୍ବଜନୀନ । ଜ୍ଞାନର ବିଷୟ ଯଦି ସତ୍ୱ, ସତ୍ୱକୁ ମଧ୍ୟ ହେବାକୁ ପଡ଼ିବ ସର୍ବଜନୀନ : ହେଲେଯାଇ ସତ୍ୱର ଅସ୍ତିତ୍ୱ ହେବ ସବୁଥିରୁ ସ୍ୱାଧୀନ । ଏକ୍ଷଣି, ଆରିଷ୍ଟୋଟ୍‌ଲ୍ ଏପରି

ଏକ ଅସ୍ତିତ୍ୱକୁ କଳ୍ପନାକରିବେ, ଯା ନିର୍ଦ୍ଦିଷ୍ଟ ନୁହେଁ କି ନିଖିଳ ନୁହେଁ; ବରଂ ଏକପ୍ରକାର ଅନ୍ୱୟ ବା ଇଉନିଟି; ଜ୍ୟାମିତିରେ ଯେପରି ଚତୁର୍ଭୁଜ । ପ୍ରାଣୀ, ଯାର ହାତସଂଖ୍ୟା ଚାରି, ନିଜେ ଏକ ସାଧାରଣ ପ୍ରଜାତି; ଅନ୍ୟ ପ୍ରାଣୀଙ୍କଠୁଁ ସ୍ୱତନ୍ତ୍ର ନୁହେଁ । ଖାଲି ହାତସଂଖ୍ୟା ଦ୍ୱାରା ପ୍ରାଣୀପ୍ରଜାତିରୁ କେହି ସ୍ୱାଧୀନ ହୋଇଯିବନାହିଁ । କିନ୍ତୁ ବାସ୍ତବରେ ଯଦି କୌଣସି ପ୍ରାଣୀ ଦେହରୁ ଚାରି-ଚାରିଟା ହାତ ବାହାରେ, ଅନ୍ୟାନ୍ୟ ପ୍ରାଣୀଙ୍କ ଠାରୁ ହୋଇଯିବ ସ୍ୱତନ୍ତ୍ର । ତେଣୁ, ଚାରିହାତ (+) ପ୍ରଜାତି = ଏକ ଇଉନିଟି । ବର୍ଗୀକରଣ ସମ୍ଭବପର ନୁହେଁ ଅବଶ୍ୟ । ସେଇ ନିର୍ଦ୍ଦିଷ୍ଟର ନିର୍ଦ୍ଦିଷ୍ଟତାକୁ ମଧ ଧରିପାରିବନାହିଁ ସଂଜ୍ଞା । ଏଭଳି ଅନେକ ଅଜର ଅମର ସତ୍ୱ ଅଛି, ଯା ନିର୍ଦ୍ଦିଷ୍ଟ; ପୁଣି ଅନ୍ୟସବୁ ଜିନିଷରୁ ସ୍ୱାଧୀନ । ଯେପରି, ସୂର୍ଯ୍ୟ ଚନ୍ଦ୍ର ଗ୍ରହ ନକ୍ଷତ୍ର । ସଂଜ୍ଞା ଦ୍ୱାରା ଧରିହେବନାହିଁ । କାହିଁକିନା, ସୂର୍ଯ୍ୟର ସଂଜ୍ଞା ହୁଏ ଯଦି 'ଯା ପୃଥିବୀକୁ ପ୍ରଦକ୍ଷିଣକରେ ଆକାଶମାର୍ଗରେ', ତେବେ ସୂର୍ଯ୍ୟ ନିଜ କକ୍ଷପଥରେ ଯଦି ଅଟକି ଯାଏ, ତଥାପି ତାର ଚିହ୍ନାୟନ ହେବ 'ସୂର୍ଯ୍ୟ' । ଏବଂ, ଯଦି ଅନ୍ୟ କୋଉ ନକ୍ଷତ୍ର ହଠାତ୍ ପୃଥବୀ ଚାରିପଟରେ ବୁଲିବାକୁ ଲାଗେ, ସେ ନକ୍ଷତ୍ରକୁ ଚିହ୍ନିତ କରାଯିବନାହିଁ 'ସୂର୍ଯ୍ୟ' । ସୂର୍ଯ୍ୟ ରୂପକ ନିର୍ଦ୍ଦିଷ୍ଟ ସବ୍‌ଷ୍ଟାନ୍ସର ସଂଜ୍ଞା ତେଣୁ ହୋଇପାରେନା 'ଯା ପୃଥିବୀକୁ ପ୍ରଦକ୍ଷିଣକରେ' । କାହିଁକିନା, ସୂର୍ଯ୍ୟ ସତକୁସତ କି ଜିନିଷ, ପ୍ରକାଶକରିବାକୁ ସଂଜ୍ଞା ଅକ୍ଷମ । ନିର୍ଦ୍ଦିଷ୍ଟର ନିର୍ଦ୍ଦିଷ୍ଟତାକୁ ତେଣୁ ଲଗସ୍ (=ଭାଷା) ପ୍ରକଟ କରିପାରେନା । ଅଥଚ ଅନ୍ତରୀକ୍ଷରେ ଜ୍ୟୋତିଷମାନଙ୍କ ଗତିବିଧି ବୁଝାଇଦେଉଚି ଭଗବାନ୍‌ଙ୍କ ସହିତ ବିଶ୍ୱବ୍ରହ୍ମାଣ୍ଡର ଅଚ୍ଛେଦ୍ୟ ସମ୍ପର୍କ । ଏଇଠି ପହଞ୍ଚି ବୁଝିବା ଦୁଃସାଧ ନୁହେଁ ଯେ ଆରିଷ୍ଟୋଟ୍ଲଙ୍କ 'ପ୍ରାଇମେରି ସବ୍‌ଷ୍ଟାନ୍ସ', 'ଏସେନ୍ସ', 'ଫର୍ମ୍' ଓ 'କ୍ୟାଟିଗରି' ଇତ୍ୟାଦି ବିତଣ୍ଡା କୋଉ ଏକାଗ୍ର ଲକ୍ଷ୍ୟଆଡ଼କୁ ଧାବିତ । ସେ ଲକ୍ଷ୍ୟ ଭଗବାନ୍, ଭଗବାନ୍ ହିଁ ଏକମାତ୍ର ସବ୍‌ଜେକ୍ଟ, ବିତଣ୍ଡାଗୁଡ଼ାକ ତାଙ୍କରି ପ୍ରେଡିକେଟ୍ । ଭାରତୀୟ ଦାର୍ଶନିକ ଅନେକ ଆଗରୁ ସ୍ପଷ୍ଟ କହିଦେଇଚନ୍ତି ଭଗବାନ୍ ଅବାଙ୍‌ମାନସଗୋଚର; ଭାଷା ବା ମନନ ସେଇ ପରମ ସତ୍ତାକୁ ଧରିପାରେନା; ମାନିଲେ ଠାକୁର, ନ ମାନିଲେ କୁକୁର ! କିନ୍ତୁ ଆରିଷ୍ଟୋଟ୍ଲ ଋଷି ନୁହଁ, ବୁଦ୍ଧିଜୀବୀ ଓ ଅଧ୍ୟାପକ । ବାଗାଡ଼ମ୍ବର ହିଁ ତାଙ୍କ ସମ୍ବଳ : For that which is *capable* of receiving the object of thought, i.e., substance, is mind. And mind is *active* when it *possesses* this object. Therefore the latter rather than the former is the divine element which mind seems to contain, and the act of contemplation is what is most pleasant and best. If, then, God is always in that good state in which we sometimes are, this compels our

wonder; and if in a better this compels it yet more. And god is in a better state. And life also belongs to god; for the activity of mind is life, and God is that activity; and God's essential actuality is life, most good and eternal. We say therefore that God is a living being, eternal, most good, so that life and duration continuous and eternal belong to God, for this is God. ( ଅକ୍ଷରର ବକ୍ରାକୃତି ମଦ୍‌କୃତ ) ।

ମାତ୍ର କାଣ୍ଡଜ୍ଞାନକୁ ଦିଶୁଚି, ଜାଣିବାର ଆକାଙ୍‌କ୍ଷା ଯଦି ସହଜାତ, ମଣିଷହିଁ ତେବେ ଏକମାତ୍ର ସବ୍‌ଜେକ୍ଟ, ଏବଂ ଜଗତ୍ ଆଉ କାହାରି ନୁହେଁ, ଏକମାତ୍ର ମଣିଷର ପ୍ରେଡିକେଟ୍ । ସେଇ ଯୁକ୍ତିରେ, ଭଗବାନ୍ ସୁଦ୍ଧା ଏକ ପ୍ରେଡିକେଟ୍ । ଆରିଷ୍ଟୋଟ୍‌ଲଙ୍କ ମଧ୍ୟସ୍ଥତା ତେଣୁ ଅନାହୂତ ଓ ଅନାବଶ୍ୟକ ।

ଆଜି ଏକବିଂଶ ଶତକରେ ପହଞ୍ଚି ମଣିଷ ଅବାଧ୍ୟ ହେଉଚି; କିନ୍ତୁ ବାଇବ୍‌ଲ ଲେଖିଚନ୍ତି ଯୋଉ ବିଦ୍ୱାନ୍, ବିବାକ ମାନିନେଇଚନ୍ତି ଆରିଷ୍ଟୋଟ୍‌ଲଙ୍କ ଲଗସ୍‌ରୁ ନିଃସୃତ ଲଜିକ୍, ମେଟାଫିଜିକ୍ସ ଓ ଏଥିକ୍ସ । ଭୟଦ୍ ବା ଶୂନ୍ୟରେ ଅବତୀର୍ଣ୍ଣ ହୋଇ ଈଶ୍ୱର ଆଦେଶ କରିଚନ୍ତି, Let there be light and there was light । ତାହେଲେ, ବିଜ୍ଞାନ ଆଉ ବୁଝିବାକୁ ଚେଷ୍ଟା କରିବ କାହିଁକି ଇନ୍ଦ୍ରିୟଗୋଚର ପ୍ରପଞ୍ଚକୁ ? ଚେଷ୍ଟା କରିବା ମାନେ ତ ନିଷିଦ୍ଧ ଫଳର ସ୍ୱାଦଗ୍ରହଣ, ଆଦ୍ୟ ପାପ ! ଏପରିକି ମାତ୍ର ତିନିଶ'ବର୍ଷ ଆଗରୁ ପୁଞ୍ଜିର ସ୍ତୂପୀକରଣକୁ ବିରୋଧ କରାଯାଇଚି ଯେତେବେଳେ, ପୁଞ୍ଜିପତିଙ୍କୁ ସମର୍ଥନକରି ଧନବିଜ୍ଞାନର ଜନକ ବିବେଚିତ ଆଡାମ୍ ସ୍ମିଥ୍ କହିଚନ୍ତି, ଧନୀ-ନିର୍ଦ୍ଧନ ପାର୍ଥକ୍ୟକୁ ଘୁଞ୍ଚାଇଦେବ 'ଅଦୃଶ୍ୟ ହସ୍ତକ୍ଷେପ', ଠିକ୍ ଯେମିତି ଆରିଷ୍ଟୋଟ୍‌ଲଙ୍କ 'ଅବିଚଳ ଚାଳକ' । ଅଥଚ ଦର୍ଶନବିଦ୍ୟା ଦେଖି ବି ଦେଖିପାରିନାହିଁ ଯେ ଏଇ ଦ୍ୟାବା ପୃଥିବୀର ସଂପର୍କଗୁଡ଼ାକ ଖାଲି 'ସବ୍‌ସ୍ଟାନ୍ସ' ଓ ତା ଆଟ୍ରିବିଉଟ୍‌ଗୁଡ଼ାକର ଏକମୁଖୀ ଲେଣଦେଣ ନୁହେଁ; ଅସଂଖ୍ୟ ସମ୍ବନ୍ଧରେ ପରସ୍ପର ଛନ୍ଦିହୋଇ ଦୃଶ୍ୟ-ଅଦୃଶ୍ୟ ସମସ୍ତ ପ୍ରପଞ୍ଚ ଯା ସୃଷ୍ଟିକରିଚାଲିଚି, ତାର ବହୁମୁଖୀ ଜଟିଳତାକୁ ଉପଲବ୍ଧିକରିବା ଯଦି ମନନର ଲକ୍ଷ୍ୟ ହୁଏ, ତେବେ 'ଅଦୃଶ୍ୟ ହସ୍ତକ୍ଷେପ' କିମ୍ବା 'ଅବିଚଳ ଚାଳକ' ଭଳି ଆଇଡିଆ ବୁଦ୍ଧିର ଜଡ଼ତା ଖାଲି ନୁହେଁ, ଜଗଦ୍‌ଟାକୁ ଗୋଟାଏ ଅବରୁଦ୍ଧ ସ୍ୱୈରତନ୍ତ୍ର ଭାବରେ ଦେଖିବାର ପ୍ରବଣତା ମଧ୍ୟ ।



## ।। ପାଞ୍ଚ ।।

ବହୁକାଳଧରି ଆରିଷ୍ଟୋଟଲ୍‌ଙ୍କୁ ମନେକରାଯାଏ ବିଜ୍ଞାନଚର୍ଚ୍ଚାର ଭିତ୍ତିସ୍ଥାପକ, କାହିଁକିନା, ତାଙ୍କର ଦୁଇଟି ରଚନା *ଫିଜିକ୍ସ* (ପଦାର୍ଥବିଦ୍ୟା) ଓ *ଅନ୍ ଦ୍ୟ ହେଭେନ୍‌ସ୍* (ସ୍ୱର୍ଗ ବିଷୟକ) ପ୍ରବଳ ପ୍ରଭାବ ବିସ୍ତାରକରିଚି ମଧ୍ୟଯୁଗବ୍ୟାପୀ, ଏବଂ ବିଜ୍ଞାନଚର୍ଚ୍ଚାର ନିୟାମକ ହୋଇରହିଚି ଗାଲିଲେୟଙ୍କ ଆବିର୍ଭାବ ପର୍ଯ୍ୟନ୍ତ । ଉଭୟ ଗ୍ରନ୍ଥ ଘନସମ୍ବନ୍ଧ, କାହିଁକିନା, ପ୍ରଥମଟି ଯୋଉ ବିନ୍ଦୁରେ ସରିଚି, ଦ୍ୱିତୀୟଟି ଆରମ୍ଭହୋଇଚି ସେଇ ବିନ୍ଦୁରୁ, ଏବଂ ପରିବେଷିତ ହୋଇଛି ଯେତେ ଆଇଡିଆ, ବିଜ୍ଞାନୀ ପାଇଚନ୍ତି ସେଥିରୁ ଏପରି କିଛି ପ୍ରତ୍ୟୟ, ଯା ଅମ୍ଳାନ ରହିଚି ସପ୍ତଦଶ ଶତକ ପର୍ଯ୍ୟନ୍ତ । ଯେପରି, 'କୁଇଣ୍ଟେସନ୍ସ' କିମ୍ବା 'ସବ୍‌ଲୁନାରି' । କୁଇନ୍‌ଟେସନ୍ସ ମାନେ ଜୀବଦେହକୁ ଗଠିତକରେ ଯୋଉ ପଞ୍ଚମ (ଭୂତ ଚତୁଷ୍ଟୟର ଅତିରିକ୍ତ) ମୌଳିକ ଉପାଦାନ । ସେଇ ଏସେନ୍ସ କୁଆଡ଼େ ସର୍ବାପେକ୍ଷା ଉପାଦେୟ ଅଂଶ । ସବ୍‌ଲୁନାରି ମାନେ (ସବ୍+ଲୁନରି) ଚନ୍ଦ୍ରମଣ୍ଡଳର ଅନ୍ତର୍ବର୍ତ୍ତୀ କିନ୍ତୁ ଚନ୍ଦ୍ର ତଳକୁ ଅବସ୍ଥିତ ପରିସର । ଅଜବ ଏ ଧାରଣା ବିଜ୍ଞାନଚର୍ଚ୍ଚାରେ ଅବଶ୍ୟ ଅଚଳ ହୋଇଯାଇଚି; କିନ୍ତୁ ଦର୍ଶନବିଦ୍ୟାର ଇତିହାସକୁ ଅନୁଧ୍ୟାନକରିବା ସକାଶେ ମୂଲ୍ୟବାନ୍ ।

ତେବେ, ଆରିଷ୍ଟୋଟଲ୍‌ଙ୍କ ଅଭିମତକୁ, ବସ୍ତୁତଃ ପଦାର୍ଥବିଦ୍ୟା ବିଷୟକ ଧ୍ୟାନଧାରଣାକୁ, ବୁଝିବାକୁ ହେଲେ କଳ୍ପନାର ଚରିତ୍ର ପ୍ରତି ଦୃଷ୍ଟିଦେବାକୁ ପଡ଼ିବ ପ୍ରଥମେ । ସେଇ ପଶ୍ଚାତ୍‌ପଟ ସ୍ପଷ୍ଟକରିଦିଏ, ପ୍ରତ୍ୟେକ ଫିଲଜଫର୍ ନିଜ ବିଚାରତନ୍ତ୍ର ଉପସ୍ଥାନକରିବା ବାଟଦେଇ ଅଲଗା ଏକ ମେଦିନୀଦୃଷ୍ଟି ମଧ୍ୟ କରିଚନ୍ତି ପ୍ରଚାର । ସଚେତନଭାବେ ନୁହେଁ ହୁଏତ । ଏବଂ ଯେହେତୁ ଦର୍ଶନ-ସିଷ୍ଟେମ୍‌ର ଅତିରିକ୍ତ, ସେଇ ବିଶ୍ୱଦୃଷ୍ଟି ଦାର୍ଶନିକଙ୍କ ବିଚାରତନ୍ତ୍ର ଅପେକ୍ଷା ଅପେକ୍ଷାକୃତ ସରଳ । ସାରଲ୍ୟ ଅବଶ୍ୟ ଦର୍ଶନବିଦ୍ୟାର ବୈଶିଷ୍ଟ୍ୟ ନୁହେଁ; ବୈଶିଷ୍ଟ୍ୟ ସବୁବେଳେ ଜଟିଳତା ବା ସଫିସ୍ଟିକେସନ୍ । ଭାବୁକ ଦୃଷ୍ଟିରେ, ସରଳ ସ୍ୱାଭାବିକ ବିଶ୍ୱଦୃଷ୍ଟି ସମ୍ଭବତଃ ସ୍ଥୂଳ ଓ ଅମାର୍ଜିତ, ଏବଂ ସେଥିପାଇଁ, ଏପରି ଯୁକ୍ତିଜାଲ ବିସ୍ତାରକରିବେ ଯେ ଉପରକୁ ଦିଶିବ ଜ୍ଞାନଗର୍ଭ; ଗୃହୀତହେବ ନିର୍ବିବାଦ । ଜଟିଳତାର ଏକମାତ୍ର ଲକ୍ଷଣ ପୂର୍ବପ୍ରଚଳିତ ମତାଦର୍ଶର ସଦର୍ପ ଖଣ୍ଡନ । ପୁଣି, ଯୋଉ ମତାମତକୁ ଖଣ୍ଡନ କରାଯାଇଚି, ସେ ଖଣ୍ଡନକୁ ପୁନଶ୍ଚ ଖଣ୍ଡନ । କିନ୍ତୁ ଖଣ୍ଡନକୁ ଖଣ୍ଡନ ସତ୍ୟକୁ

କରିପାରେନା ସ୍ୱପ୍ରକଟ । ଏତିକି ପ୍ରତିପନ୍ନକରେ ଯେ ତତ୍ତ୍ୱଟା ହେଲେ ହୋଇପାରେ ନିର୍ଦ୍ଦୋଷ । ମାତ୍ର ସେକଥାକୁ ମଧ୍ୟ କରାଯିବ ଖଣ୍ଡନ । ଏତିକି ତେଣୁ ସନ୍ଦେହାତୀତ ଯେ, ନିଜେ ବୁଝିପାରୁ କି ନ ପାରୁ, ଭାବୁକର କଳ୍ପନାକୁ ଆଚ୍ଛନ୍ନକରି ରଖୁଚି ପ୍ରବାଦପ୍ରତିମ ବୁଢ଼ୀଆଣୀ ଜାଲ । ସାଣ୍ଟାୟାନା ସେ ଜାଲକୁ ନାଁ ଦେଇଚନ୍ତି 'ଆ୍ୟାନିମଲ୍ ଫେଇଥ୍' ।

ଫିଜିକ୍ସ ବା ପଦାର୍ଥବିଦ୍ୟା ବୋଲି, ଆରିଷ୍ଟୋଟ୍ଲଙ୍କ ଅମଳରେ ଯା କଳ୍ପନାକରାଯାଇଚି, ସେ ଜଗତ୍ ବହୁକାଳରୁ ଅନ୍ତର୍ହିତ; ଆଜି ଯିଏ ଫିଜିକ୍ସ ପଢ଼େ, ଆରମ୍ଭକରେ ମେକାନିକ୍ସ ବା ବଳବିଦ୍ୟାରୁ; ମେକାନିକ୍ସ ଶବ୍ଦରୁ ବୁଝାପଡୁଚି ପାଠଟା ମେସିନ୍ ବା ଯନ୍ତ୍ରପାତି ସମ୍ବନ୍ଧୀୟ । ବିଦ୍ୟାର୍ଥୀ ତେଣୁ ମୋଟର୍‌ଗାଡ଼ି ଉଡ଼ାଜାହାଜ ରେଲଗାଡ଼ି ପ୍ରଭୃତି ସହିତ ଘନିଷ୍ଠ, ଏବଂ ସେଥିପାଇଁ, ସ୍ୱପ୍ନରେ ସୁଦ୍ଧା ଭାବେନା ଯେ ଏଗୁଡ଼ାକ ଭିତରେ କାଳ୍ପନିକ କୋଉ ଘୋଡ଼ା ଯୋଚାଯାଇଚି,ଅଥବା ଯୋଉ ଉଡ଼ାଜାହାଜ ଆକାଶରେ ଉଡୁଚି, ତା ଡେଣାଯୋଡ଼ାକ ସ୍ୱର୍ଗୀୟ କୋଉ ଚଢ଼େଇର । ଢେଙ୍କି ବି କେବେଠୁଁ ଉଭାଇଗଲାଣି, ନାରଦ ତା ଉପରେ ବସି ଆକାଶରେ ଏଠିକିସେଠିକି ଯିବାଆସିବା କରିବା ଏକ୍ଷଣି ସିନେମାର ବିଷୟ । ଜଗତକୁ ଯୋଉ ରୂପରେ ଆଜି କଳ୍ପନାକରୁଁ, ବଡ଼କୋଉ ଭୂମିକା ପଶୁପକ୍ଷୀ ଦାବିକରନ୍ତିନାହିଁ ସେଥିରେ । ମଣିଷ ଏକ୍ଷଣି ଏପରି ଏକ ପାର୍ଥିବ ଜଗତର ଅଧିବାସୀ, ଯୋଉ ଜଗତ୍ ଆମ କଳ୍ପନାରେ ନିର୍ଜୀବ ଏବଂ ଏକାବେଳକେ ମଣିଷର ଆଜ୍ଞାଧୀନ । ଅଥଚ ଗ୍ରୀକ୍‌ମାନଙ୍କ ଚେତନାରେ ଗତିବେଗ କୋଉହେଲେ ଯାନ୍ତ୍ରିକଶକ୍ତି ନୁହେଁ; ଗତି ବା ମୋସନ୍ ବିଷୟରେ ଭାବିଚନ୍ତି ଅବଶ୍ୟ; ମାତ୍ର ସେ ଚିନ୍ତାରେ ଗତି, ସୂର୍ଯ୍ୟଚନ୍ଦ୍ରର ଗତି ପରି ନଭୋଚାରୀ । ବ୍ୟତିକ୍ରମ ଏକମାତ୍ର ଡେମୋକ୍ରିଟସ୍ ଓ ଆର୍କିମିଡିସ୍ । ପ୍ରତିଭାଧର; ସେଥିପାଇଁ ଅସାଧାରଣ । ଜୀବଜନ୍ତୁଙ୍କ ଗତିକୁ ଉପେକ୍ଷାକରିବା ଅସମ୍ଭବ, ଗ୍ରହ ନକ୍ଷତ୍ରଙ୍କ ଗତିବିଧିକୁ ମଧ୍ୟ । ଦୁଇପ୍ରକାର ଏ ଗତି ଗ୍ରୀକ୍‌ଚେତନାରେ ପାଇଚି ତେଣୁ ପ୍ରାଧାନ୍ୟ । ଭାରତୀୟ ପରମ୍ପରା ମଧ୍ୟ ସମାନ୍ତରାଳ; ବିବାକ ଦେବଦେବୀଙ୍କ ବାହନ ପଶୁ କିମ୍ବା ପକ୍ଷୀ; ଅନ୍ତରୀକ୍ଷରେ ମଧ୍ୟ ଗ୍ରହନକ୍ଷତ୍ରର ଗତିକୁ ଭାବିଚନ୍ତି ଅଲୌକିକ । ଭାବିଚନ୍ତି ବୋଲି, ପ୍ରଚଳନ କରିଚନ୍ତି ଗ୍ରହପୂଜା । ମେସିନ୍‌ବର୍ଜିତ ପୁଷ୍ପକବିମାନ କଳ୍ପନାକରିଚନ୍ତି ଯେମିତି କାଳିଦାସ, ମେଘକୁ ସେମିତି କରିଚନ୍ତି ପୋଷ୍ଟ୍‌ମ୍ୟାନ୍ । ଅର୍ଥାତ୍, ଫିଜିକ୍ସ ଯାହାକୁ କହେ 'ମୋସନ୍', ପ୍ରାଚୀନ ଭାରତ ମଧ୍ୟ ଚିନ୍ତାକରିନାହିଁ ସେଭଳି ଗତି । ସେଇଭଳି, ପଶୁପକ୍ଷୀଙ୍କ ଶରୀରଗଠନ । ଏକ୍ଷଣି ବୁଝୁଛୁଁ, ଦେହ ଗୋଟାଏ ଜଟିଳ ମେସିନ୍, ସେ ଯନ୍ତ୍ରର ଗଠନତନ୍ତ୍ରରେ ଫିଜିକ୍ସର ଭୂମିକା ଯେତେ, କେମିଷ୍ଟ୍ରିର ତା'ଠୁଁ କମ୍ ନୁହେଁ, ଏବଂ ଫିଜିକ୍ସ ଓ କେମିଷ୍ଟ୍ରିର ସମବାୟ ଶରୀର ଗଠନରେ ଏକ ବିସ୍ତାରିତ ପ୍ରକ୍ରିୟା । ତେଣୁ ଦେହ ଯେ ଗୋଟାଏ ଯନ୍ତ୍ର, ଏ

ଧାରଣା ଆଜି ସ୍ୱତଃସିଦ୍ଧ; ମାତ୍ର ଗ୍ରୀକ୍‌ଚେତନାରେ ଆପାତଃ-ନିର୍ଜୀବ ଗତିକୁ ଜୀବଜଗତର ଅଙ୍ଗୀଭୂତକରିବା ବିବେଚିତହୋଇଚି ସ୍ୱାଭାବିକ । ଶିଶୁ ବି ଏକ୍ଷଣି ପଶୁପକ୍ଷୀଙ୍କୁ ଅନ୍ୟାନ୍ୟ ଜିନିଷରୁ ଅଲଗାକରିପାରେ, କାହିଁକିନା,ପଶୁପକ୍ଷୀଙ୍କୁ କେହି ଚଳାଏନା, ଆପେଆପେ ଚାଲନ୍ତି କି ଉଡ଼ନ୍ତି; ମାତ୍ର ଗ୍ରୀକ୍‌ମାନସକୁ , ବିଶେଷତଃ ଆରିଷ୍ଟୋଟ୍ଲଙ୍କ ଚେତନାକୁ, ଚାଲିବା-ଉଡ଼ିବା ଲକ୍ଷଣ ପ୍ରତିଭାତ ହୋଇଚି ଫିଜିକ୍ସର ମୂଳଦୂଆ; ପଦାର୍ଥବିଦ୍ୟାର ସାଧାରଣ ସୂତ୍ରଗୁଡ଼ିକର ଚାବିକାଠି ।

ତାହେଲେ, ଗଗନବିହାରୀ ଜ୍ୟୋତିଷ କେମିତି ହୁଏ ଗତିଶୀଳ ? ସେ ଗତିରେ ରହିଚି ଯୋଉ ନିୟମାନୁବର୍ତ୍ତିତା, ଜୀବଜଗତରେ ଅନୁପସ୍ଥିତ । ପାର୍ଥକ୍ୟର କାରଣ କୁଆଡ଼େ ଉଚ୍ଚତର ନୈତିକ ଉତ୍କର୍ଷ ! ବୟଃପ୍ରାପ୍ତି ଉତାରୁ ଯିଏ ଯା ଭାବିଥାଉ, ପ୍ରତ୍ୟେକ ଗ୍ରୀକ୍‌ଦାର୍ଶନିକ କିନ୍ତୁ ଶୈଶବରେ ଶିଖିଚନ୍ତି, ଚନ୍ଦ୍ର ସୂର୍ଯ୍ୟ ଗୋଟିଏ ଗୋଟିଏ ଦେବତା; ଆନାକ୍ସଗୋରସ୍ ଅଧାର୍ମିକତା ଅଭିଯୋଗରେ ଦଣ୍ଡ ମଧ୍ୟ ପାଇଚନ୍ତି, କାହିଁକିନା, ଜ୍ୟୋତିଷକୁ ଭାବିଚନ୍ତି ନିଷ୍ପ୍ରାଣ । ଦାର୍ଶନିକ ପକ୍ଷରେ ଭାବିବା ତେଣୁ ସ୍ୱାଭାବିକ ଯେ ଗ୍ରହତାରା ଯଦି ନିଜେ ଦେବତା ନୁହେଁ, ଦିବ୍ୟ କୋଉ ପରମଶକ୍ତି ନିଶ୍ଚୟ ଚାଳନାକରୁଚି ସେମାନଙ୍କୁ । ଏବଂ ସେ ଶକ୍ତି ନିଶ୍ଚୟ ହେଲେନୀୟ; ଅର୍ଥାତ୍ ରୀତିନୀତି ଓ ଶୃଙ୍ଖଳା ପ୍ରତିଷ୍ଠାକରିବାକୁ ଜ୍ୟାମିତି ଭଳି ପରିଚ୍ଛନ୍ନ ପ୍ରଣାଳୀକୁହିଁ କରେ ଚାଳନାର ନିୟାମକ । ଏବଂ ସେଥିପାଇଁ, ଗତି-ଅଗତି-ଦୁର୍ଗତିର ଅନ୍ତିମ ଉତ୍ସ ହୋଇପାରେ ଏକମାତ୍ର ବିଧାତାର ବିଧାନ । ଆରିଷ୍ଟୋଟ୍ଲଙ୍କ ପରିଭାଷାରେ, Will । ସେ ଅଭିଳାଷ କିନ୍ତୁ ମର୍ତ୍ତ୍ୟଲୋକରେ ବ୍ୟକ୍ତହେଉଚି ମଣିଷ ଓ ଜୀବଜନ୍ତୁଙ୍କ ଖିଆଲଖୁସୀ ରୂପରେ; ମାତ୍ର ସ୍ୱର୍ଗଲୋକରେ, ଅଚଞ୍ଚଳ ସେ ଅଭିଳାଷ କୋଉହେଲେ ଜୀବପିଣ୍ଡର ନୁହେଁ, ସର୍ବଶ୍ରେଷ୍ଠ କାରିଗରର । ଆରିଷ୍ଟୋଟ୍ଲଙ୍କ ଚିନ୍ତାର ଏ ପୁଙ୍ଖାନୁପୁଙ୍ଖ ବିବରଣ ଅବଶ୍ୟ ନୁହେଁ, କଳ୍ପଲୋକର ପଶ୍ଚାଦ୍‌ପଟ ମାତ୍ର । ଏଇ ପଶ୍ଚାଦ୍‌ପଟକୁ ମନନରେ ବହନକରି ଯୋଉ ଅନୁସନ୍ଧାନରେ ବ୍ରତୀହେବେ, ଏବଂ ସେଥିରୁ ଯା ପାଇବେ, ସ୍ୱାଭାବିକଭାବେ ପ୍ରତ୍ୟାଶା କରିବେ, ପ୍ରାପ୍ତ ପରିଣାମ ବିନା ବ୍ୟତିକ୍ରମରେ ନିର୍ବିକଳ୍ପ ସତ୍ୟ । ଉପକ୍ରମଣିକା ଉତାରୁ ଏକ୍ଷଣି ଦେଖାଯାଉ ଅସଲ ବକ୍ତବ୍ୟ ।

ଆରିଷ୍ଟୋଟ୍ଲ ପଦାର୍ଥବିଜ୍ଞାନ ପାଇଁ ଯୋଉ ଗ୍ରୀକ୍‌ଶବ୍ଦ ପ୍ରୟୋଗକରିଚନ୍ତି, ତା *phusis*, ମତାନ୍ତରେ *physis* । ଏ ଶବ୍ଦର ଇଂରେଜୀ 'ନେଚର୍' ବା ପ୍ରକୃତି । କିନ୍ତୁ ପ୍ରକୃତି କହିଲେ ଏକ୍ଷଣି ଯା ବୁଝୁଁ, 'ଫୁସିଜ୍' ତାର ଅବିକଳ ପ୍ରତିରୂପ ନୁହେଁ । ଯେପରି, 'ପ୍ରକୃତିବିଜ୍ଞାନ', 'ପ୍ରାକୃତିକ ଇତିହାସ'/' ପ୍ରାକୃତିକ ଭୂଗୋଳ' । ପ୍ରକୃତି (=ନେଚର୍) ସେଥିପାଇଁ ଏକ ଦ୍ୟର୍ଥକ ଓ ଅନିଶ୍ଚିତ ଶବ୍ଦ । ହେଲେ ସୁଦ୍ଧା, ଫୁସିଜ୍‌ର ବ୍ୟଞ୍ଜନା

ବିଜ୍ଞାନ–ଇତିହାସ–ଭୂଗୋଳ କୋଉଥିରେ ନାହିଁ । ଫୁସିକ୍‌ର ମୂଳକଥା, ପରିଣତି ଆଡ଼କୁ ଅଗ୍ରଗତି । ଯେପରି ମଞ୍ଜିରୁ ପୁଆ, ପୁଆରୁ ଗଛ । ମଞ୍ଜିର ସ୍ୱଭାବ (ନେଚର୍‌) ତେଣୁ ପୁଆ, ପୁଆର ଗଛ । ଅଥବା, ମଞ୍ଜିର ପ୍ରକୃତିରେ ନିହିତ ଅଛି ମହୀରୁହ । ଏଇ ଅର୍ଥରେ ଆରିଷ୍ଟୋଟ୍‌ଲ ପ୍ରୟୋଗକରିଚନ୍ତି 'ଫୁସିକ୍‌' । ସେ ଅବଲୋକନରେ, ଯେକୌଣସି ବିଷୟ/ବସ୍ତୁର ଶେଷପରିଣତି ହିଁ ସେ ଜିନିଷର ଅସଲ ପ୍ରକୃତି, ଏବଂ ସେଇ ପରିଣତିରେ ପହଞ୍ଚିବା ବିଷୟ/ବସ୍ତୁର ଅବଧାରିତ ଭବିତବ୍ୟ । କାହିଁକିନା ଭବିତବ୍ୟରେ ଉପଗତହେବା ହିଁ ପଦାର୍ଥର ଅସ୍ତିତ୍ୱର ଏକମାତ୍ର ହେତୁ । ଅର୍ଥାତ୍‌, ଫୁସିକ୍ ଇଙ୍ଗିତକରୁଚି ଏପରି ଏକ ଲକ୍ଷ୍ୟ, ଦର୍ଶନବିଦ୍ୟାରେ ଯାହାକୁ କହନ୍ତି ଟେଲିୟଲଜି ବା ପରମକାରଣବାଦ । ପ୍ରାକୃତିକ ବିଧାନ ସଂଘଟିତ କରିଚି ଅଜସ୍ର ଜିନିଷର ଅସ୍ତିତ୍ୱ, ପୁଣି ଅନ୍ୟାନ୍ୟ କାରଣରୁ ମଧ ସମ୍ଭବପର ହୋଇଚି ବହୁ ପଦାର୍ଥର ଉତ୍ପତ୍ତି । ଜୀବଜନ୍ତୁ, କୀଟପତଙ୍ଗ, ତରୁଲତା, ମାଟି ପାଣି ପବନ ନିଆଁ ଭଳି ସାଧାରଣ ଭୂତନିଚୟ ପ୍ରକୃତିଦତ୍ତ ପଦାର୍ଥ । ସେମାନଙ୍କ ଗତିଶୀଳତାକୁ ନିର୍ଦ୍ଧାରଣ କରୁଚି ଅନ୍ତର୍ଗତ ଯଥାପ୍ରାପ୍ତ ନିୟମ । ସେ ନିୟମ ସହଜାତ; ଇଂରେଜୀରେ, ମୋସନ୍‌ । କିନ୍ତୁ ସହଜାତ ନହୋଇ ସୁଦ୍ଧା ଗତି ଆସିପାରେ ଚାଳନାରୁ; ବାହନ, ବାଷ୍ପ ବା ବିଦ୍ୟୁତ୍‌ଶକ୍ତିରୁ । ଚାଳକ ବା ଚାଳିକାଶକ୍ତି ଦ୍ୱାରା ସ୍ଥାନରୁ ସ୍ଥାନାନ୍ତର ଗତିକୁ ଇଂରେଜୀରେ କହୁଚୁଁ ଲୋକୋମୋସନ୍‌ । କିନ୍ତୁ ମୋସନ୍‌ ଖାଲି ଗତି ନୁହେଁ,ପଦାର୍ଥର ଆକାର-ପ୍ରକାର ଓ ଗୁଣଧର୍ମ ମଧ ବଦଳାଇଦେଇପାରେ ମୋସନ୍‌ । ପ୍ରକୃତି (=ନେଚର୍‌) ଭିତରେ ନିହିତ ଅଛି ଉଭୟ ଚଳନ ଓ ନିଶ୍ଚଳତାର ଉତ୍ସ । ତଦନୁସାରେ ଚିହ୍ନଟକରୁଛୁଁ ପ୍ରାକୃତିକ ପଦାର୍ଥର 'ସ୍ୱଭାବ' (=ନେଚର୍‌) । ନେଚର୍‌ ତେଣୁ ପଦାର୍ଥର ଅଭ୍ୟନ୍ତରୀଣ ନିୟମ । ଏଇ ଧାରଣାରୁ, 'ଅସ୍ୱାଭାବିକ' (=ଅ-ସ୍ୱାଭାବିକ) କୁ ଧରାଯାଏ ନିନ୍ଦାସୂଚକ ଅଭିବ୍ୟକ୍ତି । ସ୍ୱଭାବ କିନ୍ତୁ ବସ୍ତୁ ନୁହେଁ; ଆକାରଗତ ଉପସର୍ଗ; ମୂଳଗତ ପରିଚୟରେ ଯା ଅସ୍ଥି କି ମେଦ (ବସ୍ତୁବିଶେଷ) । ସ୍ୱଭାବ/ପ୍ରକୃତି ନିଜେ କିଛିହେଲେ ଆହରଣ କରିପାରେନା, କାହିଁକିନା, ବସ୍ତୁ ଯେତେବେଳେ ନିହିତ ସ୍ୱଭାବକୁ ଉପଲବ୍ଧିକରେ, ନିଜ ଠାରୁ ହୋଇଯାଏ ବେଜାଏ ଅଧିକ । ଏ ଦୃଷ୍ଟିଭଙ୍ଗୀ ସ୍ପଷ୍ଟତଃ ଆସିଚି ଜୀବବିଦ୍ୟାରୁ, ଯେପରି, କ୍ଷୁଦ୍ରତମ ବୀଜଭିତରେ ନିହିତ ଅଛି ମହୀରୁହ । ଅର୍ଥାତ୍‌ ମଞ୍ଜିର ସୁପ୍ତ ସ୍ୱଭାବ ବନସ୍ପତି ।

ସ୍ୱଭାବ (=ନେଚର୍‌/ପ୍ରକୃତି) ଯୋଉ ବସ୍ତୁଶ୍ରେଣୀର ହେତୁ ବା କାରଣ,ସେ ଶ୍ରେଣୀ ନିରୁଦ୍ଦେଶ ନୁହେଁ; କୋଉନାକୋଉ ଲକ୍ଷ୍ୟ ଆଡ଼କୁ ସ୍ୱଭାବ ତାକୁ ଚାଳିତକରେ । ଆରିଷ୍ଟୋଟ୍‌ଲ ସେଥିପାଇଁ ନିଷ୍ପତ୍ତିକରିଚନ୍ତି ଯେ କୋଉନାକୋଉ ପ୍ରୟୋଜନକୁ ତୁଷ୍ଟକରିବା ସ୍ୱଭାବର ଲକ୍ଷ୍ୟ । ଜୀବପିଣ୍ଡର ପ୍ରକଟ ଉଦ୍ଦେଶ୍ୟ ବା ଆତ୍ମସଚେତନ ଲକ୍ଷ୍ୟ । ସେଥିପାଇଁ,

ଅବାନ୍ତର । ଯେପରି, ପ୍ରାଣୀଜଗତରେ ଯୋଗ୍ୟତମର ଉଦ୍‌ବର୍ତନ; ଡାର୍‌ଉଇନ୍‌ଙ୍କ ସର୍‌ଭାଇଭାଲ୍ ଅଫ୍ ଦ୍ୟ ଫିଟେଷ୍ଟ୍ । ମାତ୍ର, ଆରିଷ୍ଟୋଟ୍ଲ ସେ ଅର୍ଥରେ ପ୍ରୟୋଗକରିନାହାନ୍ତି 'ଯୋଗ୍ୟତା'; କରିଚନ୍ତି, ଏମ୍ପିଦୋକ୍ଲସ୍ ଯୋଉ ଅର୍ଥରେ ବୁଝିଚନ୍ତି 'ଯୋଗ୍ୟତା', ସେଇ ଅର୍ଥରେ ଯିଏ ଯୋଗ୍ୟତମ । ଆରିଷ୍ଟୋଟ୍ଲ 'ଯୋଗ୍ୟତମ' ପ୍ରତ୍ୟୟକୁ ପ୍ରତ୍ୟାଖ୍ୟାନ କରିଚନ୍ତି, କାହିଁକିନା, ପ୍ରାକୃତିକ ଜଗତରେ ଯା ଘଟେ, ତା ପୂର୍ବନିର୍ଦ୍ଧାରିତ ଓ ଅମୋଘ । ଘଟଣାର ଅନୁକ୍ରମ ଥିଲେସୁଦ୍ଧା, ବୃତ୍ତକୁ ସମ୍ପୂର୍ଣ୍ଣତା ଦେବା ସକାଶେ ପ୍ରତ୍ୟେକ ପୂର୍ବବର୍ତ୍ତୀ ଅବସ୍ଥା ଆଗ-ପଛ ବିନ୍ୟାସରେ ସଜ୍ଜିତ ଗୋଟିଏ ଗୋଟିଏ ସୋପାନ । ତେଣୁ ସେଇ ଜିନିଷ 'ପ୍ରାକୃତିକ'ଯା by continuous movement originate from an internal principle, to arrive at some completion, 199ᵇ।

'ନେଚର୍' ବିଷୟକ ଏ ପ୍ରତ୍ୟୟ ଅବଶ୍ୟ ଉଦ୍‌ଭିଦ ଓ ପଶୁପକ୍ଷୀଙ୍କ ଅନଭିପ୍ରେତ ଅଙ୍ଗବୃଦ୍ଧି ପ୍ରତି ପ୍ରଯୋଜ୍ୟ, କିନ୍ତୁ ବିଜ୍ଞାନର କ୍ରମବିକାଶ ପକ୍ଷରେ ବିରାଟ ଅନ୍ତରାୟ । ଏପରିକି, ନୀତିସୂତ୍ରରେ ଏକ୍ଷଣି ଯା ଅଗ୍ରାହ୍ୟ, ତା ମଧ୍ୟ ଉଠିଆସିଚି ନେଚର୍-ସମ୍ପର୍କିତ ଏଇ ଧ୍ୟାନଧାରଣାରୁ । କାହିଁକିନା, ମୋସନ୍ ବା ଗତିଶୀଳତା, ଏ ଦୃଷ୍ଟିରେ, ସୁପ୍ତ ସମ୍ଭାବନାକୁ ରୂପାୟିତ କରିବା ଉପାୟ ମାତ୍ର । ଅର୍ଥାତ୍, ପ୍ରାକୃତିକ ଜଗତରେ ଯା ଭ୍ରୁଣ ରୂପରେ ନିହିତ ଅଛି । ନିର୍ଦ୍ଧାରିତ ପରିଣତିରେ ଉପଗତହେବାକୁ ଭ୍ରୁଣ ଯୋଉ ଉପାୟ ଅବଲମ୍ବନକରେ, ତାହାହିଁ ଅସଲ ଗତିଶୀଳତା । ଆଧୁନିକ ପଦାର୍ଥବିଦ୍ୟା ଏ ମତବାଦ ଭିତରେ ଖୋଜିପାଇବ ଅସଂଖ୍ୟ ଛିଦ୍ର । କିନ୍ତୁ ଆରିଷ୍ଟୋଟ୍ଲଙ୍କ ଆଥେନ୍ସରେ ମଧ୍ୟ ଲୋକୋମୋସନ୍ (ସ୍ଥାନରୁ ସ୍ଥାନାନ୍ତର ଭ୍ରାମ୍ୟମାଣ ବ୍ୟକ୍ତି, ବାହନ ବା ପରିବହନ) ଅଜ୍ଞାତ ନ ଥିଲା । ସେଭଳି ଗତିଶୀଳତା ସମ୍ବନ୍ଧ-ସାପେକ୍ଷ, ଚୂଡ଼ାନ୍ତ ନୁହେଁ; କିନ୍ତୁ କ ଯଦି ଖ ଆଡ଼କୁ ଗତିକରେ, ଆଉ ଖ ମଧ୍ୟ ଏକାବେଳକେ କ ଆଡ଼କୁ, କହିହେବନାହିଁ, ଦି'ଜଣଙ୍କ ଭିତରୁ ଜଣେ ଗତିଶୀଳ ଆଉ ଆରଜଣକ ଜଡ଼ବତ୍ ସ୍ଥିର । କିନ୍ତୁ କୁକୁର ଯଦି ହାଡ଼ଧରିବାକୁ ଦୌଡ଼ିଯାଏ, ମନେହେବା ସ୍ୱାଭାବିକ, କୁକୁର ଗତିଶୀଳ ଆଉ ହାଡ଼ର ଗତି ନାହିଁ । ଏବଂ କୁକୁରର ଗତିଶୀଳତା ମୂଳରେ କର୍ମରତ ଯେହେତୁ ଉଦ୍ଦେଶ୍ୟ, ଗତିଶୀଳତା ବସ୍ତୁତଃ କୁକୁରର ନିହିତ 'ସ୍ୱଭାବ'ର ପରିଣାମ । ଜଡ଼ ବା ନିର୍ଜୀବବସ୍ତୁ କ୍ଷେତ୍ରରେ କିନ୍ତୁ ଏ ତତ୍ତ୍ୱ କାଟୁ କରିକରିବନାହିଁ । ଯଥାର୍ଥ ଫିଜିକ୍ସ ତେଣୁ କୋଉହେଲେ ଚୂଡ଼ାନ୍ତ ପରିଣାମବାଦକୁ ଗ୍ରାହ୍ୟକରିବନାହିଁ । ତା ଛଡ଼ା, ଗତି ମାତ୍ରକେ, ବିଜ୍ଞାନ ଦୃଷ୍ଟିରେ, ଆପେକ୍ଷିକ ।

ପୁଣି, ଲେଉକିପସ୍ ଓ ଡେମୋକ୍ରିତସ୍ ଶୂନ୍ୟଗର୍ଭ ଯୋଉ ଅବସ୍ଥା କଳ୍ପନାକରିଥିଲେ ବିଶ୍ୱପ୍ରକୃତିର, ଆରିଷ୍ଟୋଟ୍ଲ ଖାରିଜ୍ କରିଦେଇଚନ୍ତି ସେ ଧାରଣା । 'ଭୟଡ୍'କୁ ବର୍ଜନକଲା

ଉତାରୁ 'କାଳ' ବିଷୟରେ ଅବତାରଣା କରିଚନ୍ତି କୌତୂହଳୋଦ୍ଦୀପକ ସମୀକ୍ଷା; ଯେପରି, ଧରିନିଆଯାଇପାରେ ଯେ 'କାଳ'ର ଅସ୍ତିତ୍ୱ କାଳ୍ପନିକ, କାହିଁକିନା, ଗଢ଼ଣ ଭିତରେ ରହିଚି ଅତୀତ ଓ ଭବିଷ୍ୟଦ୍ । ଅତୀତ ଯେମିତି ଉପସ୍ଥିତ ନୁହେଁ, ଭବିଷ୍ୟଦ୍ ସେମିତି ଅନାଗତ । ଏ ଦୃଷ୍ଟିକୋଣ କିନ୍ତୁ ସ୍ଥାୟୀ ହୋଇନାହିଁ; ଫେର୍ କହିଚନ୍ତି, 'କାଳ' ହେଉଚି ଏପରି ଏକ ଗତି ଯାହାକୁ ସଂଖ୍ୟାବଦ୍ଧ କରିବା ସମ୍ଭବପର । ମାତ୍ର ଗଣନା କାହିଁକି ଅପରିହାର୍ଯ୍ୟ, ଫିଟାଇନାହାନ୍ତି; ବରଂ ପ୍ରଶ୍ନକରିଚନ୍ତି, ଆତ୍ମାର ଅନୁପସ୍ଥିତିରେ 'କାଳ'ର ଅସ୍ତିତ୍ୱ ଅଚିନ୍ତନୀୟ ନୁହେଁ କି ? ଗଣିବାକୁ ଯଦି କେହି ଉପସ୍ଥିତ ନ ଥାଏ, ଗଣନାଯୋଗ୍ୟ କୌଣସି ଅସ୍ତିତ୍ୱ ମଧ ଥାଇପାରେନା; ଅଥଚ କାଳ ଏକ ସଂଖ୍ୟାବାଚକ ଅସ୍ତିତ୍ୱ । କାଳ, ସେଥିପାଇଁ, ବର୍ଷ-ମାସ-ଦିନ-ଦଣ୍ଡ । କିଛି କିଛି ଜିନିଷ ଅବଶ୍ୟ ଚିରସ୍ଥାୟୀ; ନିତ୍ୟ-ଶାଶ୍ୱତ, ବର୍ଷ-ମାସ-ଦିନ-ଦଣ୍ଡର ଶାସନରୁ ସ୍ୱାଧୀନ । ହୁଏତ ସ୍ୱୟଂ ସଂଖ୍ୟା ।

ମୋସନ୍ ବା ଗତିଶୀଳତା ବିଦ୍ୟମାନ ସର୍ବତ୍ର, ତାର ବିରାମ ନାହିଁ, ସୃଷ୍ଟି ଥିବାଯାଏଁ ରହିଥିବ; କାହିଁକିନା, ଗତିଶୀଳତା ବିନା କାଳ (ଟାଇମ୍) ଧାରଣା ଅବାସ୍ତବ ଏବଂ ପ୍ଲାଟୋଙ୍କୁ ଛାଡ଼ି ଦୁନିଆଯାକ ଭାବୁକ ଏକମତ ଯେ କାଳ (=ମହାକାଳ)ର ଆଦି ନାହିଁ କି ଅନ୍ତ ନାହିଁ; ଅର୍ଥାତ୍, ଅ-ସୃଷ୍ଟ । ଆରିସ୍ତୋଟଲ୍‌ଙ୍କ ଖ୍ରୀଷ୍ଟାନ୍ ଶିଷ୍ୟ କିନ୍ତୁ ମାନିପାରିନାହାନ୍ତି, ବାଇବ୍ଲ ତେଣୁ କହୁଚି ଜଗତ୍ ଖାଲି ସୃଷ୍ଟ ନୁହେଁ, ଅଛି ଆଦି-ଅନ୍ତ । କିନ୍ତୁ କାଳ ଯଦି ଅ-ଜାତ ଓ ଅନସ୍ତିତ୍ୱ, ଅନୁକ୍ଷଣ ଚଳମାନ ସଂସାରକୁ ଚଳାଉଚି କିଏ ? ଆରିସ୍ତୋଟଲ୍‌ଙ୍କ *ଫିଜିକ୍ସ* ତେଣୁ ଉଦ୍‌ଭାବନ କରିଚି ଏକ ଓ ଅଦ୍ୱିତୀୟ ଗତିହୀନ ଚାଳକ, unmoved mover । ଆଗରୁ ତାଙ୍କ ସାକ୍ଷାତ୍ ମିଳିସାରିଚି *ମେଟାଫିଜିକ୍ସ*ରେ । ତାଙ୍କରି ପ୍ରତ୍ୟକ୍ଷ ହସ୍ତକ୍ଷେପ ଘଟାଇଦେଉଚି ବିବାକ ବୃତ୍ତାକାର ଗତିପ୍ରବାହ । ବୃତ୍ତାକାର ଗତିଶୀଳତାହିଁ ଆଦ୍ୟଗତି ଏବଂ ଯେହେତୁ ତା ଏକମାତ୍ର ଗତି, ଖାଲି ମୋସନ୍ ନୁହେଁ, ଏକାବେଳକେ ଅନ୍ତହୀନ । ନିର୍ବିକଳ୍ପ ଏଇ ଆଦ୍ୟଶକ୍ତିର ଅବୟବ ନାହିଁ କି ବିସ୍ତାର ନାହିଁ, ଅବସ୍ଥିତି କିନ୍ତୁ ସମଗ୍ର ଜଗତର ପରିଧି । ଏଇ ସିଦ୍ଧାନ୍ତରେ ପହଞ୍ଚିବା ଉତାରୁ, ମର୍ତ୍ତ୍ୟଲୋକରୁ ଫିଜିକ୍ସକୁ ଉଠାଇନେଇଚନ୍ତି ସ୍ୱର୍ଗଲୋକକୁ ଏବଂ ଲେଖିଚନ୍ତି ଅଲଗା ଏକ ସଂଦର୍ଭ : *On the Heavens* । ତତ୍ତ୍ୱଟା ସରଳ, କିନ୍ତୁ ଆମୋଦଦାୟକ । ଯେପରି, ଚନ୍ଦ୍ରମଣ୍ଡଳ ତଳକୁ ରହିଚି ଯେତେ ଯାହା, ଯେହେତୁ ସବୁଗୁଡ଼ାକ ଉତ୍ପନ୍ନ ହୋଇଚନ୍ତି, ଜରା ଓ କ୍ଷୟର ଅଧୀନ । ମାତ୍ର ଚନ୍ଦ୍ରମଣ୍ଡଳ ଉପରକୁ ବିଦ୍ୟମାନ ଯୋଉ ବସ୍ତୁଜଗତ୍, ତାର ଉତ୍ପତ୍ତି ନାହିଁ କି ବିଲୟ ନାହିଁ । ବିଶ୍ୱସଂସାର କେନ୍ଦ୍ରରେ ରହିଚି ତେଣୁ ପୃଥିବୀ, ଏବଂ ପୃଥିବୀ ଏକ ଗୋଲକ । ଅଥଚ ଚନ୍ଦ୍ରମଣ୍ଡଳ ନିମ୍ନସ୍ଥ ସମସ୍ତ ପଦାର୍ଥ ଚତୁର୍ଭୁଜର ସମାହାର ଏବଂ ଭୂତଚତୁଷ୍ଟୟ କେବଳ କ୍ଷିତି ଅପ୍ ମରୁତ୍ ଓ ଅଗ୍ନି; ମାତ୍ର

ପଞ୍ଚମ ଯୋଉ ଭୂତ ଇନ୍ଦ୍ରିୟଗ୍ରାହ୍ୟ ନୁହେଁ, ତାହାରି ଦ୍ୱାରା ତିଆରିହୋଇଚି ଗ୍ରହ ନକ୍ଷତ୍ର । ପାର୍ଥିବ ଭୂତଚତୁଷ୍ଟୟର ସ୍ୱାଭାବିକ ଗତି କିନ୍ତୁ ସମକୋଣୀ ଚତୁର୍ଭୁଜର ରେଖା ଭଳି ଆୟତକ୍ଷେତ୍ରାକାର; ପଞ୍ଚମ ଉପାଦାନର ଗତି କିନ୍ତୁ ବୃତ୍ତାକାର । ଅନ୍ତରୀକ୍ଷ କିନ୍ତୁ ମଣ୍ଡଳାକୃତି, ଏବଂ ତାର ଉପରିସ୍ଥ ଅଂଶ ତଳଦେଶ ଅପେକ୍ଷା ଅଧିକ ପବିତ୍ର । ଗ୍ରହନକ୍ଷତ୍ରରେ ଅଗ୍ନି ପୁଣି ଅନୁପସ୍ଥିତ, କାହିଁକିନା, ଅନ୍ତରୀକ୍ଷର ଗଠନକାରୀ ମୌଳିକ ଉପାଦାନ ଇନ୍ଦ୍ରିୟାତୀତ ପଞ୍ଚମ ଭୂତ । ଗ୍ରହନକ୍ଷତ୍ରର ନିଜସ୍ୱ ଗତି ମଧ୍ୟ ନାହିଁ; ଯୋଉ ମଣ୍ଡଳଗୁଡ଼ିକ ସହିତ ବନ୍ଧାହୋଇଚନ୍ତି, ସେଇ ମଣ୍ଡଳର ଗତି କରୁଚି ସେମାନଙ୍କୁ ଗତିଶୀଳ । ବୋଲିବା ବାହୁଲ୍ୟ, ଏ ବିବରଣର ପଦ୍ୟ-ପ୍ରତିରୂପ ଅଧିକାରକରିଚି ଦାନ୍ତେ-ଙ୍କ *ପାରାଡାଇସୋ*ରେ ବିଶିଷ୍ଟ ସ୍ଥାନ । ହିନ୍ଦୁ ଧର୍ମାନୁଷ୍ଠାନରେ ମଧ୍ୟ ହୋମକୁଣ୍ଡର ପୂର୍ବଦିଗକୁ ରଚନାକରାଯାଏ ଗାୟତ୍ରୀ, ସାବିତ୍ରୀ ଓ ନବଗ୍ରହ ମଣ୍ଡଳ ।

ପାର୍ଥିବ ଭୂତଚତୁଷ୍ଟୟ ନଶ୍ୱର, କାହିଁକିନା, ସେଗୁଡ଼ିକର ଉତ୍ପତ୍ତି ପାରସ୍ପରିକ ସଙ୍ଗମରୁ; ଏବଂ ସେଥିପାଇଁ, ଅଗ୍ନି ଏକେବାରେ ଉଣ୍ଶ୍ୱାସ; ତାର ସ୍ୱାଭାବିକ ମୋସବ୍ ଊର୍ଦ୍ଧ୍ୱଗତି; କ୍ଷିତି ବେଜାଏ ଭାରି; କିନ୍ତୁ ମରୁତ୍ ଅପେକ୍ଷାକୃତ ଉଣ୍ଶ୍ୱାସ, ଯେପରି ଅପ୍ ଅପେକ୍ଷାକୃତ ଭାରି । ଏ ତତ୍ତ୍ୱ ପରବର୍ତ୍ତୀ କାଳରେ ଜନ୍ମକରିଚି ନାନାଦି ଉପଦ୍ରବ : ଧୂମକେତୁ ଯେହେତୁ ନଶ୍ୱର, ଆରିଷ୍ଟୋଟ୍ଲଙ୍କ ତତ୍ତ୍ୱରେ ସ୍ଥାନପାଇଚି ଚନ୍ଦ୍ରମଣ୍ଡଳ ନିମ୍ନଦେଶରେ । ଅଥଚ ସପ୍ତଦଶ ଶତକରେ ଦେଖାଗଲା ଧୂମକେତୁ ଯୋଉ କକ୍ଷପଥ ଅବଲମ୍ବନକରେ, ତା ସୂର୍ଯ୍ୟର ଚତୁର୍ପାର୍ଶ୍ୱ, ଏବଂ କ୍ୱଚିତ୍ କଦାଚିତ୍ ଚନ୍ଦ୍ରର ନିକଟବର୍ତ୍ତୀ । ପୁଣି, ପାର୍ଥିବ ଉପାଦାନଗୁଡ଼ିକର ସ୍ୱାଭାବିକ ଗତିକୁ ଆରିଷ୍ଟୋଟ୍ଲ ମନେକରିଚନ୍ତି ଆୟତକ୍ଷେତ୍ରର ରେଖାଭଳି; ବିଜ୍ଞାନୀ ତେଣୁ ଭାବିଚନ୍ତି, ଅଭିକ୍ଷେପଣ-ସାପେକ୍ଷ ବସ୍ତୁକୁ ଆକାଶକୁ ନିକ୍ଷେପକଲେ, ନିକ୍ଷିପ୍ତ ବସ୍ତୁର ଗତି ହେବ କିଛିସମୟପାଇଁ ଆନୁଭୂମିକ, ତହିଁଉତାରୁ ତଳକୁ ଖସିପଡ଼ିବ ଉଲମ୍ବଗତିରେ । ଅଥଚ ଗାଲିଲେଓ ଯେତେବେଳେ ଆବିଷ୍କାରକଲେ ଯେ, ଉତ୍କ୍ଷେପଣକ୍ଷମ ଯେକୌଣସି ଜିନିଷର ଗତି ଧାରଣକରେ ପ୍ୟାରାବୋଲା ବା ଅଧିବୃତ୍ତର ଆକାର, ମର୍ମାହତ ହୋଇଚନ୍ତି ତାଙ୍କ ଆରିଷ୍ଟୋଟ୍ଲୀୟ ସହକର୍ମୀ । ପୁଣି, କୋପର୍ନିକସ୍, କେପ୍ଲର୍ ଓ ଗ୍ୟାଲିଲେଓଙ୍କୁ ରୀତିମତ ଯୁଦ୍ଧକରିବାକୁ ପଡ଼ିଚି ଆରିଷ୍ଟୋଟ୍ଲଙ୍କ ସାଙ୍ଗରେ (=ବାଇବ୍ଲ ସାଙ୍ଗରେ ) ଖାଲି ଏଇ କଥାଟାକୁ ସାବ୍ୟସ୍ତକରିବାକୁ ଯେ ପୃଥିବୀ ବିଶ୍ୱସଂସାରର କେନ୍ଦ୍ର ନୁହେଁ , ବରଂ ଆବର୍ତ୍ତିତ ହେଉଚି ଚକ୍ରାକାରରେ ଦିନକୁ ଥରେ, ଆଉ ସୂର୍ଯ୍ୟ ଚାରିପଟରେ ବର୍ଷକୁ ଥରେ । ସମଗ୍ରଭାବେ ଆରିଷ୍ଟୋଟ୍ଲଙ୍କ ଫିଜିକ୍ସ ତେଣୁ ବିଜ୍ଞାନର କୋଉ ସୂତ୍ର ନୁହେଁ; ବିଜ୍ଞାନର ସୂତ୍ର ବାହାରିଚି ଯେତେବେଳେ, ନିଉଟନ୍ ତାକୁ ନାମିତ କରିଚନ୍ତି 'ଗତିଶୀଳତାର ଆଦ୍ୟ ସୂତ୍ର' । ଅବଶ୍ୟ, ନିଉଟନ୍ଙ୍କ

ବହୁପୂର୍ବରୁ ଗ୍ୟାଲିଲେଓ ଦେଇଯାଇଥିଲେ ସନ୍ଧାନ । ଏ ନିୟମ କହୁଚି, ଯେକୌଣସି ଜଡ଼ପିଣ୍ଡ ଯଦି ଗତିଶୀଳ ଏବଂ ତା ଗତିରେ ଯଦି କେହି ହସ୍ତକ୍ଷେପ ନ କରେ, ଆଗେଇଯିବ ସରଳରେଖାରେ ଏବଂ ବେଗମାତ୍ରା ରହିବ ଅବିଚଳ । ସେଥିପାଇଁ, ବାହ୍ୟ କାରଣ ଗତିର ସ୍ୱଭାବ ବୁଝାଏନା, ବୁଝାଏ କେବଳ ଗତିରେ ପରିବର୍ତ୍ତନ । ପରିବର୍ତ୍ତନର ବେଗମାତ୍ରାରେ ତାରତମ୍ୟ ହୋଇପାରେ, ଅଥବା ହୋଇପାରେ ଗତିର ଅଭିମୁଖର ପରିବର୍ତ୍ତନ । ଚକ୍ରାକାର ଗତି, ଆରିଷ୍ଟୋଟ୍ଲ ଯାହାକୁ ଗ୍ରହନକ୍ଷତ୍ରଙ୍କ ପାଇଁ ଭାବିଚନ୍ତି 'ସ୍ୱାଭାବିକ', ସମ୍ଭବପର ହେବନାହିଁ ଯଦି ବେଳକୁ ବେଳ ଗତିର ଅଭିମୁଖ ଓ ବେଗମାତ୍ରା ବଦଳିନଯାଏ । ଚକ୍ରାକାର ଗତି ପାଇଁ ଦରକାରହୁଏ ଏପରି ଏକ ଶକ୍ତି, ବୃତ୍ତର କେନ୍ଦ୍ର ଆଡ଼କୁ ଯା ଗତିକୁ  କରିବ ଆକର୍ଷଣ । ସେଇ ଶକ୍ତିର ନାମ ମାଧ୍ୟାକର୍ଷଣ (ମଧ୍ୟକୁ ଆକର୍ଷଣ) । ମାଧ୍ୟାକର୍ଷଣ ଅନୁପସ୍ଥିତିରେ ଗତି ହେବ ସରଳରୈଖିକ, ଚକ୍ରାକାର ନୁହେଁ ।

ସେଥିପାଇଁ, ଅନ୍ତରୀକ୍ଷରେ ଅବସ୍ଥିତ ସମସ୍ତ ଜଡ଼ପିଣ୍ଡ ଅଜାତ, ଅଜର, ଅମର ଓ ନିଷ୍କଳୁଷ – ଏ ଧାରଣାକୁ ମଧ୍ୟ ବର୍ଜନ କରିବାକୁ ପଡ଼ିବ, କାହିଁକିନା, ସୂର୍ଯ୍ୟ-ଚନ୍ଦ୍ର-ତାରା ଦୀର୍ଘଜୀବୀ ହେଲେସୁଦ୍ଧା, ପରମାୟୁ ଅନନ୍ତ ନୁହେଁ । ନିହାରିକାରୁ ସେଗୁଡ଼ିକର ଉତ୍ପତ୍ତି ଏବଂ ଶେଷକୁ ବିସ୍ଫୋରଣଘଟାଇ ହୋଇଯିବେ ନିଶ୍ଚିହ୍ନ କିମ୍ବା କ୍ରମାଗତ ଶୀଳତହୋଇ ନିଷ୍କ୍ରିୟ । ଇନ୍ଦ୍ରିୟଗୋଚର ଜଗତରେ ଏପରି କିଛି ନାହିଁ, ଯା ପରିବର୍ତ୍ତନ ଓ କ୍ଷୟକୁ ଅତିକ୍ରମ କରିପାରେ; ଆରିଷ୍ଟୋଟ୍ଲଙ୍କ ବିଶ୍ୱାସ ଥିଲା କିନ୍ତୁ ବିପରୀତ । ସେକାଳର ଗ୍ରୀସ୍ ଥିଲା ପୌତ୍ତଳିକ; ବିଗ୍ରହପୂଜକ ସେଥିପାଇଁ ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ନକ୍ଷତ୍ରକୁ ଭାବିଚନ୍ତି ଅନାଦି-ଅନନ୍ତ-ଅଜର-ଅମର । ଆରିଷ୍ଟୋଟ୍ଲ ସେଇ ଭାବପରିମଣ୍ଡଳକୁ ସ୍ୱୀକାର କରିନେଇଚନ୍ତି ନିର୍ଦ୍ୱିଧାରେ ।

ତେବେ, ଗଣିତ ସହିତ ରହିଚି ଗ୍ରୀକ୍ ଦର୍ଶନଚିନ୍ତାର ଅଙ୍ଗାଙ୍ଗୀ ସମ୍ବନ୍ଧ, ବିଶେଷତଃ ପ୍ଲାଟୋଙ୍କ କ୍ଷେତ୍ରରେ, ଏବଂ ସେଥିପାଇଁ, ଅପରାପର କ୍ଷେତ୍ର ତୁଳନାରେ ଗଣିତ ଓ ଜ୍ୟୋତିର୍ବିଦ୍ୟାକୁ ଗ୍ରୀକ୍‌ମାନଙ୍କ ଅବଦାନ ମଧ୍ୟ ଅତୁଳନୀୟ । ଏ ଦୁଇ ବିଦ୍ୟା ପିଲାଙ୍କଫିକୁ କ୍ରମାଗତ ବାଟଦେଖାଇଚି କିଭଳି, ପୂର୍ଣ୍ଣାଙ୍ଗ ଅଧ୍ୟୟନ ଅଦ୍ୟାବଧି ସମ୍ଭବ ହୋଇନାହିଁ , କାହିଁକିନା, ତିନିଟିଯାକ ବିଷୟରେ ସମାନ ପାରଦର୍ଶିତା ସର୍ବକାଳରେ ବିରଳ ।  ଆଜି ମଧ୍ୟ ବ୍ୟତିକ୍ରମ ଘଟିନାହିଁ । ଗ୍ରୀକ୍‌ମାନେ ସ୍ଥାପତ୍ୟ-ଭାସ୍କର୍ଯ୍ୟ, ସାହିତ୍ୟ ଓ ଦର୍ଶନକୁ ଜଣ ଦେଇଚନ୍ତି, ସେ ବିଚାର ଆପେକ୍ଷିକ ହେବାକୁ ବାଧ୍ୟ, କାହିଁକିନା,  ଇସ୍‌ଥେଟିକ୍ସ ବା କାନ୍ତିବିଦ୍ୟା ଯେହେତୁ ଏକ ଅନିଶ୍ଚିତ ବିଷୟ, ରୁଚି ଓ ବୋଧରେ ତାରତମ୍ୟ ବ୍ୟାପକ ହେବା ଅବଶ୍ୟମ୍ଭାବୀ । କିନ୍ତୁ ଜ୍ୟାମିତିଚର୍ଚ୍ଚାରେ ମେଧାର ଯୋଉ ଶୃଙ୍ଗାରୋହଣ କରିଚନ୍ତି ସେମାନେ, ତାର ଗୁଣଗତ ଉତ୍କର୍ଷ ସର୍ବକାଳପାଇଁ ରହିବ ପ୍ରଶ୍ନାତୀତ । କିଛି ଆଣିଥିଲେ

ଅବଶ୍ୟ ଇଜିପ୍ଟ୍‌ରୁ, ତଦପେକ୍ଷା କମ୍ ବ୍ୟାବିଲନ୍‌ରୁ; ମାତ୍ର ଗଣିତର ସେଇ ଉତ୍ସ ଥିଲା ବଳଦିଆ ହିସାବ; ଜ୍ୟୋତିର୍ବିଦ୍ୟା ମଧ୍ୟ ଥିଲା ନାହିଁ ପର୍ଯ୍ୟବେକ୍ଷଣଲବ୍ଧ ପୁଞ୍ଜିଭୂତ ବୃତ୍ତାନ୍ତରୁ ବେଶି । ଗଣିତ ପ୍ରୟୋଗରେ ସତ୍ୟ ଉଦ୍‌ଘାଟନ, ଯୋଉ ସତ୍ୟକୁ ଯାଞ୍ଚକରି ଭୁଲ୍-ଠିକ୍ ନିରୁପଣ କରିହେବ, ଏକାନ୍ତଭାବେ ତେଣୁ ଗ୍ରୀକ୍‌ମାନଙ୍କ କୃତିତ୍ୱ । ମାତ୍ର ଆରିଷ୍ଟୋଟ୍ଲ ରହିଯାଇଚନ୍ତି ବ୍ୟତିକ୍ରମ ।

ଫିଜିକ୍ସରୁ ମେଟାଫିଜିକ୍ସ-ବ୍ୟାପକ ଓ ବିସ୍ତାରିତ ଏଇ ଉପଲବ୍ଧି, ଆରିଷ୍ଟୋଟ୍ଲଙ୍କ ସାଧନଲବ୍ଧ ଜୀବନଦର୍ଶନ, ପାଶ୍ଚାତ୍ୟ ଗୋଲାର୍ଦ୍ଧର ମନନଜଗତ୍‌କୁ ଆଚ୍ଛାନ୍ନକରି ରଖିଚି ଦୀର୍ଘ ଦେଢ଼ହଜାର ବର୍ଷ; ଏବଂ ମହାମତି ବର୍‌ଟ୍ରାଣ୍ଡ୍ ରସେଲ୍ କହୁଚନ୍ତି, ସେଇ ମେଦିନୀଦୃଷ୍ଟି ଅବରୁଦ୍ଧ କରିଚି ଦର୍ଶନ ଓ ବିଜ୍ଞାନର ଅଗ୍ରଗତି । 'ମେଦିନୀଦୃଷ୍ଟି ', ଜର୍ମନ୍ *Weltanschauung*ର ଓଡ଼ିଆ ପ୍ରତିରୂପ । ଭେଲ୍‌ଟାନ୍‌ସାଉଙ୍ଗ୍ କହିଲେ ବୁଝାଏ ଏପରି କିଛି ମୌଳିକ ପ୍ରତ୍ୟୟ, ମନୋଭଙ୍ଗୀ ଓ ମୂଲ୍ୟବୋଧ, ଯା ଗଠିତକରିପାରେ ଜୀବନ ଓ ଜଗତ୍ ସମ୍ପର୍କରେ ଚିରସ୍ଥାୟୀ ଅବବୋଧ । ଆରିଷ୍ଟୋଟ୍ଲଙ୍କ ମେଦିନୀଦୃଷ୍ଟି ଯେହେତୁ ଧର୍ମଚିନ୍ତା ଭିତରକୁ ଅନୁପ୍ରବେଶ କରିଚି, ଅଧିକାଂଶ ଲୋକଙ୍କ ସ୍ୱର୍ଗ-ମର୍ତ୍ତ୍ୟ ବିବେଚନା ଗଠିତହୋଇଚି ଦୂରକଳ୍ପୀ ଅନୁମାନକୁ ଭିତ୍ତିକରି । ସ୍ୱର୍ଗର ଅବସ୍ଥିତି ଅବଶ୍ୟ ଆକାଶରେ, ଆରିଷ୍ଟୋଟ୍ଲ ଯୋଉଠି ଠାବକରିଚନ୍ତି ଗ୍ରହ–ନକ୍ଷତ୍ର–ସୂର୍ଯ୍ୟ–ଚନ୍ଦ୍ର–ଧୂମକେତୁ ଭଳି ଅଲୌକିକ ଜ୍ୟୋତିପୁଞ୍ଜ, ଏବଂ ସେମାନଙ୍କ ଗତି–ଅଗତି, ଯୋଉ ଗତି–ଅଗତିର ଅଦ୍ୱିତୀୟ କର୍ତ୍ତା ଅନ୍‌ମୁଭ୍‌ଡ୍ ମୁଭର୍, ଅଚଳ ଚାଳକ । ଯେପରି, ଆମ 'ତ୍ରିଗୁଣ ରଜ୍ଜୁ କରେ ଧରି/ମୃଗୀ ନଚାଏ ନରହରି ।' ଷୋଡ଼ଶ ଶତକ ବେଳକୁ ଏ ପ୍ରତ୍ୟୟର ପ୍ରତିବାଦ ମନେହୋଇଚି ଧର୍ମଦ୍ରୋହ; ଏପରିକି, ଗ୍ୟାଲିଲେଓଙ୍କ ଦୂରବୀକ୍ଷଣଯନ୍ତ୍ର ଭିତରକୁ ଅନାଇବାକୁ ସୁଦ୍ଧା ରୋମ୍‌ର ଯାଜକପ୍ରବର ଶଙ୍କିତ ହୋଇଚନ୍ତି, କାଳେ ପାପାତ୍ମାଙ୍କ ଅଧିପତି ଶଇତାନ୍ ଭେଲିକି ଦେଖାଇ ଅବାଟକୁ ନେଇଯିବ ! ସପ୍ତଦଶ ଶତକରେ ଗ୍ୟାଲିଲେଓ ଜ୍ୟୋତିର୍ବିଦ୍ୟାରେ ଯୋଉ ବିପ୍ଳବ ଘଟାଇଦେଲେ, ତା ଫଳରେ ଫିଜିକ୍ସ-ରେ ଘଟିଗଲା ପ୍ୟାରାଡାଇମ୍ ସିଫ୍ଟ୍, ବା ଆଦିକଳ୍ପର ସ୍ଥାନଚ୍ୟୁତି । ଧର୍ମରୁ ବିଜ୍ଞାନ ହୋଇଗଲା ସ୍ୱତନ୍ତ୍ର, କିନ୍ତୁ ବିଶ୍ୱସଂସାରରେ ପ୍ରତିଷ୍ଠିତହେଲା ଇଉନିଟି ବା ଅନ୍ୱୟ; ଆକାଶ ଓ ପୃଥିବୀ ସକାଶେ ଅଭିନ୍ନ ଗତିବିଧିର ଶୃଙ୍ଖଳା । ଗ୍ୟାଲିଲେଓ (୧୫୬୪–୧୬୪୨) ଅବଶ୍ୟ ଚର୍ଚ୍ଚ ହାତରେ କାରାଦଣ୍ଡରେ ଦଣ୍ଡିତହେଲେ ଆମୃତ୍ୟୁ ।

ସପ୍ତଦଶ ଶତକରୁ ବିଶ୍ୱପ୍ରକୃତି ପ୍ରତି ମନୋଭଙ୍ଗୀର ଯୋଉ ପରିବର୍ତ୍ତନ ଘଟିଲା ଇଉରୋପରେ, ଅଦ୍ୟାବଧି ରହିଚି ମୂଳତଃ ଅକ୍ଷୁର୍ଣ୍ଣ, ଏବଂ ସେଇ ନବଲବ୍ଧ ମେଦିନୀଦୃଷ୍ଟିକୁ ନାମିତ କରାଯାଏ, ଗ୍ୟାଲିଲେଓଙ୍କ ନାମାନୁସାରେ । ତାଙ୍କ ସମକାଳୀନ ଭାବୁକ

ଦେକାର୍ତଙ୍କ ଅବଦାନ ମଧ୍ୟ ଅବହେଳାଯୋଗ୍ୟ ନୁହେଁ । ଫଳତଃ, ପଦାର୍ଥବିଦ୍ୟାର ପ୍ରଧାନ ଉପକରଣ ହୋଇଛି ଗଣିତ ଓ ଜ୍ୟାମିତି । ଗ୍ୟାଲିଲେଓ ଲେଖିଛନ୍ତି, Philosophy is written in this grand book, the universe, which stands continually open to our gaze. But the book cannot be understood unless one first learns to comprehend the language and read the letters in which it is composed. It is written in the language of mathematics, and its characters are triangles, circles, and other geometric figures.... । ବାତିଲ୍ ହୋଇଗଲା ତେଣୁ ଆରିଷ୍ଟୋଟ୍‌ଲ୍‌ଙ୍କ ବିଶ୍ୱପ୍ରକୃତି ସମ୍ପର୍କିତ ଉପଲବ୍ଧି ଯେ ପ୍ରକୃତି ସାକ୍ଷାତ୍ ଏକ ଜୀବପିଣ୍ଡ, ଯେପରି ମଞ୍ଜିରୁ ଗଛ; ଅର୍ଥାତ୍, ଆଧିଭୌତିକ ଶକ୍ତି ଦ୍ୱାରା ନିର୍ଦ୍ଧାରିତ ବାଟରେ ନିର୍ଦ୍ଧାରିତ ପରିଣତି ଆଡ଼କୁ ନିରନ୍ତର ଗତି । ତା ଜାଗାରେ ଗ୍ୟାଲିଲେଓ କହିଲେ, ବିଶ୍ୱପ୍ରକୃତିର ଗତି ଯାନ୍ତ୍ରିକ, ସତେ ଯେମିତି କାନ୍ଥରେ ଝୁଲୁଥିବା ଗୋଟାଏ ଘଡ଼ି । ଏ ତତ୍ତ୍ୱ ପର୍ଯ୍ୟବେକ୍ଷଣଲବ୍ଧ, ଅନୁମାନରୁ ଆସିନାହିଁ । ତେଣୁ ଅଭ୍ରାନ୍ତ । କାହିଁକିନା, ସ୍ଥାନ-କାଳ ନିର୍ବିଶେଷରେ ତତ୍ତ୍ୱର ଅବୟବଗୁଡ଼ିକୁ ଯାଞ୍ଚକରି ସତ୍ୟାସତ୍ୟ ନିରୂପଣ ସମ୍ଭବପର । ବିଜ୍ଞାନ, ପ୍ରାଣୀବିଦ୍ୟା ହେଉ କି ପଦାର୍ଥବିଦ୍ୟା, ସ୍ଥାନକାଳ ନିର୍ବିଶେଷରେ ମୂଲ୍ୟବୋଧ-ନିରପେକ୍ଷ । ସେଥିପାଇଁ, ନୀତିନିୟମ ରହିଚି; ସେଇ ନିୟମ ମାନି ଯାବତୀୟ ପାର୍ଥିବ ଜିନିଷ ଆତଯାତ ହେଉଚନ୍ତି ଏବଂ ସେଇ ନିୟମଗୁଡ଼ିକୁ ଆବିଷ୍କାର କରିବା ବିଜ୍ଞାନର କାମ । ଅର୍ଥାତ୍ ଥିୟଲଜି କି ପଲିଟିକ୍ସ ଭଳି ମାନସିକ ପ୍ରବଣତା ଦ୍ୱାରା ନିରୂପିତ ବିଷୟଗୁଡ଼ାକରେ ବିଜ୍ଞାନ ପକ୍ଷଗ୍ରହଣ କରେନା, ଏବଂ କରେନା ବୋଲି, ଉତ୍କର୍ଷ-ଅପକର୍ଷ ବିବେଚନା-ବହିର୍ଭୂତ ଉପସର୍ଗ । ଆରିଷ୍ଟୋଟ୍‌ଲ୍ କିନ୍ତୁ ମୂଲ୍ୟ (=ଭ୍ୟାଲିଉ) ଆରୋପ କରିବାକୁ ଚାହିଁଚନ୍ତି ସ୍ଥାବରଜଙ୍ଗମ ବିବାକ ବିଷୟ ଓ ବସ୍ତୁ ଉପରେ । ଗଣିତର ସାହାଯ୍ୟ ନେଇଥିଲେ ହୁଏତ ଭାବାବେଗ ରହିଥାନ୍ତା ସଂଯତ, ମାତ୍ର ପରମାର୍ଥଚିନ୍ତା ଏମିତି ଘାରିଚି ଯେ ତର ପାଇନାହାନ୍ତି ସଂଶୟ ଆଡ଼କୁ ଚାହିଁବାକୁ, ଯୋଉ ସଂଶୟ ବାଧକରିଚି ରସେଲ୍‌ଙ୍କୁ ଯଥାପ୍ରାପ୍ତ ସମସ୍ତ ତତ୍ତ୍ୱକୁ ବାରମ୍ବାର ଜେରାକରିବାକୁ ।



## ॥ ଛଅ ॥

କାବ୍ୟତତ୍ତ୍ୱ  ବା *ପୋଏଟିକ୍ସ* ଅବଶ୍ୟ ଦର୍ଶନ ନୁହେଁ;  କିନ୍ତୁ ରାଜନୀତି କିମ୍ବା ନୀତିସୂତ୍ର ବୟାନକରିବାକୁ ଯୋଉ ପଦ୍ଧତି ବାଛିଚନ୍ତି ଆରିଷ୍ଟୋଟ୍ଲ , ଦୃଶ୍ୟକାବ୍ୟ (ଟ୍ର୍ୟାଜିଡି) କିମ୍ବା ବୀରଗାଥା (ଏପିକ୍) ବ୍ୟାଖ୍ୟାକଲାବେଳେ ସେଥିରୁ ବିରତ ହୋଇନାହାନ୍ତି ତିଳେମାତ୍ର, କାହିଁକିନା, As in other sciences, so in politics compounds should always be resolved into the simple elements or smallest parts of the whole..... And if you consider things in their first growth and origin, whether they are States or anything else, you will get the clearest view of them.

ବିଭିନ୍ନ ଜଟିଳ  ଉପାଦାନ ସମ୍ବଳିତ ଯୌଗିକ ସତ୍ତାକୁ ବିଶ୍ଳେଷିତକରି  ଅଂଶଗୁଡ଼ିକୁ ଚିହ୍ନଟକରିବାକୁ ପଡ଼ିବ, ଏବଂ ସେଭଳି କରିବାକୁ ହେଲେ, ଆଗେ ଦେଖିବାକୁ ପଡ଼ିବ ଉତ୍ପତ୍ତିର  କାରଣ ଓ ଅଭିବୃଦ୍ଧିର ପର୍ଯ୍ୟାୟକ୍ରମ । ଏଇ ପଦ୍ଧତି ପ୍ରୟୋଗରେ, ତରୁଲତା କି ପଶୁପକ୍ଷୀଙ୍କ ବିଷୟରେ ଅନୁସନ୍ଧାନ ସକାଶେ ଯୋଉ ବୈଜ୍ଞାନିକ ପ୍ରଣାଳୀ ଅନୁସୃତହୁଏ, ରାଷ୍ଟ୍ର କି ସାହିତ୍ୟର ମର୍ମ ଉଦ୍‌ଘାଟନ ସକାଶେ, ଆରିଷ୍ଟୋଟ୍ଲଙ୍କ ବିଚାରରେ, ସେଇ ପ୍ରଣାଳୀ ପାଇବ ସମାନ ଗୁରୁତ୍ୱ;  ସତେ ଯେମିତି ରାଷ୍ଟ୍ର କି ସାହିତ୍ୟ ପ୍ରାକୃତିକ ସତ୍ତାବିଶେଷ । ଫଳତଃ, ସଂଜ୍ଞାନିରୂପଣ କରିବାକୁ  ଯାଇ ହାବୁଡ଼ିଚନ୍ତି ଅଲଂଘ୍ୟ  ଅନ୍ତରାୟ, କାହିଁକିନା, ସାହିତ୍ୟକୁ ପ୍ରକୃତିଜାତ ଭାବିବା ଭ୍ରାନ୍ତ ଅନୁମାନ ମାତ୍ର । ଧର୍ମଯାଜକ ଅନୁଜ୍ଞା ଜାରିକରିବା ଭଳି, ନାଟକ କି କବିତାର ଦୋଷଗୁଣ ବିଚାର କଳ୍ପନାର ଅନୁଦାରତା ନୁହେଁ ନିଶ୍ଚୟ; ଆଲୋଚ୍ୟ ବିଷୟ ପ୍ରତି ଯୋଉ ଅନୁସନ୍ଧାନପ୍ରଣାଳୀ ପ୍ରଯୋଜ୍ୟ, ସେଥିରୁ ସଚେତନ ଆତ୍ମପ୍ରତ୍ୟାହାର ନିଶ୍ଚୟ ।

ଏପିକ୍ ରଚିତହୋଇଚି ଯେହେତୁ ପ୍ରାଚୀନ କାଳରେ, ଓଡ଼ିଆରେ କହୁନ୍ତୁ 'ପୁରାଣ' (=ପୁରାତନ); ମାତ୍ର ସାହିତ୍ୟ ରଚନାର ସେଇ ଫର୍ମ୍, ଆଧୁନିକ ବ୍ୟଞ୍ଜନାରେ 'କବିତା' ନୁହେଁ ; ପ୍ରଧାନ ଉପଜୀବ୍ୟ ଯେହେତୁ  ଆଖ୍ୟାନର ବର୍ଣ୍ଣନା, ନ୍ୟାରେଟିଭ୍ ହୋଇପାରେ

କେବଳ 'କାବ୍ୟ' । ଆଖ୍ୟାନ ଅବଶ୍ୟ ସାଧାରଣତଃ ବୀରଗାଥା । ଦୁଃସାହସିକ ଅଭିଯାତ୍ରା ଓ ଯୁଦ୍ଧବିଗ୍ରହ ବୃତ୍ତାନ୍ତ । ବାସ୍ତବ ଜୀବନଯାତ୍ରାରେ ଯୋଉ ନାରୀପୁରୁଷଙ୍କୁ ଦେଖୁଁ, ତାଙ୍କଠୁଁ ବୃହତ୍ ଓ ବିଚିତ୍ରକର୍ମା ଚରିତ୍ର । ଏପରି କାଣ୍ଡକାରସାଦି ଘଟାନ୍ତି, ମନେହେବ, ମର୍ମାର୍ଥ ପ୍ରଗାଢ଼ ଓ ବହୁମୁଖୀ । ବିପୁଳାୟତନ ଏଇ ପଦ୍ୟ, ଲିଖିତ କଳେବର ଧାରଣକରିବା ପୂର୍ବରୁ, ରୂପକଥା କିମ୍ବା ରହସ୍ୟକଥା ଆକାରରେ ମୁହଁରୁ ମୁହଁ ପର୍ଯ୍ୟଟନ କରିଚି ଜନପଦରୁ ଜନପଦ । ଇଂରେଜୀରେ କହୁଚନ୍ତି, 'ଓରାଲ୍ ଟ୍ର୍ୟାଡିସନ୍' । ସେଥିରେ ଦୈତ୍ୟଦାନବ ଦେବତାମାନବ ରାକ୍ଷସପିଶାଚ, ସ୍ଥାନକାଳ ନିର୍ବିଶେଷରେ, ପରସ୍ପର ସହଚର କିମ୍ବା ପ୍ରତିଦ୍ୱନ୍ଦୀ । ଏଭଳି ପୁରାଣ ଭିତରେ ସବୁଠୁଁ ପୁରୁଣା ସୁମେର୍‌ର *ଗିଲ୍‌ଗାମେସ୍* (ଖ୍ରୀଷ୍ଟପୂର୍ବ ୩୦୦୦), ତା ପଛକୁ ହୋମର୍‌ଙ୍କ *ଇଲିଆଡ୍* ଓ *ଓଡିସି* (ଖ୍ରୀଷ୍ଟପୂର୍ବ ୧୦୦୦) ଏବଂ ସର୍ବକନିଷ୍ଠ ଆମ *ମହାଭାରତ* (ଖ୍ରୀଷ୍ଟପୂର୍ବ ୫୦୦) ।

ସେହିପରି ଟ୍ର୍ୟାଜିଡି । ଗ୍ରୀକ୍ ଭାଷାରେ *tragodia* । ଆରିଷ୍ଟୋଟ୍‌ଲ୍‌ଙ୍କ ଜୀବଦ୍ଦଶାରେ ଲେଖାଯାଇଚି ପଦ୍ୟରେ, ଏବଂ ଲେଖାଯାଇଚି ମଞ୍ଚାଭିନୟ ସକାଶେ, ତେଣୁ ଦୃଶ୍ୟକାବ୍ୟ । ମାତ୍ର ତାର ଉପଜୀବ୍ୟ ସାଧାରଣତଃ ଦୁର୍ଦ୍ଦଶା ଓ ବିପର୍ଯ୍ୟୟ । ନାଟକର ନାୟକ, ସଙ୍ଗତ କୋଉ କାରଣ ନଥାଇସୁଦ୍ଧା, ଭୋଗକରେ ଦୁଃସହ ପରିଣାମ, ତାର ଅନୁରଣନ କମ୍ପମାନକରେ ସାରା ସମାଜକୁ (ଆଥେନ୍ସର ଲୋକସଂଖ୍ୟା ଥିଲା କଟକର ଲୋକସଂଖ୍ୟା ଠାରୁ କମ୍) । ନାୟକ ସଚରାଚର ରଜା କି ରଜାସ୍ଥାନୀୟ ବିରାଟ କେହି (ଏକ୍ଷଣି ଦୁର୍ଭିକ୍ଷରେ ମରୁଥିବା ଭିଖାରି ମଧ ହୋଇପାରେ ନାୟକ) । ବିୟୋଗାନ୍ତ ଏଇ ନାଟକର ମୂଳ ଉଦ୍ଦେଶ୍ୟ (ସ୍ମରଣକରାଇଦିଏ ଧର୍ମୀୟ ଆଚାର-ଅନୁଷ୍ଠାନରୁ ଉତ୍ପତ୍ତି), ଆରିଷ୍ଟୋଟ୍‌ଲ୍‌ଙ୍କ ଭାଷାରେ, awakening of pity and fear । ଆଜିକାଲିକା ବ୍ୟାଖ୍ୟାରେ, ଆତଙ୍କ ଓ ବିସ୍ମୟ । ଅସ୍ତିତ୍ୱର ଅନ୍ତର୍ଗୂଢ଼ ଅବତଳରେ କି ଅସୀମ ସମ୍ଭାବନା ଲୁଚିରହିଚି, ଯା ବଳରେ ମଣିଷ ଦୁର୍ଭାଗ୍ୟକୁ ଉପହାସ କରିପାରେ ସଦର୍ପ – ସେଇ ଉପଲବ୍ଧିରୁ ନିର୍ଗତ ଆତଙ୍କ ଓ ବିସ୍ମୟ ।

କିନ୍ତୁ, ଏପିକ୍ ହେଉ କି ଟ୍ର୍ୟାଜିଡି, ଆରିଷ୍ଟୋଟ୍‌ଲ୍‌ଙ୍କ ବିବେଚନାରେ, ବିବାକ ବାଣୀଶିଳ୍ପ (=ରେଟରିକ୍ସ)ର ସଂପ୍ରସାରଣ ମାତ୍ର । ଲେଖକ ସେଠି କଥକ ମାତ୍ର । କି ବାଗରେ କଥାକହିବ, ବତାଇଦେଇଚନ୍ତି ଫିଲଜଫର୍, କାହିଁକିନା, ....everyone tries to discuss propositions and to maintain them, to defend themselves and to attack others. Laymen do this at random or from practice and acquired habit. Since both these ways are possible, the subject can plainly be handled in a

systematic way for we can ask why some speakers succeed through practising and others spontaneously; and everyone will at once agree that such an enquiry is the function of an art.

ଏ ଆର୍ଟ ସ୍ପଷ୍ଟତଃ ବାକ୍‌ଚାତୁରୀ,ଯା ଉପରେ ସୋଫିଷ୍ଟ କହିସାରିଚନ୍ତି ନାନାଦି ତତ୍ତ୍ୱକଥା; ମାତ୍ର ଆରିଷ୍ଟୋଟ୍ଲ ଦେଖିଚନ୍ତି, ମଞ୍ଜା କଥାଟା ଏଡ଼ାଇଯାଇଚି ସମସ୍ତଙ୍କ ନଜର, ଯେପରି,

The modes of persuasion are the only true constituents of the art : everything else is accessory. But these writers say nothing about enthymemes, which are the *substance* of rhetorical persuasion, but deal largely with non-*essentials*. The arousing of prejudice, pity, anger, and similar emotions has nothing to do with the essential facts... (ଅକ୍ଷରର ବକ୍ରାକୃତି ମଦ୍‌କୃତ)

ଅର୍ଥାତ୍, ଆରିଷ୍ଟୋଟ୍ଲ ଏପରି ଏକ ରେଟରିକ୍ କଥା କହୁଚନ୍ତି ଯା ନିର୍ମଳ ଫିଲଜଫି; ଅଥଚ ବାକ୍‌ଚାତୁର୍ଯ୍ୟର ଏକମାତ୍ର ବ୍ୟାବହାରିକ ଲକ୍ଷ୍ୟ ଲୋକରଞ୍ଜନ । ଶିଳ୍ପକଳାର ରୂପ ପରିଗ୍ରହକରିବାକୁ ହେଲେ, ରେଟରିକ୍‌କୁ ତେଣୁ ହେବାକୁ ପଡ଼ିବ ଏକାନ୍ତ ଅନାଡ଼ମ୍ବର ଏବଂ ସେଇ ସଂଯମକୁ ବାସ୍ତବାୟିତ କରିବା ସକାଶେ 'ମୋଡ୍‌ସ୍ ଅବ୍ ପର୍‌ସୁଏସନ୍'ର ଅବତାରଣା । କାହିଁକିନା, 'ମୋଡ୍‌ସ୍ ଅବ୍ ପରସୁଏସନ୍' ପ୍ରକୃତରେ ତର୍କ-ଚାଳନାର ପ୍ରକାରଭେଦ – ଏନ୍‌ଥାଇମିମିସ୍ ସେଥିପାଇଁ ରେଟରିକ୍‌ର ସାରବସ୍ତୁ ବା ସବ୍‌ସ୍ଟାନ୍‌ସ୍ । ଏନ୍‌ଥାଇମିମିସ୍ ଏକପ୍ରକାର ସିଲ୍ୟଜିଜ୍ମ, ସାଧ ଆଶ୍ରୟବାକ୍ୟ, ଯା ଅନୁଲ୍ଲିଖିତ ହୋଇସୁଦ୍ଧା ପ୍ରମାଣ ... The orator's proofs are enthymemes, and enthymeme is a sort of deduction... there are three kinds. The first depends on the personal character of the speaker; the second on putting the audience into a certain frame of mind; the third on the proof, or apparent proof, provided by the words of the speech itself ।

କିନ୍ତୁ, କଥକର ବ୍ୟକ୍ତିଗତ ସ୍ୱଭାବଚରିତ୍ର କି କାରଣରୁ ବକ୍ତବ୍ୟକୁ କରେ ଗ୍ରହଣଯୋଗ୍ୟ, ବୁଝିବା ମୁସ୍କିଲ୍; କାହିଁକିନା, ପାଠକ/ଦର୍ଶକ, ଲେଖକ/କଥକକୁ ଚିହ୍ନିଥିବା ସ୍ୱାଭାବିକ ବା ପ୍ରତ୍ୟାଶିତ ଘଟଣା ନୁହେଁ । ପାଠକ/ଦର୍ଶକକୁ ବିଶେଷ ପ୍ରକାର ମନୋଭାବ ପୋଷଣକରିବାକୁ ଲେଖକ/କଥକ ସାହଯ୍ୟକରିବ, ସେକଥା ମଧ ଆରିଷ୍ଟୋଟ୍ଲ ଫିଟାଇ

କହିଲେନାହିଁ । କିନ୍ତୁ, ତୃତୀୟ ପ୍ରସ୍ତାବ (=ଭାଷା ଦ୍ୱାରା ପ୍ରମାଣ) ଯଦି ଗ୍ରାହ୍ୟହୁଏ, ପୂର୍ବବର୍ତ୍ତୀ ଦୁଇଟିଯାକ ପ୍ରସ୍ତାବ ହୋଇଯିବ ନାକଚ; ରଚନାଶୈଳୀ ଓ ଶବ୍ଦଚୟନ କେବଳ ବିବେଚିତ ହେବ ନିର୍ଦ୍ଧାରକ । ସେଥିରେ ଯଦି ଲଜିକ୍ କିମ୍ବା ଡାୟଲେକ୍ଟିକ୍ସର ଅନୁପ୍ରବେଶ ଘଟେ, ଆପତ୍ତି କରିବେନାହିଁ କେହି, କାହିଁକିନା, ଆରିଷ୍ଟୋଟ୍ଲଙ୍କ ଅସଲ ଅଭିପ୍ରାୟ ଲୋକରଞ୍ଜନ, ଏବଂ ସେଇ ଅଭିପ୍ରାୟ ଦେବ 'ମୋଡ୍ସ୍ ଅବ୍ ପର୍ସୁଏସନ୍'କୁ ଅନ୍ୱୟ ବା ଇଉନିଟି । ମାତ୍ର ଆରିଷ୍ଟୋଟ୍ଲ ଏଠି କଥକର ଶିକ୍ଷକ; ସାହିତ୍ୟ-ସମାଲୋଚନା ଉପଲକ୍ଷ୍ୟ କେବଳ : In making a speech you must study three items producing persuasion; secondly, the language; thirdly, the proper arrangement of the various parts of speech. We have already distinguished thc modes of persuasion, which we have shown to be three in number । ଦର୍ଶକ/ଶ୍ରୋତାର ସମ୍ମତି ଆଦାୟକରିପାରେ ସାକ୍ଷାତ୍ ପ୍ରମାଣ ବା ଆପାତଃ ପ୍ରମାଣ, ଏବଂ ସେ ପ୍ରମାଣ ଅବଧାରିତ ଲଜିକ୍/ଡାୟଲେକ୍ଟିକ୍ସ । ଭାଷାପ୍ରୟୋଗରେ ହିଁ ସେ ପ୍ରମାଣ ନିଜକୁ ଘୋଷିତ କରିବ । ଏକଥା କହିସାରିବା ଉତାରୁ,ଉପର୍ଯ୍ୟୁକ୍ତ ବୟାନ କେବଳ ପାଣି ଗୋଳିଆକରିବ, କଥକକୁ ସାହାଯ୍ୟ କରିବନାହିଁ । କଥନ/ଲିଖନ ଯଦି 'ଆର୍ଟ', ପୁଣି ଆର୍ଟର ଆବେଦନ ଯଦି ଯୁକ୍ତିନିର୍ଭର, ପଦବିନ୍ୟାସ ଓ ବ୍ୟାକରଣ ସେଇ ପ୍ରମାଣକୁ ଆଶ୍ରୟକରି ତିଆରି ହେବ । ଆରିଷ୍ଟୋଟ୍ଲ ନଜାଣିବା କଥା ନୁହେଁ; ମାତ୍ର ପ୍ଲାଟୋଙ୍କ ଅମଳରୁ ମେଧାବୀଙ୍କ ଭିତରେ ଦାର୍ଶନିକଙ୍କୁ ରଖାଯାଇଚି ଶୀର୍ଷରେ; ଶିଳ୍ପୀ-ଲେଖକକୁ ବିଧାନ ଶୁଣାଇବାକୁ ଫିଲଜଫର୍ ତେଣୁ ହକ୍‌ଦାର୍, ଅଥଚ ଆରିଷ୍ଟୋଟ୍ଲଙ୍କ ଶିଳ୍ପଭାବନାରେ ସ୍ଥୁ କ୍ଚର୍ ନାହିଁ । ଯା ଅଛି, ତା ଖଣ୍ଡିତ ଅସଂଲଗ୍ନ ଅଭିମତ । ତଥାପି, ଯୋଉ କଥା ଉପରେ ଜୋର୍‌ଦେଇଚନ୍ତି, ତା ସାହିତ୍ୟର ଉତ୍ପାଦନ; ଖାଲି ଉପଭୋଗ ନୁହେଁ । ଏକ୍ଷଣି ଧନତନ୍ତ୍ର ଦୌଲତରୁ ପ୍ରଡକ୍ସନ୍ ଉପରୁ ଖସିଆସି ଜୋର୍ ପଡୁଚି କନ୍‌ସପ୍‌ସନ୍ ଉପରେ : ଘେନ ଚିହ୍ନରା ଗ୍ରାହକ ! ଉତ୍ପାଦନ ସମ୍ବନ୍ଧରେ ଲେଖିବାକୁ ହେଲେ, ପ୍ରଯୁକ୍ତି ପ୍ରସଙ୍ଗ ଆସିବ ହିଁ ଆସିବ । ମାତ୍ର, କନ୍‌ସମ୍ପସନ୍ ବା ଉପଭୋଗକୁ ପାସରି ଯାଇନାହାନ୍ତି ଦାର୍ଶନିକ : In speaking we should properly be satisfied if we do not annoy our audience, we should not also try to please them; for we ought in jusitce to fight our case with no help beyond the facts, and nothing should matter except the proof of these facts. Nonetheless, as I have alrcady said, other things have a considerable effect on the outcome because of deficiencies

of the audience. Hence the arts of language must have a small but genuine importance... But not as much importance as some people think. କିଏ ଏଇ some people, ଯିଏ ତଥ୍ୟ ସାହାଯ୍ୟରେ ମୁକାବିଲା କରିବେ ପ୍ରତିପକ୍ଷକୁ, କିନ୍ତୁ ଭାଷାକୁ ଦେବେ ସର୍ବାଧିକ ଗୁରୁତ୍ୱ ? ଅର୍ଥାତ୍, ଭାଷା ଯୋଗାଇବ ଛଦ୍ମବେଶ; ଅନ୍ୟଥା ଲୋକ ରାଗିଯିବେ ! ସେଇ ଛଦ୍ମବେଶକୁ ପଣ୍ଡିତ କହୁଚନ୍ତି 'ପ୍ରସାଦଗୁଣ', ହୋମର୍‌ଙ୍କ କାବ୍ୟରେ ଚିହ୍ନରା ଗ୍ରାହକ ଯା ପାଇଚନ୍ତି ; କିନ୍ତୁ ସୋକ୍ରେଟିସ୍‌ଙ୍କ ପ୍ରଶ୍ନୋତ୍ତର ସେମାନଙ୍କୁ କରିଚି କ୍ରୁଦ୍ଧ । ଗ୍ରୀକ୍ ଭାବୁକ ଯା ଲେଖାଲେଖି କରିଚନ୍ତି, ଆରିଷ୍ଟୋଟ୍ଲ ହୁଏତ ପଢ଼ିଥିଲେ; ମାତ୍ର ପ୍ରଘଟ କରିନାହାନ୍ତି ନାମଧାମ । ବରଂ ଲକ୍ଷ୍ୟକରିଚନ୍ତି, ପ୍ରସାଦଗୁଣର ଉସ୍ତ ଅନାବଶ୍ୟକ ବର୍ଣନା, ଯେପରି ଗୋପୀନାଥ ମହାନ୍ତିଙ୍କ ସ୍ଥୂଳକାୟ ଉପନ୍ୟାସଗୁଡ଼ିକରେ ନିସର୍ଗ ବର୍ଣ୍ଣନା । ଭାଷାର ବାହାଦୁରି ସେଠି ଶତକଡ଼ା ଶହେ । 'Deficiencies of audience' ସେ ବର୍ଣ୍ଣନାକୁ ହାତରେ ପାଇ ପୁଲକିତ ହୁଏ । ବିରକ୍ତ ହୋଇ ଆରିଷ୍ଟୋଟ୍ଲ ଲେଖିଚନ୍ତି, A speech has two parts : you must state your case, and must prove it.... The current divisions are absurd : narration is a part only of forensic speeches... in a political speech or an epideictic speech how can there be a narration?... ଅର୍ଥାତ୍, ରଚନାର ଅଭିପ୍ରାୟ, ସ୍ପଷ୍ଟତଃ ଏକ ଦୃଷ୍ଟିଭଙ୍ଗୀ, ଫିଲଜଫିର ମାତ୍ରା ଆହରଣକରିବା ଦରକାର; ସେତେବେଳେ ରଚନାଶୈଳୀ, ପଦବିନ୍ୟାସ, ଶବ୍ଦଚୟନ ଇତ୍ୟାଦି ହେବ ଅଭିପ୍ରାୟର ବାହନ ମାତ୍ର । ସହାୟକ ବା ବାହକ ଭୂମିକାରେ ଆଙ୍ଗିକ ତେଣୁ ଗୌଣ । ଭାଷାର ଚିତ୍ରମୟତା ଉପରେ ସେଥିପାଇଁ ଜୋର୍‌ଦେଇଚନ୍ତି ଆରିଷ୍ଟୋଟ୍ଲ, ଯା ଫଳରେ ଅଭିଧାନଗତ ଅର୍ଥକୁ ଅତିକ୍ରମକରି ଶବ୍ଦ ପରିଗ୍ରହକରିବ ଭାବବିସ୍ତାର । ସେ ବିଦ୍ୟାକୁ କହୁଛୁଁ ସେମାଣ୍ଟିକ୍ସ । ଆରିଷ୍ଟୋଟ୍ଲ କିନ୍ତୁ ଶୁଣାଇଚନ୍ତି ସତର୍କବାଣୀ: metaphors must not be far-fetched, or they will not be understood; nor yet obvious, or they will have no effect । କିନ୍ତୁ ମେଟାଫର୍ ବା ଉପମା ମଧ୍ୟ ଦର୍ଶନବିଦ୍ୟାର ଏକ ସମସ୍ୟା, କାହିଁକିନା, ଅଜ୍ଞାତକୁ ଜ୍ଞାତକରିବାକୁ ହେଲେ, ଅଥବା ଅଜ୍ଞେୟ ସମ୍ବନ୍ଧରେ ଆଭାସ ଦେବାକୁ ହେଲେ, ଉପମା ଏକମାତ୍ର ଉପାୟ । ଆରିଷ୍ଟୋଟ୍ଲ କିନ୍ତୁ ନୀରବ ରହିଚନ୍ତି; ଅଥଚ ଉପମେୟ (=ସାଦୃଶ୍ୟ) ସମ୍ବନ୍ଧରେ ଲେଖିଚନ୍ତି, Similes are also metaphors - the difference is slight. When Homer says 'He leapt on his toe like a lion', it is a simile; when he says of him 'The lion leapt', it is a metaphor - since both are

brave, he has transferred the word 'lion' to Achilles । ସାଦୃଶ୍ୟ ବା ସାରୂପ୍ୟକୁ କହନ୍ତି 'ସିମିଲି', ମେଟାଫର୍ କିନ୍ତୁ ଏକ ରୂପକ, ଯେପରି, ଆଲୁଅ ତାର କି ମନୋହର/ଅନ୍ଧକାର ତାଠାରୁ ଭଲ । ସିମିଲି ଏକେବାରେ ଅଲଗା, ଯେପରି, ନୀଳିମାରେ ବାମା ଚାରୁ କେଶପାଶ/ ତୋ ନୀଳବିଚିକୁ କଲା ଉପହାସ । ଗୋଟାକରୁ ଆରଟାକୁ 'ଟ୍ରାନ୍ସଫର୍' କଥା ଉଠୁନାହିଁ । ମନୋସ୍ତାତ୍ତ୍ୱିକ ଦିଗ ଛଡ଼ା, ରଚନାସୌଷ୍ଠବ ବିଷୟରେ ଆରିଷ୍ଟୋଟ୍ଲ ଭାବିନାହାନ୍ତି ବେଶି; ଏବଂ ଉଦାହରଣ ନେଇଚନ୍ତି ହୋମର୍‌ଙ୍କ ରଚନାରୁ କେବଳ । ହୋମର୍ କିନ୍ତୁ ଥିଲେ ଅନ୍ଧ ଓ ଚାରଣ । 'ମନୋସ୍ତାତ୍ତ୍ୱିକ' କହୁଚି, କାହିଁକିନା, ଭାବାବେଗକୁ ଚାହିଁଚନ୍ତି ସଂଜ୍ଞାବଦ୍ଧ କରିବାକୁ: The emotions are those feelings which change us in such a way as to affect our judgement and which are accompanied by pain or pleasure। ଭାରତରେ ବି ଭାବିନ୍ତି, କାମ-କ୍ରୋଧ-ମୋହ-ମାତ୍ସର୍ଯ୍ୟ ଭଳି ଷଡ଼ରିପୁ ଘଟାଏ ମତିଭ୍ରମ । ଏବଂ ମତିଭ୍ରମ, ଯନ୍ତ୍ରଣା ନଦେଲେ ବି, ସୁଖ ଦିଏନା କଦାପି । ଆରିଷ୍ଟୋଟ୍ଲ କିନ୍ତୁ ରିପୁ କଥା କହୁନାହାନ୍ତି; ସାହିତ୍ୟପାଠ ବା ନାଟକ ଦେଖିବା କଥା କହୁଚନ୍ତି । ସେ ଅଭିଜ୍ଞତା ଆନନ୍ଦଦାୟକ ହୋଇପାରେ, ରୁଷ୍ଟ ମଧ କରିପାରେ, କିନ୍ତୁ ବିଚାରବିବେଚନାକୁ ଘାବରାଇଦିଏନା । ଦିଏନା ବୋଲି, ଆନନ୍ଦ କି ଦୁଃଖ ଅନୁଭବ କରିପାରୁଁ । ଏବଂ ସେ ଅନୁଭବକୁ ଆବେଗ କହିବା ମଧ ଯଥାର୍ଥ ନୁହେଁ । ଆବେଗ ସହିତ ବିବେଚନାଶକ୍ତିର ଯୋଉ ନିଶ୍ଛିଦ୍ର ସମ୍ପର୍କ ଆରିଷ୍ଟୋଟ୍ଲ କଳ୍ପନାକରିଚନ୍ତି, ତା କଳ୍ପନା ମାତ୍ର । ପ୍ରକୃତି ମଧ କିଛି ଅନୁଭବ ସଞ୍ଚାରକରେ, ମାତ୍ର ତା ତାଡ଼ନାରେ କେହି ଅନ୍ଧ ହୋଇଯାଏନା, ସାହିତ୍ୟ ତ ଛାର୍‌କଥା ! କାହିଁକିନା, 'ଆର୍ଟ'ରୁ ଲବ୍ଧ ଅଭିଜ୍ଞତା ଏକାନ୍ତ ଇସ୍‌ଥେଟିକ୍, ସୁଖ ନୁହେଁ କି ଦୁଃଖ ନୁହେଁ । ତା ପ୍ରଭାବରେ ମନର ବ୍ୟାପ୍ତି ଓ ଗଭୀରତା ପ୍ରଗାଢ଼ ହୁଏ । କୋଳାହଳମୟ ପ୍ରାତ୍ୟହିକତା ବିବ୍ରତ କରିପାରେନା, ଖୋଜିପାଉଁ ସମ୍ବନ୍ଧ, ଆପାତଃ-ଅସମ୍ପର୍କ ଭିତରେ ସମ୍ପର୍କ । ଅନୁଭବ ତେଣୁ ଦୃଢ଼ ହୁଏ, କୁଟାଖିଅ ପରି ମନ ଭାସିଯାଏନା । ଉଦ୍ଧୃତ ବାକ୍ୟ ପଛରେ ଦର୍ଶନର ଅନୁଶୀଳନ କର୍ମରତ ଭାବିବା ତେଣୁ ଭ୍ରାନ୍ତଚେତନା ।

*ପୋଏଟିକ୍ସ* ବହିଟା ମଧ ଅସମାପ୍ତ, କାହିଁକିନା, ସବୁରକମ କବିତା ଆଲୋଚ୍ୟ ବିଷୟ ବୋଲି କହିବା ଉତାରୁ, କେବଳ ଟ୍ରାଜିଡି ଓ ଏପିକ୍ ଚର୍ଚ୍ଚାକରି ବହି ସାରିଦେଇଚନ୍ତି ଆରିଷ୍ଟୋଟ୍ଲ । ସାଧାରଣଭାବେ କବିତାରଚନାକୁ କୁହାଯାଇଛି ଅନୁକୃତି ବା ଇମିଟେସନ୍ । ସେମିତି, ଟ୍ରାଜିଡିର ଯୋଉ ଅଂଶ ତାତ୍ପର୍ଯ୍ୟପୂର୍ଣ୍ଣ, ତାକୁ ଚିହ୍ନିତକରାଯାଇଚି 'ପ୍ଲଟ୍' ବା ଆଖ୍ୟାନଅଂଶ । ତା ପଛକୁ 'କ୍ୟାରେକ୍ଟର୍', ଅର୍ଥାତ୍ ନାୟକ-ନାୟିକା । ଏବଂ ଶେଷକୁ, 'ଥଟ୍' ଓ 'ଡିକ୍ସନ୍' । ଅନୁକରଣର ଗ୍ରୀକ୍ ପ୍ରତିଶବ୍ଦ *mimesis* (ମିମେସିସ୍) ।

କବିତାରଚନା, ଆରିଷ୍ଟୋଟ୍ଲଙ୍କ ଅବଲୋକନରେ ଏକ କଳାକୌଶଳ, ଯେପରି ସମୁଦ୍ରରେ ପୋତଚାଳନା କି ଔଷଧତିଆରି କିମ୍ବା ଗୃହନିର୍ମାଣ । କବିତାଚନା ତେଣୁ 'ଅନୁକରଣ' । କବି is an imitator just like a painter or other maker of images । କବିତା ତେବେ ଅନୁକରଣ କରେ କାହାକୁ ? Poetry imitates *in language* । କାହିଁକିନା, Imitation is natural to men from childhood onwards, one of the advantages of men over the other animals consisting precisely in this that men are the most imitative of things and learn by imitation. In addition, it is natural for everyone to take pleasure in works of imitation । କିନ୍ତୁ ଇମିଟେସନ୍ ଅବିକଳ କି ଜିନିଷ, ଫିଟାଇ କହିନାହାନ୍ତି କୋଉଠି । ହୁଏତ ଭାବିଚନ୍ତି, ପ୍ଲାଟୋଙ୍କ ରଚନା ସହିତ ପାଠକ ନିଶ୍ଚୟ ପରିଚିତ, ମାତ୍ର ପ୍ଲାଟୋ *ମିମେସିସ୍* ଶବ୍ଦଟାକୁ ବ୍ୟବହାର କରିଚନ୍ତି ଦୁଇଟି ଭିନ୍ନ ଅର୍ଥରେ । ପ୍ରଥମଟିରେ, ଅନୁକୃତ କବିତାକୁ 'ନ୍ୟାରେଟିଭ୍' ବା ବର୍ଣ୍ଣନାର ପ୍ରତିପକ୍ଷ ଭାବରେ କରିଚନ୍ତି ଉପସ୍ଥାପନ ଏବଂ ଉଦାହରଣ ଦେଇଚନ୍ତି ହୋମର୍‌ଙ୍କ ଏପିକ୍‌ରୁ । ଉଦାହରଣଗୁଡ଼ିକ ନାୟକମାନଙ୍କ ମୁଖନିଃସୃତ ଉଦ୍‌ବୋଧନସୁଲଭ ସଂଳାପ, ଆଧୁନିକ ପରିଭାଷାରେ 'ଡ୍ରାମ୍ୟାଟିକ୍ ପୋଏଟ୍ରି' । କହିବାଲୋକ ନିଜେ କବି ନୁହେଁ, ଆଖ୍ୟାନର ଚରିତ୍ର ମାତ୍ର । କଥକ ବିଭିନ୍ନ ଭୂମିକାକୁ କଳ୍ପନାକରି ସମ୍ଭାବ୍ୟ କଥୋପକଥନକୁ ଅନୁକରଣକରିଚି, ଯେପରି କରିଚନ୍ତି ସେକ୍ସପିୟର୍ *ତୃତୀୟ ରିଚାର୍ଡ* ନାଟକରେ, ...A horse, a horse....। ଦ୍ୱିତୀୟଟିରେ କୁହାଯାଇଚି, ଯେହେତୁ କୋଉନାକୋଉ ଛଳରେ ସାଦୃଶ୍ୟ ଉତ୍ପନ୍ନକରେ, କବିତା ମାତ୍ରକେ ଅନୁକରଣ । ଇମିଟେସନ୍ ତେଣୁ ସାଦୃଶ୍ୟର ପୁନରୁତ୍ପାଦନ,ଯେପରି ପଲଙ୍କର ଚିତ୍ର ସ୍ୱୟଂ ପଲଙ୍କ ନୁହେଁ, ପଲଙ୍କର ଅନୁକୃତି (=ସାଦୃଶ୍ୟ) ମାତ୍ର । ଅର୍ଥାତ୍ କବିତା ଯେହେତୁ ଧାରଣକରେନା ଅବିକଳ ବାସ୍ତବକୁ, ବାସ୍ତବର ସାଦୃଶ୍ୟକୁ ଉଦ୍‌ଭାସିତ କରେ କେବଳ, କବିତାକୁ ବାସ୍ତବର 'ଇମିଟେସନ୍' କହିବା ହିଁ ସଙ୍ଗତ । ଏ ଅବଶ୍ୟ ପ୍ଲାଟୋଙ୍କ ଆଇଡିଆ; କିନ୍ତୁ ଏ ବ୍ୟଞ୍ଜନାକୁ ବୁଝିଥିଲେ ଆରିଷ୍ଟୋଟ୍ଲ ମଣିଷକୁ କହିନଥାନ୍ତେ ସ୍ୱାଭାବିକ ଓ ଆଶୈଶବ ଅନୁକାରକ । ନିର୍ଦ୍ଦେଶଟା ତେଣୁ କଥକର ଚିତ୍ତଲୋକ ପ୍ରତି, ଢାଳ୍‌କରିବା ପ୍ରବଣତା ଯୋଉ ମାନସିକତାର ସ୍ୱତଃସ୍ଫୂର୍ତ୍ତ ଲକ୍ଷଣ । ତଥାପି, ବିବାକ କବିତା ହୋଇପାରେନା ନିଚ୍ଛକ ଅନୁକରଣ । ଅର୍ଥାତ୍, ପ୍ଲାଟୋଙ୍କ ଦ୍ୱିତୀୟ ଅବବୋଧଟିକୁ ଗ୍ରହଣକରିଚନ୍ତି ଆରିଷ୍ଟୋଟ୍ଲ, ଶେଷବିଚାରରେ କବି ପ୍ରତିଭାତହୋଇଚନ୍ତି ଯେହେତୁ 'makers of likenesses' ।

କବି କଣ ତେବେ ଚିତ୍ରକର କି ଫଟୋଗ୍ରାଫର୍ ? 'ଗାଈ ଖାଉଅଛି କୋମଳ ଘାସ/ ଗୋପୀଜେନା ଚାଷୀ କରୁଚି ଚାଷ' – ଏ ବୟାନକୁ ଯଦି ଧରାଯିବ କବିତା,

ତେବେ ଏ ହେବ ଖାଲି ବର୍ଣ୍ଣନା, ଚିତ୍ର ନୁହେଁ କି ଫଟୋଗ୍ରାଫ୍ ନୁହେଁ । ଅର୍ଥାତ୍ କବିତା ନୁହେଁ, ଦୃଶ୍ୟ ସହିତ ସାଦୃଶ୍ୟ ନିକଟତମ ହେବାସତ୍ତ୍ୱେ । ଅନୁମାନକରିବା ତେଣୁ ସଙ୍ଗତ ଯେ ଆରିଷ୍ଟୋଟ୍ଲ ଓ ତାଙ୍କ ଆଗରୁ ପ୍ଲାଟୋ, କ୍ରମାଗତ ପର୍ଯ୍ୟବେକ୍ଷଣରୁ ବୁଝିପାରିଥିଲେ ଯେ ଚିତ୍ର ପ୍ରତିଫଳିତକରେ କେବଳ ସାରୂପ୍ୟ (ଲାଇକ୍‌ନେସ୍), ମାତ୍ର ସେ ଧାରଣାକୁ କବିତା ପ୍ରତି ପ୍ରୟୋଗକରିବା ଉଭୟଙ୍କ ପକ୍ଷରେ ହୋଇଚି ଅବିବେଚନା । ଚିତ୍ର ମଧ ସାଦୃଶ୍ୟ ନୁହେଁ, ଯଦି ପ୍ରତିକୃତି ନହୁଏ; ପୁଣି ଅନେକ କ୍ଷେତ୍ରରେ ପ୍ରତିକୃତି ମଧ ଚିତ୍ରକରର ଦୃଷ୍ଟିଭଙ୍ଗୀର ପ୍ରତିନିଧି, ଦୃଷ୍ଟବସ୍ତୁ କି ବ୍ୟକ୍ତି ସହିତ ସାଦୃଶ୍ୟ ଥାଉ କି ନଥାଉ । ତଥାପି, ପୃଥିବୀର ସମସ୍ତ ପ୍ରାଚୀନ ଚିତ୍ରକଳା, ବିନା ବ୍ୟତିକ୍ରମରେ, ପ୍ରତିନିଧିତ୍ୱ କରେ ସାଦୃଶ୍ୟର । ସେଇ ଦୃଷ୍ଟିରୁ, ଇମିଟେସନ୍ ନକହି କବିତାକୁ କୁହାଯାଇପାରେ ରିପ୍ରେଜେଣ୍ଟେସନ୍ । ଛାଲିଆଡି ନୁହେଁ କି ମର୍କଟସୁଲଭ ଅନୁକରଣ ନୁହେଁ । କିନ୍ତୁ ଅନୁକରଣକୁ ପ୍ରତିନିଧିତ୍ୱ ଭାବିଲେ ସୁଦ୍ଧା କବିତାର ସଂଜ୍ଞା ହିସାବରେ ପ୍ରତିନିଧିତ୍ୱ ମଧ ଅସଂପୂର୍ଣ୍ଣ, କାହିଁକିନା, ସ୍ଥିତ ବା ଜ୍ଞାତ ଜିନିଷର କେବଳ ପ୍ରତିନିଧିତ୍ୱ କରିହେବ । ଯା ଅନାଗତ, ଯା ସମ୍ଭାବ୍ୟ, ଯା ରହିଚି ଭ୍ରୂଣାକାରରେ ବା ବୀଜ ସ୍ତରରେ, ତାର ପ୍ରତିନିଧିତ୍ୱ ବା ଅନୁକରଣ କରିବ କିଏ ଓ କେମିତି ? ଭାଷା ଅବା ପାଇବ କୋଉଠୁ ? ପାଇଲେ ସୁଦ୍ଧା, ସେ ଭାଷାର ବ୍ୟାକରଣ କି ପ୍ରକାର ? ସମସ୍ୟା କିନ୍ତୁ ଛୁଇଁନାହିଁ ଆରିଷ୍ଟୋଟ୍ଲଙ୍କ ମନକୁ । କଣ ବର୍ଣ୍ଣନାକରିବ କବି ଯଦି ବର୍ଣ୍ଣନାକଲାଭଳି ବସ୍ତୁ କିଛି ନଥାଏ, ଯଦି ଭାବରାଜ୍ୟର ପ୍ରତିମା ରହିଥାଏ ଭାଷାପ୍ରଣାଳୀରେ ଅନାବିଷ୍କୃତ ? ଯଦି ସେଇ ପ୍ରତିମାକୁ ପ୍ରସବକରିବାକୁ ଯାଇ ଭାଷା ହୋଇଯାଏ ଚୂର୍ଣ୍ଣବିଚୂର୍ଣ୍ଣ ? ରିଆଲିଟି ମୋଟେ ଅବିଚଳ କି ମୂର୍ତ୍ତିମନ୍ତ ନୁହେଁ, ଏବଂ କବି ଯା ଅନୁକରଣକରିବ, କି ଯାର ପ୍ରତିନିଧିତ୍ୱ ତାର ଅଭୀଷ୍ଟ, ସେ ରିଆଲିଟି ଯଦି କ୍ଷଣକୁକ୍ଷଣ ଘୁଞ୍ଚିଯାଉଥାଏ ଆଖିଆଗରୁ, ଉଚ୍ଚାରଣକୁ ସଂଜ୍ଞାବଦ୍ଧକରିବା ସମ୍ଭବପର ହେବ ଅବା କେମିତି ? ମହାମତି ଆରିଷ୍ଟୋଟ୍ଲଙ୍କୁ ଏ ପ୍ରଶ୍ନଗୁଡ଼ାକ ମଧ ଭାବିତ କରିନାହିଁ । ତେବେ, ବୋଲିବା ବାହୁଲ୍ୟ, କବିତା କହିଲେ ଆଜି ଯା ବୁଝୁଛୁଁ, ଆରିଷ୍ଟୋଟ୍ଲଙ୍କ ଧାରଣା, ଅନ୍ତତଃ *ପୋଏଟିକ୍ସ* ରେ ଯା ବ୍ୟକ୍ତିହୋଇଚି, ଏକାଜିନିଷ ନୁହେଁ । ତାଙ୍କ ଧାରଣାରେ କବିତା କେବଳ ପଦ୍ୟ ନୁହେଁ, ଗଦ୍ୟ ମଧ ହୋଇପାରେ ସ୍ଥଳବିଶେଷରେ; ପୁଣି ଅନେକ ପଦ୍ୟ ମଧ ଜମାରୁ ବିବେଚିତ ହେବନାହିଁ କବିତା । ସେମିତି, ସାହିତ୍ୟ ବା ଲିଟରେଚର୍ ମଧ, ତାଙ୍କ ପାଇଁ, ସବୁରକମ ଲେଖାଲେଖି ନୁହେଁ; ବରଂ ଗଳ୍ପ-ଉପନ୍ୟାସର ନିକଟବର୍ତ୍ତୀ, କାହିଁକିନା, ତା ଇମିଟେସନ୍ । ବିଶେଷଜ୍ଞଙ୍କ ମତରେ , ମୂଳତଃ fictional representation । ମନ ମାନୁନାହିଁ ଅବଶ୍ୟ; କିନ୍ତୁ ଟ୍ରୟଠି ଯୁଦ୍ଧହୋଇଥିଲା ହୁଏତ ସତକୁସତ, ଅଥଚ *ଇଲିଆଡ୍* ଜମାରୁ କବିତା ନୁହେଁ ।

ଏକ୍ଷଣି, ଟ୍ର୍ୟାଜିଡି କହିଲେ ଅବା ବୁଝିଚନ୍ତି କି ଜିନିଷ ଆରିଷ୍ଟୋଟ୍ଲ ? କାହିଁକିନା, ଯୋଉ ତିନିଟି ଉପସର୍ଗ *ପୋଏଟିକ୍ସ* ରେ ଗୁରୁତ୍ୱ ପାଇଚି, ଯଥାକ୍ରମେ ତା ଜେଁର୍ (=କିସମ୍)ର ସଂଜ୍ଞା, ନାୟକର ବିବରଣ, ଏବଂ ଶେଷକୁ ରଚନାକୁ ଏକସୂତ୍ରରେ ଗୁନ୍ଥିରଖିଚି ଯୋଉ ଇଉନିଟି, ତଦ୍‌ସମ୍ବନ୍ଧୀୟ ତତ୍ତ୍ୱତଲାସ୍ । ଏ ବିଚାରକୁ ତତ୍ତ୍ୱଗଠନର ଶ୍ରେଷ୍ଠ ନିଦର୍ଶନ ବୋଲି ଦାବିକରିନାହାନ୍ତି ଅବଶ୍ୟ, କିନ୍ତୁ ପରବର୍ତ୍ତୀ କାଳର ନାଟକଚର୍ଚ୍ଚା ଓ ମଞ୍ଚାଭିନୟର ଇତିହାସକୁ ଏ ତତ୍ତ୍ୱ ଏଭଳି ପ୍ରଭାବିତକରିଚି ଯେ, ଉପସର୍ଗତ୍ରୟ ପାଇଯାଇଚି ନିୟାମକର ଗୁରୁତ୍ୱ । ଜେଁର୍, ଅର୍ଥାତ୍ ଟ୍ର୍ୟାଜିଡିର କିସମ୍ ନିରୂପଣ କରିବାକୁ ଯାଇ ଲେଖିଚନ୍ତି, A tragedy is the imitation of an action which is serious and, having grandeur, complete in itself, done in language seasoned with embellishment, each appearing separately in different parts of the work, in dramatic rather than narrative form, accomplishing by way of pity and fear the catharsis of such feelings। ଘଟଣାପ୍ରବାହ (ଆ୍ୟାକ୍ସନ୍) ହୋଇଥିବ ଗମ୍ଭୀର ଓ ସଙ୍କଟସଙ୍କୁଳ (ସିରିଅସ୍); ଖାଲି ଗମ୍ଭୀର ନୁହେଁ, ମହିମାମଣ୍ଡିତ (ଗ୍ୟାନ୍‌ଜର୍) ଏକାବେଳକେ । ସେଭଳି ଘଟଣାପ୍ରବାହକୁ ଅନୁକରଣକରିବ (=ରୂପାୟିତ କରିବ) ମଞ୍ଚାଭିନୟ ମାଧ୍ୟମରେ ଟ୍ର୍ୟାଜିଡି । ଆରିଷ୍ଟୋଟ୍ଲଙ୍କ ଉଦ୍ଦେଶ୍ୟ ଏଠି କମେଡିଠାରୁ ଟ୍ର୍ୟାଜିଡିର ପାର୍ଥକ୍ୟ ନିର୍ଦ୍ଦେଶ । 'କମ୍‌ପ୍ଲିଟ୍ ଇନ୍ ଇଟ୍‌ସେଲ୍ଫ' ମାନେ ଦୃଶ୍ୟ ଓ ଅଙ୍କଗୁଡ଼ିକର ଇଉନିଟି ବା ଗଠନଗତ ସଂହତି । କିନ୍ତୁ ଭାଷା ହେବ ଘଟଣାର ଚରିତ୍ର ଅନୁସାରେ ଭୂଷିତ, ଏବଂ ସେଥିପାଇଁ, ଅଙ୍କ ଓ ଦୃଶ୍ୟଗୁଡ଼ିକର ସଂଳାପ ହେବ ସମୟୋଚିତ (ସିଜିନ୍‌ଡ୍) । ଅର୍ଥାତ୍, ଭାଷା ହେବ ଛନ୍ଦୋମୟ ଓ ଏକତାନ । 'ସେପାରେଟ୍‌ଲି ଇନ୍ ଡିଫରେଣ୍ଟ ପାର୍ଟସ୍ ଅଫ୍ ଦି ଓର୍କ୍' ମାନେ କିଛି ଅଂଶକୁ ଆବୃତ୍ତିକରାଯିବ ଗଦ୍ୟଛନ୍ଦରେ, ଆଉକିଛି ଅଂଶ ଗୀତହେବ ସାଙ୍ଗୀତିକ ତାଳ-ଲୟରେ । ଟ୍ର୍ୟାଜିଡି ତେଣୁ କାବ୍ୟ-ନାଟକ, ଆଧୁନିକ ପରିଭାଷାରେ, ଡ୍ରାମାଟିକ୍ ପୋଏଟ୍ରି/ପୋଏଟିକ୍ ଡ୍ରାମା ।

ସଂଜ୍ଞାର ଶେଷାଂଶ କିନ୍ତୁ ଅଦ୍ୟାବଧି ରହିଚି ବିବଦମାନ, କାହିଁକିନା, ଟ୍ର୍ୟାଜିଡିର ଲକ୍ଷ୍ୟ : ଉଦ୍ରେକକରିବ ଦର୍ଶକଚିତ୍ତରେ ପିଟି ଆଉ ଫିୟର୍ । ପିଟି-ର ଆକ୍ଷରିକ ଅର୍ଥ କରୁଣା ବା ଅନୁକମ୍ପା । ମାତ୍ର ଆରିଷ୍ଟୋଟ୍ଲ କହିଚନ୍ତି, Pity may be defined as a feeling of pain at an apparent evil, destructive or painful, which befalls someone who does not deserve it and which we might expect to befall ourselves or some friends of ours- and to befall us soon.

ଫିୟର୍ ହୋଇପାରେ ଆଶଙ୍କା, ଆତଙ୍କ କିମ୍ବା ଭୟ । ଟ୍ର୍ୟାଜିଡିକୁ ସକ୍ରିୟକରୁଚି ତେଣୁ କରୁଣା ଓ ଆଶଙ୍କା । କରୁଣା ଓ ଆଶଙ୍କା କିନ୍ତୁ ବିମୂର୍ତ୍ତ ଅବବୋଧ । ଅଭିନୟରେ ତାକୁ ବ୍ୟକ୍ତକରିବାକୁ ହେଲେ (=ଅନୁକରଣକରିବାକୁ ହେଲେ) ମୌଖିକ ବୟାନ ଯଥେଷ୍ଟ ନୁହେଁ, ଦରକାର 'ସ୍ପେକ୍ଟାକ୍ଲ' ବା ପ୍ରଦର୍ଶନୀ । ସେଥିପାଇଁ,dramatic rather than narrative । ପ୍ରଦର୍ଶନୀ ଯୋଉଠି ଅଶାଳୀନ, ଦୃଶ୍ୟ କି ବାକ୍ୟ ବର୍ଜିତହେବ ସାଧାରଣତଃ, କାହିଁକିନା, ଅଶାଳୀନତା ପ୍ରକଟ କରିଦେବ the structure and nature of the plot । ଅର୍ଥାତ୍, ପିଟି ଆଣ୍ଡ୍ ଫିୟର୍ ଉଦ୍ରେକକରିପାରେ ନିର୍ଦ୍ଦିଷ୍ଟ ପ୍ରକାର ପ୍ଲଟ୍; ଅନ୍ୟ ପ୍ଲଟ୍ ବିବେଚିତ ହେବ ଅ-ଟ୍ର୍ୟାଜିଡି, କାହିଁକିନା, ସେଭଳି ପ୍ଲଟ୍ do not appeal to our human feelings or to our pity or to our fear । ଆରିଷ୍ଟୋଟ୍ଲ କିନ୍ତୁ କହିନାହାନ୍ତି ଯେ ନାଟ୍ୟକାର ଖାଲି ଏଇ ଉଦ୍ଦେଶ୍ୟକୁ ମୁଣ୍ଡରେ ରଖି ଟ୍ର୍ୟାଜିଡି ଲେଖେ କି ଦର୍ଶକ ପିଟି ଓ ଫିୟର୍ ପ୍ରତ୍ୟାଶାରେ ଥିଏଟର୍ ଦେଖିବାକୁ ଯାଏ । କାହିଁକିନା, ପିଟି ଆଉ ଫିୟର୍ ଛଡ଼ା ଆହୁରି ଅନେକ ରକମ ଅନୁଭବ ଉଦ୍ରେକ କରିପାରେ ଟ୍ର୍ୟାଜିଡି ଏବଂ ଦର୍ଶକ ଯୋଉ ପ୍ରତ୍ୟାଶାନେଇ ରଙ୍ଗାଳୟକୁ ଯାଏ, ଆରିଷ୍ଟୋଟ୍ଲ ତାକୁ କହିଚନ୍ତି *କ୍ୟାଥାର୍‌ସିସ୍* । ଆକ୍ଷରିକ ଅର୍ଥ 'ବିଶୋଧନ' । ତାକୁ ହିଁ କରିଚନ୍ତି ଟ୍ର୍ୟାଜିଡିର ରେଇଜନ୍‌ଡେଇଟର୍, ଅସ୍ତିତ୍ୱର ନିମିତ୍ତ ।

ଗ୍ରୀକ୍ ଶବ୍ଦ *Katharsis* ପ୍ରୟୋଗ କରାଯାଇଚି, ସେତେବେଳେ ଅନ୍ତତଃ, ଦୁଇପ୍ରକାର ପ୍ରେକ୍ଷିତରେ : ଗୋଟିଏ ପ୍ରେକ୍ଷିତ ବ୍ୟାଧିନିରାମୟ, ଅନ୍ୟଟି ଧର୍ମ । ବଦହଜମ ହେଲେ ଜୁଲାପ୍ ଖାଇ ପେଟସଫାକରିବା ଯେମିତି କ୍ୟାଥାର୍‌ସିସ୍ (ଇଂରେଜୀରେ, ପର୍‌ଗେସନ୍), ଆଚାରଶୁଦ୍ଧି ବଳରେ ଆଧ୍ୟାତ୍ମିକତା ଅର୍ଜନ ସେମିତି । ତାହେଲେ, ଆରିଷ୍ଟୋଟ୍ଲ ନେଇଚନ୍ତି କୋଉ ଗୋଟାକୁ ? ଟ୍ର୍ୟାଜିଡି କଣ ଖାଲି ଭାବାତିଶଯ୍ୟରୁ ମୁକ୍ତକରେ ଦର୍ଶକକୁ ? କମେଡ଼ି କରେନା ? ଯେମିତି ଚାର୍ଲି ଚ୍ୟାପ୍‌ଲିନ୍‌ଙ୍କ ନିର୍ବାକ ଚଳଚ୍ଚିତ୍ର ? ହସ ବି ତ ବିଗଳିତ କରିପାରେ ଅବଦମନ । ଆରିଷ୍ଟୋଟ୍ଲ ଭାବିଚନ୍ତି, ଏକମାତ୍ର ଟ୍ର୍ୟାଜିଡି ହିଁ ବିଗଳିତ କରିଦିଏ ରିପୁର ପ୍ରାଦୁର୍ଭାବ । ନା, ଆବେଗଗୁଡ଼ିକୁ ଏପରି ପରିଶୀଳିତ କରେ ଯେ ଜୀବନ ଓ ଜଗତ ପ୍ରତି ଅବଲୋକନ ହୁଏ ସୂକ୍ଷ୍ମ, ତୀକ୍ଷ୍ଣ ଓ ପରିଚ୍ଛନ୍ନ ? ସ୍ପଷ୍ଟ କରିନାହାନ୍ତି, କିନ୍ତୁ ଦର୍ଶକ ସତକୁସତ ପିଟି ଆଉ ଫିୟର୍ ଅନୁଭବକରେ କି ? ଜୀବନର ବାସ୍ତବ ଅଭିଜ୍ଞତା ଅପେକ୍ଷା ଟ୍ର୍ୟାଜିଡି ଦେଖିବା ଅଭିଜ୍ଞତା କି ମାତ୍ରାରେ ଅଧିକ ଅନ୍ତର୍ଭେଦୀ ବା ଚମତ୍କାର ? ଟ୍ର୍ୟାଜିଡି ତ ଜୀବନର ଅନୁକରଣ ମାତ୍ର ! ତେବେ କଣ ଜୀବନର ଅଭିଜ୍ଞତା ଅପେକ୍ଷା ଅତିରିକ୍ତ କିଛି ଟ୍ର୍ୟାଜିଡି ସଞ୍ଚାରିତକରେ ଦର୍ଶକର ଚିତ୍ତଲୋକରେ ? ଯେପରି, ଇଦିପସ୍-ର ପିତୃହତ୍ୟା, ମା ସହିତ ସଙ୍ଗମ,

ପରିଣାମରେ ଅନ୍ଧତ୍ୱ, ଇତ୍ୟାଦି । ଏଗୁଡ଼ାକ ତ ଜୀବନରେ ଘଟେନା, ତେବେ ଆକ୍ସନ୍‌ର ଅନୁକରଣ ହେବ କେମିତି ଟ୍ରାଜିଡି ? ହେଇପାରେ, ଦର୍ଶକ ଅନୁଭବକରିବ ଇଦିପସ୍ ପ୍ରତି କରୁଣା, କାହିଁକିନା, ଇଦିପସ୍ ଯା କରିଚି, ଜାଣିଶୁଣି କରିନାହିଁ; ଶାସ୍ତି ତାର ପ୍ରାପ୍ୟ ନୁହେଁ । କିନ୍ତୁ ଫିୟର୍ ? ଦର୍ଶକ ଜାଣେ, ତା ନିଜ ଜୀବନରେ କେବେ ଘଟିବନାହିଁ ଏ ଦୁର୍ଘଟଣା, ଡରିବ ତେବେ କାହାକୁ ? ଅନ୍ଧ ନିୟତିକୁ ? ଆରିଷ୍ଟୋଟ୍ଲ ଯୋଉ ସଂଜ୍ଞା ଦେଇଚନ୍ତି 'ପିଟି'ର, ସେଥିରୁ କିନ୍ତୁ ବୁଝିବାର ଉପାୟ ନାହିଁ ।

ବିଶୋଧନ ବା କ୍ୟାଥାର୍‌ସିସ୍,ତାଙ୍କ ଦୃଷ୍ଟିରେ ପୁଣି, ଏକପ୍ରକାର ପୁଲକ ବା ଚିତ୍ତଶୁଦ୍ଧି । ଭୟ କିମ୍ବା ସମବେଦନା କିମ୍ବା ଉଭୟର ସମ୍ମିଶ୍ରଣ ପୁଲକ ଉତ୍ପାଦନ କରେନା, କରିପାରେନା । ଥିଏଟର୍ ଦେଖିବାବେଳେ କାହୁଁ ଅବଶ୍ୟ, କିନ୍ତୁ ଏକଥା ବି ବୁଝିପାରୁଁ, ଯୋଉ ଦୃଶ୍ୟ ଦୁଃଖ ଦେଇଚି, ତା କଳ୍ପନାପ୍ରସୂତ । ଆରିଷ୍ଟୋଟ୍ଲ ତେଣୁ ନାଟ୍ୟକାରଙ୍କୁ ପରାମର୍ଶ ଦେଇଚନ୍ତି, ଏପରି ପ୍ଲଟ୍ ବାଛିବେ ଯାର ଗଢ଼ଣରେ ପିଟି ଆଉ ଫିୟର୍ ଉତ୍ପାଦନକରିବା ଅବକାଶ ଥିବ ଯତ୍ପରୋନାସ୍ତି । ଏବଂ ଉତ୍ପାଦନପ୍ରକ୍ରିୟାକୁ ସାବଲୀଳ କରିବ ଗଦ୍ୟ ନୁହେଁ, ଆବୃତ୍ତି ଓ ସଙ୍ଗୀତ । ତେଣୁ 'ପର୍‌ଗେସନ୍' କି 'ପିଉରିଫିକେସନ୍', କୋଉ ଗୋଟାକ ହେଲେ ବି, ସାଧନ କରିପାରେନା ଟ୍ରାଜିଡି । କରିଥିବା ଦୃଷ୍ଟାନ୍ତ ମଧ୍ୟ ଆସିନାହିଁ ନଜରକୁ, ଗ୍ରୀସ୍ କିମ୍ବା ଅନ୍ୟତ୍ର । ସାହିତ୍ୟ, ପ୍ରକୃତରେ, ମଣିଷକୁ ଭାବିବାକୁ ପ୍ରରୋଚିତକରେ, କାହିଁକିନା, ତା ଇମିଟେସନ୍ ନୁହେଁ, ଜ୍ଞାତ କଥାର ପୁନରାବୃତ୍ତି ନୁହେଁ; ଜୀବନକୁ ଦେଖିବାର ଅଭିନବ ପ୍ରଚକ୍ଷୁ । ଗ୍ରୀକ୍ ଟ୍ରାଜିଡି ଯେମିତି, ସେକ୍ସପିୟର୍ କି ଇବ୍‌ସେନ୍ ସେମିତି, ଦେଇଚନ୍ତି ସେଇ ପ୍ରଚକ୍ଷୁ, ପୁଲକ ନୁହେଁ କି ପ୍ରଶାନ୍ତି । କ୍ୟାଥାର୍‌ସିସ୍ ଯଦି ସତ, ତେବେ ତା ଏକପ୍ରକାର ଥେରାପି । ଥେରାପି ଯୋଗାଇଦେବା ଚିକିତ୍ସକର କର୍ତ୍ତବ୍ୟ, ଲେଖକର ନୁହେଁ, ଯଦିଚ ଡାକ୍ତର ବି ବେଳେବେଳେ ବହିଲେଖନ୍ତି । ଯେପରି ଜେମସ୍ ଜୟସ୍ ।

କିନ୍ତୁ ନାଟକର ନାୟକ-ନାୟିକାଙ୍କ ନିହିତ ସ୍ୱଭାବକୁ ମଧ୍ୟ ଆରିଷ୍ଟୋଟ୍ଲ କରିଚନ୍ତି ଟ୍ରାଜିଡିର ଉପକରଣ, ଯେପରି, There remains, then, the intermediate kind of person, a man not pre-eminently virtuous or just, but who enjoys a high reputation and prosperity, whose misfortune is brought upon not by vice and depravity but by some fault. ସେଭଳି ଗୋଟିଏ ଲୋକ ଇଦିପସ୍, ଗ୍ରୀକ୍ ଉଚ୍ଚାରଣରେ ଓୟାଦିପାଉସ୍ । କିନ୍ତୁ ସମବେଦନା ଉଦ୍ରେକକରିବାକୁ, high reputation and prosperity ଦରକାର ହେବ କାହିଁକି ? ଅସଲ କାରଣ ତ some fault ! ଫଲ୍ଟ-ର

ଗ୍ରୀକ୍ ପ୍ରତିଶବ୍ଦ *hamartia* । ଚରିତ୍ରଗତ ଦୋଷ ନୁହେଁ; ବରଂ ଘଟଣା ବା କର୍ମ, ଯା ସମାଧାକରିବା ପ୍ରକ୍ରିୟାରେ ଘଟିଯାଏ ପ୍ରମାଦ । କାରଣ ରହିଚି ତେଣୁ କୃତକର୍ମରେ । ନୈତିକତା ମାନଦଣ୍ଡରେ କୁକର୍ମ କି ଅପକର୍ମ ମଧ୍ୟ ବିବେଚିତ ହୋଇପାରେ ପାପ, ଯେପରି ଗ୍ରୀକ୍ ଟ୍ରାଜିଡିରେ । *ଓଲ୍ଡ ଟେଷ୍ଟାମ୍ୟାଣ୍ଟ* ରେ ଆଦମ୍-ର ପତନ ଘଟିଚି ସେଇ କାରଣରୁ : ଈଶ୍ୱରଙ୍କ ଅନୁଜ୍ଞା ଅମାନ୍ୟ କରିଚି । କିନ୍ତୁ ଗ୍ରୀକ୍ ଟ୍ରାଜିଡିର ପାତ୍ରପାତ୍ରୀ ଆଧ୍ୟାତ୍ମିକ କୋଉ ନିଷେଧ ଲଂଘନ କରିନାହାନ୍ତି ; ତେଣୁ ସମବେଦନା ଉଦ୍ରେକକରିବାକୁ ହେଲେ ଦୁର୍ଗତିକୁ ଦେଖାଇବାକୁ ହେବ ଅକାରଣ, ତେଣୁ ଅନ୍ୟାୟ । ଆଧ୍ୟାତ୍ମିକ ଅନ୍ୟାୟ । ଟ୍ରାଜିଡିର ପାତ୍ରପାତ୍ରୀଙ୍କ ସ୍ଖଳନକୁ ଆରିଷ୍ଟୋଟ୍ଲ ନୈତିକ ସ୍ଖଳନ କହିନାହାନ୍ତି, କହିଚନ୍ତି *hamartia*, ମତିଭ୍ରମ । ଇଦିପସ୍ ନିଜ ବାପ-ମାଙ୍କୁ ଚିହ୍ନିପାରିନାହିଁ, କାହିଁକିନା, ଶିଶୁ ଅବସ୍ଥାରେ ତାକୁ କରାଯାଇଛି ନିର୍ବାସିତ । ସତ୍ୟ ଉଦ୍‌ଘାଟନ ଥିଲା ତେଣୁ ସାଧ୍ୟାତୀତ । ପିତୃହତ୍ୟା କି ମାତୃସଙ୍ଗମକୁ ସେଥିପାଇଁ ଅଟକାଇ ପାରିନାହିଁ ଇଦିପସ୍ । ଆରିଷ୍ଟୋଟ୍ଲ ଜମାରୁ କହିନାହାନ୍ତି ଯେ ଦୁର୍ଘଟଣାଗୁଡ଼ାକ ଦେବତାଙ୍କ ଚକ୍ରାନ୍ତ । ତେବେ କଣ ଖାଲି ଟ୍ରାଜିଡି ସୃଷ୍ଟିକରିବା ସକାଶେ ଅକାରଣ ଏଇ ଉଦ୍‌ଭାବନ ? ପଣ୍ଡିତ କହୁଚନ୍ତି ନାୟକର ସ୍ଖଳନ ଯେହେତୁ ସଜ୍ଞାନ କୁକର୍ମରୁ ଘଟୁନାହିଁ, ଦୁର୍ଗତି ହୋଇପାରେନା ସ୍ୱପାର୍ଜିତ । 'ପିଟି' ଉଦ୍ରେକକରିବ ତେବେ କାହିଁକି ? ଆକସ୍ମିକ ହୁଏ ଯଦି ଦୁର୍ଗତି ଏବଂ କାରଣ ମଧ୍ୟ ହୁଏ ଅପ୍ରତ୍ୟାଶିତ, ଦର୍ଶକ କ୍ଷଣକପାଇଁ ବିହ୍ୱଳ ହୋଇପାରେ ହୁଏତ, ସମବ୍ୟଥୀ ହେବାକୁ କିନ୍ତୁ ସୁଯୋଗ ପାଇବନାହିଁ । ପ୍ରକୃତ ପ୍ରସ୍ତାବରେ ଟ୍ରାଜିଡିର ବିଷୟବସ୍ତୁ କେବଳ ଜୀବନରେ ଦୁର୍ଦ୍ଦଶାର ଆକସ୍ମିକତା (=ଅକାରଣ ଓ ଅପ୍ରତ୍ୟାଶିତ) । କାର୍ଯ୍ୟକାରଣର ଲଜିକ୍ ବୁଝାଇପାରେନା; ପ୍ରତିଷେଧ ନାହିଁ କି ପ୍ରତିକାର ନାହିଁ । ଏକଥା ବୁଝିଲେ ମଣିଷ ବିନୟୀ ହୁଏ, ଅଶ୍ରୁବାଷ୍ପହୋଇ ଉଡ଼ିଯାଏ ଅହଂକାର । ମହାଜ୍ଞାନୀ ଆରିଷ୍ଟୋଟ୍ଲ କାହିଁକି କହିଲେନାହିଁ ଏଇ ସତ୍ୟବଚନ ? କାହିଁକିନା, ବାଇୟଲଜି ସାହାଯ୍ୟରେ ବ୍ୟାଖ୍ୟାକରିବାକୁ ଚାହିଁଚନ୍ତି ଟ୍ରାଜିଡିକୁ ।

ତାହେଲେ, 'ଇଉନିଟି' ଫେର୍ କି ଜିନିଷ ? ଦୃଶ୍ୟ ଓ ଅଙ୍କର ଅନ୍ୱୟ ? ଧ୍ରୁପଦୀ ନାଟକରେ ଚିନ୍ତାକରାଯାଇଚି ତିନିଟି ବିଭାବର ଅନ୍ୱୟ : ଇଉନିଟି ଅବ୍ ଟାଇମ୍, ଇଉନିଟି ଅବ୍ ପ୍ଲେସ୍ ଓ ଇଉନିଟି ଅବ୍ ଆକ୍ସନ୍ । ଅର୍ଥାତ୍, ଘଟଣା ହୁଏତ ଶହେବର୍ଷଧରି ଘଟିଚି, ଏକାଜାଗାରେ ବି ଘଟିନାହିଁ; କିନ୍ତୁ ଅଭିନୟ ପାଇଁ ସମୟ ନିର୍ଦ୍ଧିଷ୍ଟହୋଇଚି ତିନିଘଣ୍ଟା, ସେଇ ତିନିଘଣ୍ଟା ଭିତରେ ଅଭିନୀତ ହେବ ଆଖ୍ୟାନ ଆଦ୍ୟାନ୍ତ । ପୁଣି ଘଟଣା କ୍ରମରେ ରହିଚି ପର୍ବତ,ସମୁଦ୍ର କି ଅରଣ୍ୟ; ମାତ୍ର ସବୁଗୁଡ଼ାକ ଅଭିନୀତ ହେବ ଏକା ରଙ୍ଗମଞ୍ଚ ଉପରେ । ଟାଇମ୍ ଓ ପ୍ଲେସ୍ ଆରିଷ୍ଟୋଟ୍ଲଙ୍କ ମନକୁ ଛୁଇଁନାହିଁ, କାହିଁକିନା, ଟ୍ରାଜିଡି ଯାର ପ୍ରତିନିଧିତ୍ୱ କରେ, ତା ଏକମାତ୍ର 'ଆକ୍ସନ୍'। ସେଥିପାଇଁ

କହିଚନ୍ତି,imitation of an action...complete in itself । ଏଭଳି ପୂର୍ଣ୍ଣାଙ୍ଗ ଯୋଉ ଘଟଣାପ୍ରବାହ, ତାର ନିଶ୍ଚୟ ମୂଳ ମଝି ଓ ଚୂଳ ରହିବ । ରହିଲେ ଯାଇ, ପ୍ଲଟ୍ ପାଇବ ଇଉନିଟି । କିନ୍ତୁ,the unity of a plot does not consist, as some suppose, in its having one man as its subject; for indefinitely many things may befall one man, not all of which it is possible to reduce to a unity । ଅଥଚ *ହ୍ୟାମଲେଟ୍* ଭଳି ଟ୍ର୍ୟାଜିଡିରେ ପ୍ଲଟ୍‌ର ଅବଦାନ ଯେତେ, କ୍ୟାରେକ୍ଟର୍‌ର ଅବଦାନ, ଇଉନିଟି ପାଇଁ, ତଦପେକ୍ଷା ଊଣା ନୁହେଁ । ଚରିତ୍ରର (= ନାୟକର) କ୍ରମାଗତ ଉନ୍ମୋଚନ ପ୍ରକଟକରିବା ପ୍ରକ୍ରିୟାରୁ ପ୍ଲଟ୍ ପାଇଥାଏ ସଂହତି; ଟ୍ର୍ୟାଜିଡିର ମୁଖ୍ୟଚରିତ୍ର ଜଣେକେହି ନୁହେଁ; କହିବା ତେଣୁ ନିରର୍ଥକ । ମାତ୍ର ଆରିଷ୍ଟୋଟ୍ଲ ଭଞ୍ଜନକରିଚନ୍ତି ସଂଶୟ : tragedy is an imitation not of people but of action and life.... In a play, then, people do not act in order to portray character; they include character for the sake of action.

ଅର୍ଥାତ୍, ପ୍ଲଟ୍ ସଂହତିପାଉଚି ନିଚୋଳ କୋଉ ମାନବ-ଚରିତ୍ରରୁ ନୁହେଁ; ପ୍ଲଟ୍ ଯେହେତୁ ପ୍ରତିନିଧିତ୍ୱକରେ ଏକକ କୃତକର୍ମର, ସେଇ ଏକକ ଘଟଣାପ୍ରବାହ ଦିଏ ତାକୁ ନିଶ୍ଛିଦ୍ର ସଂହତି । କିନ୍ତୁ ଘଟଣାପ୍ରବାହର ଏକତ୍ୱ କହିଲେ କି ପଦାର୍ଥ, ଆରିଷ୍ଟୋଟ୍ଲ କହିନାହାନ୍ତି କୋଉଠି । ତରଙ୍ଗ ମାତ୍ରକେ ଅସଂଖ୍ୟ ଗତିଶୀଳ ଜଳକଣାର ସମଷ୍ଟି । ଲକ୍ଷ୍ୟ ହୁଏତ ଏକାଗ୍ର, ଅସ୍ତିତ୍ୱ କିନ୍ତୁ ବିବିଧ । ପଣ୍ଡିତ ଏ ରହସ୍ୟ ବୁଝାଇବାକୁ ଫିଜିକ୍ସ ଓ ଏଥିକ୍ସରୁ ଦାୟିକା ଦେଇଚନ୍ତି । ମାତ୍ର ମୋ ବିବେଚନାରେ, ସେ ଚେଷ୍ଟା ଅପଚେଷ୍ଟା । ସେହିପରି, ଦୃଶ୍ୟ ଓ ଅଙ୍କର ସଂହତିକୁ କହିଚି ଇଉନିଟି, ମାତ୍ର ଆରିଷ୍ଟୋଟ୍ଲ ଟ୍ର୍ୟାଜିଡିର ଅବୟବକୁ ଚିହ୍ନଟକରିଚନ୍ତି : ପ୍ରୋଲଗ୍ ବା ପୂର୍ବରଙ୍ଗ (କୋରସ୍ ଗୀତହେବା ପୂର୍ବରୁ ସଂକ୍ଷିପ୍ତଭାଷଣ), ଏପିସୋଡ୍ (ଅଣୁକାହାଣୀ), ଏକ୍‌ସୋଡ୍ (ଉପସଂହାର), ପୁଣି ପ୍ୟାରୋଡ୍ (କୋରସ୍‌ଗାୟକ ମଞ୍ଚର ଦୁଇଡେଣାରୁ ପଶିଆସି ଆବୃତ୍ତିକରିବେ ଯୋଉ ପ୍ରଥମ ଶ୍ଳୋକ) ଏବଂ ଷ୍ଟାସିମନ୍ (ପାରୋଡ୍ ଉତାରୁ କୋରସ୍) । ଏଗୁଡ଼ିକର ପାରସ୍ପରିକ ସଙ୍ଗତି ହୋଇପାରେ ଅବୟବର ଇଉନିଟି, କାହିଁକିନା, ଟ୍ର୍ୟାଜିଡି ମାତ୍ରକେ ବିନା କୋରସ୍‌ରେ ଚାଲିବନାହିଁ । ଆରିଷ୍ଟୋଟ୍ଲଙ୍କ ସଂହତିବୋଧ ତେଣୁ ଜୀବବିଦ୍ୟାରୁ ଗୃହୀତ ସମଗ୍ର ସହିତ ଅଂଶଗୁଡ଼ିକର ସଂହତି, ସ୍ଟ୍ରକ୍ଚର୍‌ୟାଲ୍ ଇଉନିଟି । ସଙ୍ଗୀତ ସହିତ ଆବୃତ୍ତି,ଆବୃତ୍ତି ସହିତ ସଂଳାପର ଯାନ୍ତ୍ରିକ ଇଉନିଟି । ଏ ଅନୁଶାସନ କିନ୍ତୁ ଲକ୍ଷ୍ମଣରେଖା, ଯା ଗଠିତକରେ ନାଟ୍ୟକାରର ସର୍ଜନାପରିଧି । ଏ ଅନୁଶାସନକୁ ଅସ୍ୱୀକାରକରି ସେକ୍ସପିୟର୍ ଲେଖିଚନ୍ତି ଟ୍ର୍ୟାଜିଡି ।

ତେବେ, ଆରିଷ୍ଟୋଟ୍ଲଙ୍କ *tragodia,* ଇଂରେଜୀ ଟ୍ର୍ୟାଜିଡି ନୁହେଁ । ଗ୍ରୀକ୍ ନାଟ୍ୟକଳା ଓ ମଞ୍ଚପ୍ରକରଣ ବିଷୟରେ ଗବେଷଣା କରିଚନ୍ତି କେବଳ,ଏବଂ ସେଇ ଜ୍ଞାନରୁ ତିଆରିକରିଚନ୍ତି ତତ୍ତ୍ୱସଂହିତା । ତାକୁ ମେଧାବୀର ଅନୁଚିନ୍ତନ ନକହି ଅଭିଜ୍ଞତାଲବ୍ଧ ସାଧାରଣ ସୂତ୍ର କହିବ ସମୀଚୀନ । ଆରିଷ୍ଟୋଟ୍ଲଙ୍କ ତିରୋଧାନ ଉତାରୁ ଶିଷ୍ୟ ଥିୟଫ୍ରାଷ୍ଟସ୍ ତାଙ୍କ ସ୍ଥଳାଭିଷିକ୍ତ ହୋଇଚନ୍ତି ଲାଇସିୟମ୍‌ରେ, ମାତ୍ର ଖ୍ରୀଷ୍ଟପୂର୍ବ ତୃତୀୟଶତକ ବେଳକୁ ମ୍ଳାନ ହୋଇଯାଇଚି ଆରିଷ୍ଟୋଟ୍ଲୀୟ କର୍ତ୍ତୃତ୍ୱ । ଜ୍ଞାନଚର୍ଚ୍ଚା କ୍ଷେତ୍ରରେ ଘଟିଚି ଭୂଇଁଫୋଡ଼ଙ୍କ ଅଭ୍ୟୁଦୟ ଏବଂ ଫିଲଜଫିରୁ ବିଜ୍ଞାନ ହୋଇଯାଇଚି ଅଲଗା । ମନନଜଗତ୍ ଉପରେ ଏଣିକି ଆଧିପତ୍ୟ କରିଚନ୍ତି ବିଶେଷଜ୍ଞ । ଫଳତଃ, ଜ୍ଞାନ କ୍ରମଶଃ ପରିଣତହୋଇଚି ବିକ୍ରୟଯୋଗ୍ୟ ପଣ୍ୟ; ତାର ସାମାଜିକ ବଣ୍ଟନ ଗଣତାନ୍ତ୍ରିକ ହେବା ସମ୍ଭବପର ନୁହେଁ, କାହିଁକିନା, ବଜାର ହୁଏ ଯଦି ଜ୍ଞାନର ଅଭିଭାବକ, ବଜାରରେ ଅଂଶଗ୍ରହଣକରିବା ନିର୍ଦ୍ଧନ ନିରକ୍ଷର ପକ୍ଷରେ ବାମନର ଚନ୍ଦ୍ରସ୍ପର୍ଶାଭିଳାଷ ।

* * * * * *

ଆରିଷ୍ଟୋଟ୍ଲଙ୍କ କାବ୍ୟତତ୍ତ୍ୱକୁ ସାଂପ୍ରତିକ ନିରିଖରେ ଦେଖିବା କିନ୍ତୁ ଅନୁଚିତ, କାହିଁକିନା, ଯୋଉ ଟ୍ର୍ୟାଜିଡି ବିଷୟରେ ଆଲୋଚନା କରିଚନ୍ତି, ତା ପରବର୍ତ୍ତୀ କାଳରେ ରଚିତ ଇଉରୋପୀୟ ନାଟକ ନୁହେଁ; କାହିଁକିନା ଗ୍ରୀସ୍‌ରେ ରଚିତ ନାଟକର ଗଠନଶୈଳୀ ଥିଲା ଧରାବନ୍ଧା, ଗଣ୍ଡି ବାହାରକୁ ଯିବା ସ୍ୱାଧୀନତା ନାଟ୍ୟକାରର ଥିଲା ସାଧାତୀତ; ଆରିଷ୍ଟୋଟ୍ଲ ତେଣୁ ପିଟି ଅ୍ୟାଣ୍ଡ୍ ଫିୟର୍ ବା କ୍ୟାଥାର୍‌ସିସ୍ ଭଳି ଆଇଡିଆ, ଡାକ୍ତର ପ୍ରେସ୍‌କ୍ରାଇବ୍ କଲାଭଳି, ଅନୁଜ୍ଞା ଆକାରରେ ପ୍ରଚାର କରିଚନ୍ତି । ସମ୍ଭବତଃ ଦରକାର ଥିଲା, କାହିଁକିନା, ଖ୍ରୀଷ୍ଟପୂର୍ବ ୪୦୦ ବେଳକୁ ଗ୍ରୀସ୍‌ରେ ନାଟକର ଫଲ୍ଗୁଧାରା ପ୍ରାୟ ବାଟ ହଜାଇ ସାରିଥିଲା ମରୁବାଲିରେ । ଅଥଚ ନାଟ୍ୟାଭିନୟ ସହିତ ଗ୍ରୀସ୍‌ର ସମ୍ପର୍କ ଏତେ ନିବିଡ଼ ଯେ, 'ଟ୍ର୍ୟାଜିଡି'ର ଆକ୍ଷରିକ ଅର୍ଥ, ଇଂରେଜୀରେ ଲେଖାଯାଇଛି, goat song । ହୁଏତ ଛେଳିରଖୁଆଳ ବିଲଖାଲରେ ଗୀତ ଛଳରେ ଯୋଉ ଆଖ୍ୟାନ ଶୁଣାଉଥିଲେ, ତାକୁ ହିଁ ନାଟକ କରିଥିଲା ଉପଜୀବ୍ୟ । ଛେଳିରଖୁଆଳ କାହିଁକି ଗାଉଥିଲେ ନା, ମଦୋନ୍ମତ୍ତ ଦେବତା ଦିଓନିସସ୍‌ଙ୍କ ପାଖରେ ଛେଳିମେଣ୍ଢା ବଳି ପଡୁଥିଲେ ଯେତେବେଳେ, ଦଳଦଳ ହୋଇ କୋରସ୍ ଗାଇବା ଥିଲା ଲୋକପ୍ରିୟ ପ୍ରଥା । ଅମାର୍ଜିତ ସେଇ ନୀରସ ଆକାର ଯେ ଇସ୍‌କାଇଲସ୍, ସୋଫୋକ୍ଲ୍ସ୍ ଓ ଇଉରିପିଦିଜ୍‌ଙ୍କ ହାତରେ ଧାରଣ କରିଚି ମହତ ଶିଳ୍ପକର୍ମର ରୂପରେଖ, ଆରିଷ୍ଟୋଟ୍ଲଙ୍କ ବିଧାନ ତା ପାଇଁ କମ୍ ଦାୟୀ ନୁହେଁ । କାହିଁକିନା, ସେଇ ପ୍ରଭାବରେ ଟ୍ର୍ୟାଜିଡି ହୋଇଯାଇଚି ପ୍ରତିବାଦ; ଦୁଃଖ ଯନ୍ତ୍ରଣା ଶୋକ ଦୁର୍ଦ୍ଦଶା ମରଣ, ଉତ୍ସ ସ୍ୱୟଂ ଈଶ୍ୱର ହେଲେସୁଦ୍ଧା, ଯଦି କର୍ମାର୍ଜିତ

ନୁହେଁ, ଟ୍ର୍ୟାଜିଡି କରିଦେଇଚି ତାକୁ ଆତ୍ମାର ଆର୍ତ୍ତନାଦ, ଯା ଉଦ୍ରେକକରେ ମହତ୍ ଅନୁକମ୍ପା ଓ ଭୟଙ୍କର ଆଶଙ୍କା, ଯେପରି କ୍ରସ୍ ଉପରୁ ମୃତ୍ୟୁପଥ ଯାତ୍ରୀ ଯୀଶୁଙ୍କ ଆର୍ତ୍ତନାଦ । ଅର୍ଥାତ୍, ଖାଲି ଗ୍ରୀକ୍ ନାଟ୍ୟକାର ନୁହେଁ, ବାଇବ୍ଲ ର ଗସ୍‌ପେଲ୍ ଲେଖିଛନ୍ତି ଯୋଉ ଗ୍ରୀକ୍‌ପଣ୍ଡିତ, ଆରିଷ୍ଟୋଟ୍ଲଙ୍କ ପ୍ରଭାବ ସେମାନଙ୍କ ଉପରେ ମଧ୍ୟ ଯଥାରୀତି ଆମୋଘ ।

ଉପସଂହାର ମନେହୋଇପାରେ ଅତିସରଳୀକରଣ; ମାତ୍ର କଥାଗୁଡ଼ାକ କହିଚନ୍ତି ଜଗଦ୍‌ବିଦ୍ୟାତ ଅନେକ ବିଦ୍ୱାନ୍, ଏବଂ ବହିର ସଂକୀର୍ଣ୍ଣ କଳେବର ଏ ପ୍ରସଙ୍ଗର ବିଶଦ ଆଲୋଚନା ସକାଶେ ପ୍ରତିବନ୍ଧକ । ମୋଟ୍ କଥା,ଆରିଷ୍ଟୋଟ୍ଲଙ୍କୁ ଗୁରୁ ପ୍ଲାଟୋଙ୍କ ଠାରୁ ଅଲଗାକରି ବୁଝିହେବନାହିଁ, କାହିଁକିନା, ଯୋଉ ମେଟାଫିଜିକ୍ସକୁ କାଣ୍ଡଜ୍ଞାନ କହୁଛୁ, ଖ୍ରୀଷ୍ଟପୂର୍ବ ପଞ୍ଚମଶତକରେ ତା ସର୍ବସାଧାରଣ ବା ଇଉନିଭର୍ସାଲ୍ ବିବେଚିତ ହୋଇନଥାନ୍ତା ଯଦି ପ୍ଲାଟୋଙ୍କ ମୁଣ୍ଡରୁ ବାହାରି ନଥାନ୍ତା 'ଥିଯ଼ରି ଅବ୍ ଆଇଡିଆ', ଏବଂ ସେଇ ତତ୍ତ୍ୱରେ ଆରିଷ୍ଟୋଟ୍ଲ ଶିକ୍ଷିତହୋଇନଥାନ୍ତେ ଦୀର୍ଘ କୋଡ଼ିଏବର୍ଷ । ମାତ୍ର, 'ଆଇଡିଆ' ଇନ୍ଦ୍ରିୟଗ୍ରାହ୍ୟ ନୁହେଁ, ତାର ଧ୍ୟେୟବସ୍ତୁ ମଧ୍ୟ ପରିବର୍ତ୍ତନର ଅଧୀନ ନୁହେଁ, ଅଥବା ନିର୍ଦ୍ଦିଷ୍ଟ ଏକକ ଆଧାରରେ ମଧ୍ୟ ଉପସ୍ଥିତ ନୁହେଁ । ସୋକ୍ରେଟିସ୍ ଯୋଉ କ୍ୟାଟିଗରିକୁ କରିଚନ୍ତି ଅନୁଶୀଳନର ବିଷୟ, ସେଗୁଡ଼ାକ ବିବାକ ବିମୂର୍ତ୍ତ; ଯେପରି, ଜଷ୍ଟିସ୍ କରେଜ୍ ଇକୋଆଲିଟି ହ୍ୟାପିନେସ୍ ଗୁଡ୍‌ନେସ୍ ଇତ୍ୟାଦି । ପ୍ଲାଟୋ ଡାୟଲଗ୍‌ର ନାୟକ କରିଚନ୍ତି ସୋକ୍ରେଟିସ୍‌ଙ୍କୁ, କିନ୍ତୁ ତାଙ୍କ ମୁହଁରେ କୁହାଇଚନ୍ତି ଆପଣା ଆଇଡିଆ । ପାଶ୍ଚାତ୍ୟ ଦର୍ଶନପରମ୍ପରାରେ ସେଇ ବକ୍ତବ୍ୟର ମେଧାବୀ ପରିଚୟ 'ଥିଯ଼ରି ଅବ୍ ଆଇଡିଆ' । ସୋକ୍ରେଟିସ୍‌ଙ୍କ ସାମାଜିକ/ ଲୌକିକ କ୍ୟାଟିଗରି ଯେତେବେଳେ ପ୍ଲାଟୋଙ୍କ ହାତରେ 'ଆଇଡିଆ' ରୂପ ପରିଗ୍ରହକରେ, ସ୍ୱଭାବ ହୋଇଯାଏ ଅଲୌକିକ । ଇନ୍ଦ୍ରିୟସଂବେଦନ ଆଉ ଠାବ କରିପାରେନା ପ୍ରମେୟ ଗୁଡ଼ିକୁ । ଚେତନାର ପରିସରକୁ ପ୍ରମେୟକୁ ଆଣିପାରେ ଏକମାତ୍ର ଗଭୀର ମନନ (ଧ୍ୟାନ); ଅର୍ଥାତ୍, ମେଟାଫିଜିକ୍ସ । ଅନ୍ୟ ଶବ୍ଦରେ, ଯୋଉ ରିଆଲିଟି ବଦଳିଯାଉଚି ଅନୁକ୍ଷଣ, ଅସ୍ଥିର ଅନିତ୍ୟ ସେଇ ବାସ୍ତବ, ପ୍ଲାଟୋଙ୍କୁ ସନ୍ତୁଷ୍ଟକରିନାହିଁ; ଖୋଜିଚନ୍ତି ସ୍ଥିରବିନ୍ଦୁ, still centre । ସ୍ଥିରବିନ୍ଦୁ କିନ୍ତୁ ପାର୍ଥିବ ପଦାର୍ଥ ନୁହେଁ; ଆଇଡିଆ । ତାକୁ ବ୍ୟକ୍ତକରିବାକୁ ଭାଷା ମଧ୍ୟ ଅକ୍ଷମ । କାହିଁକିନା, ଭାଷା ପ୍ରକାଶକରେ ପ୍ରାତ୍ୟହିକ ଜୀବନଯାତ୍ରାର କୋଳାହଳମୟ ଅଭିଜ୍ଞତାକୁ; ତା ବାହାରେ ଯୋଉ ଅଭିଜ୍ଞତା, ତା ସକାଶେ ତିଆରିହୋଇନାହିଁ ଭାଷା, ଖ୍ରୀଷ୍ଟପୂର୍ବ ପଞ୍ଚମଶତକ ଗ୍ରୀସ୍‌ରେ । ସେଥିପାଇଁ ସବୁ ଆଇଡିଆର ଏକମାତ୍ର ଉତ୍ସ ଯୋଉ ଈଶ୍ୱର, ତାଙ୍କୁ ପ୍ରକଟ କରିପାରିନାହିଁ ଭାଷା, ପ୍ଲାଟୋ ତେଣୁ ଛିଡ଼ାହୋଇଚନ୍ତି ଫିଲଜଫି ଆଉ

ରିଲିଜନ୍ସ ମଝିରେ । ସୋକ୍ରେଟିଜ୍ ମଧ୍ୟ ଇହଲୋକରେ ସନ୍ତୁଷ୍ଟ ନୁହେଁ; କଳ୍ପନାକରିଚନ୍ତି ପରଲୋକ । ପରଲୋକ କିନ୍ତୁ ତାଙ୍କପାଇଁ ଆଦୌ ଆଇଡିଆ ନୁହେଁ, ସ୍ଥାନବିଶେଷ ।

ଯୋଉଠି ଅଛୁଁ, ଯେମିତି ଅଛୁଁ, ସେଥିରୁ ଯଦି ତୃପ୍ତି ନପାଉଁ, ବସ୍ତୁଜଗତ ପ୍ରତିଭାତ ହେବ ଅ–ବସ୍ତୁ, ଯା ପ୍ଲାଟୋଙ୍କ ଉପଲବ୍ଧିର ବିଶେଷ ଲକ୍ଷଣ । କିନ୍ତୁ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁଜଗତ୍ ସେଠି ମାୟା କି ଭ୍ରାନ୍ତି ନୁହେଁ; ଅପୂର୍ଣ୍ଣତା କେବଳ । ପୂର୍ଣ୍ଣତା ଦେଇପାରେ ଆଇଡିଆ, ଯା ବିଶେଷ ନୁହେଁ, ସର୍ବଜନୀନ । ଏଇ ଅତୃପ୍ତି ମଧ୍ୟ ସର୍ବଜନୀନ ଯେହେତୁ ପୂର୍ଣ୍ଣତାର ଅନ୍ୱେଷଣ ସର୍ବକାଳରେ ସର୍ବଜନୀନ । ଦର୍ଶନବିଦ୍ୟାର ଜଗତକୁ ପ୍ଲାଟୋଙ୍କ ଏ ଅବଦାନ ଖାଲି ଯୁଗାନ୍ତକାରୀ ନୁହେଁ, ପରବର୍ତ୍ତୀ କୋଉହେଲେ ଭାବୁକ ଅସ୍ୱୀକାର କରିପାରିନାହିଁ ଏ ଉପଲବ୍ଧିକୁ ଓ ତାକୁ ଗଠିତକରୁଥିବା ମନନର ଭୂମିକାକୁ । ସଂସାର ଅନିତ୍ୟ, କିନ୍ତୁ ତା ପ୍ରାକୃତିକ ନିୟମ; ତୃପ୍ତି–ଅତୃପ୍ତି ତେଣୁ ଅବାନ୍ତର । ମାତ୍ର ସଂସାର ଯେହେତୁ ମନନରେ ପ୍ରତିଭାତହୁଏ ଅସଂପୂର୍ଣ୍ଣ ଓ ଖଣ୍ଡିତ, ସମଗ୍ରସହିତ ଅଂଶର ଏ ଅସଦ୍‌ଭାବ, ପ୍ରଜ୍ଞାର ପୂଜାରୀ ଫିଲଜଫର୍‌କୁ କରେ ବିଷଣ୍ଣ । ପ୍ଲାଟୋ କିନ୍ତୁ ବିଶ୍ୱାସକରନ୍ତି ପୂର୍ଣ୍ଣତାରେ, ଏବଂ ସେଥିପାଇଁ, ପ୍ରଶୟ ଦେଇନାହାନ୍ତି ଆତ୍ମଖଣ୍ଡନକୁ । ସନ୍ନ୍ୟାସ ତାଙ୍କ ଅଭିପ୍ରେତ ନୁହେଁ; ଇଉଟୋପିଆ ସେଥିପାଇଁ ପ୍ରବଳପ୍ରତାପୀ ଏକ ଆଇଡିଆ । ଯା ନାହିଁ, ତା ହୋଇପାରେ ଏବଂ ହେବ; ଯା ଇନ୍ଦ୍ରିୟଗୋଚର ନୁହେଁ, ତା ମନନରେ ଭାସ୍ୱର – ଏପରି ଏକ ବୈପ୍ଲବିକ ଅବବୋଧ, ହୃଦୟରେ ଯା ଆଶାକୁ ରଖିପାରେ ଚିର–ସମୁଜ୍ଜ୍ୱଳ, ଏବଂ ସେଇ ସୂତ୍ରରେ, ହୋଇପାରେ ଇତିହାସର ଅମୋଘ ପ୍ରେରଣା । ଏଗୁଡ଼ାକ କିନ୍ତୁ କମନ୍‌ସେନ୍ସ ବା କାଣ୍ଡଜ୍ଞାନ ନୁହେଁ । କାଣ୍ଡଜ୍ଞାନ ନୁହେଁ, କାହିଁକିନା, ଆଇଡିଆ ସଂସାରକୁ ଅସ୍ୱୀକାର କରୁନାହିଁ, ବରଂ ତା ଭିତରକୁ ସଞ୍ଚାରିତକରୁଚି, ସୋକ୍ରେଟିଜ୍ ଯାହାକୁ ଭାବିଥିଲେ ଜଷ୍ଟିସ୍, ସଂଯମ, ସୌନ୍ଦର୍ଯ୍ୟ । ଏକାଧାରରେ ନୈତିକ ଓ ନାନ୍ଦନିକ ଉପସର୍ଗ, ଯା ଅବିଚଳ ଓ ଚିରସ୍ଥାୟୀ; ପରିବର୍ତ୍ତନର ଅଧୀନ ନୁହେଁ ଅନିତ୍ୟତା ମଝିରେ ନିତ୍ୟର ସଂଧାନ, ଅଥଚ ଭାରତୀୟ ଦର୍ଶନର 'ଆଧ୍ୟାତ୍ମିକତା' ନୁହେଁ । କାହିଁକିନା, ପ୍ଲାଟୋଙ୍କ ଦର୍ଶନଚିନ୍ତାରେ 'ଅପର'ର ପ୍ରତ୍ୟୟ ସ୍ଥାନପାଇନାହିଁ; ଯା ସ୍ଥାନପାଇଚି, ତାକୁ ଭାବୁକ କହିଚନ୍ତି 'ଈଶ୍ୱର', ଗଡ୍ । ଏ ଗଡ୍ ପୁଣି ଆରିଷ୍ଟୋଟ୍‌ଲଙ୍କ ଭଗବାନ; ଅର୍ଥାତ୍ ଭଗବାନ୍ ଆରିଷ୍ଟୋଟ୍‌ଲଙ୍କ ମୌଳିକ ଉପଲବ୍ଧି ନୁହେଁ । ଉପନିଷଦ୍ ଏ 'ସତ୍ୟ'କୁ କହିଚି ଅପାର୍ଥିବ, କାହିଁକିନା, ଜଗତ୍‌ରେ ତାର ଅନୁରୂପ ସତ୍ତା ଅନୁପସ୍ଥିତ । ସେଠି ମଧ୍ୟ ଭାଷା ପ୍ରକାଶ କରିପାରିନାହିଁ ସତ୍ୟର ସ୍ୱରୂପ । କାହିଁକିନା, ଅଜ୍ଞେୟର ଧାରଣା ମିଳିପାରେ କେବଳ ଜ୍ଞାତ ତଥ୍ୟରୁ । ଗ୍ରୀକ୍‌ଦର୍ଶନରେ ଅବଶ୍ୟ ମଙ୍ଗଳ ଓ ଈଶ୍ୱର ସମାର୍ଥବୋଧକ; ପୁଣି ମଙ୍ଗଳ ଓ ଫ୍ରିଡମ୍ ପରସ୍ପର ସମୀପବର୍ତ୍ତୀ । ଫ୍ରିଡମ୍

ସେଠି ବାହ୍ୟ / ପରନିର୍ଭରତାରୁ ମୁକ୍ତି, ଯେପରି 'ମନ ତୋହର ନିଜ ଗୁରୁ' । ସୁଖ-ଦୁଃଖ ଊର୍ଦ୍ଧ୍ୱରେ, କାହିଁକିନା, ସୁଖ ହେଉ କି ଦୁଃଖ, ବାହ୍ୟ ପ୍ରରୋଚନା ଉପରେ ନିର୍ଭରଶୀଳ, ନିଜେ ନିଜର କାରଣ ନୁହେଁ । ଏଇ ଅବବୋଧକୁ *ଇଉଦିମିଆନ୍ ଏଥିକ୍ସ*ରେ ବ୍ୟାଖ୍ୟାକରିଚନ୍ତି ଆରିଷ୍ଟୋଟ୍ଲ : ଭଗବାନ ହେଲେ One who is self-sufficient, can have no need of the services of others, nor of their affection, nor of social life, since he is capable of living alone. This is especially evident in the case of God. Clearly, since he is in need of nothing, God cannot have need of friends, nor will he have any । ତେଣୁ, ପ୍ଲାଟୋଙ୍କ ପାଇଁ ଯା ଥିଲା ଆଇଡିଆ, ଆରିଷ୍ଟୋଟ୍ଲଙ୍କ ହାତରେ ପଡ଼ି ହୋଇଗଲା ଥିୟଲଜି । ଭଗବାନ୍ ହୋଇଗଲେ deity ।

ଜଗତ୍‌କୁ ତୁଚ୍ଛ ଭୂତସ୍ଥିତିରୁ ଉପରକୁ ଉଠାଇଆଣି ପ୍ଲାଟୋ ସ୍ଥାନଦେଇଥିଲେ ମନନର ଊର୍ଦ୍ଧ୍ୱଲୋକରେ, ଏବଂ ସେଇ ଭାବର ସଂପ୍ରସାରଣରେ, ଜଗତ ମନେହୋଇଚି 'ହୋଇଉଠୁଥିବା' ସତ୍ତା । ଭଗବାନ୍ 'ହୋଇଉଠନ୍ତି ନାହିଁ', ଭଗବାନ୍ ନିତ୍ୟସତ୍ତା । ସିଏ କାହିଁକି ଏକାକୀ ନିତ୍ୟ ଓ ଜଗତ୍ ଅନିତ୍ୟ – ଏ ପ୍ରଶ୍ନର ଉତ୍ତର ନିଜେ ଦେଇନାହାନ୍ତି କି ଆଉକେହି ଦେଇପାରିନାହାନ୍ତି । ଯୁକ୍ତି କାମଦେଇନାହିଁ । ଏଥିରୁ ମନେହେବା ସଙ୍ଗତ ଯେ ଜଗତ୍‌ସୃଷ୍ଟି ନନ୍-ର୍‌ୟାସନାଲ୍ । କିନ୍ତୁ ହୋଇଉଠିବା (=ବିକମିଙ୍ଗ୍) ଧାରଣାଟା ର୍‌ୟାସନାଲ୍ । ସେଇ ହୋଇଉଠିବା ପ୍ରକ୍ରିୟା ଭିତରଦେଇ ମଣିଷ ଚେଷ୍ଟାକରୁଚି ସୃଷ୍ଟିର ବୈଚିତ୍ର୍ୟ ଓ ବିସ୍ମୟକୁ ଯୁକ୍ତିଗ୍ରାହ୍ୟ କରିବାକୁ । ଏବଂ ସେ ଉଦ୍ୟମ ମାନବେତିହାସରୁ ରହିଚି ଅଚ୍ଛେଦ୍ୟ । କିନ୍ତୁ *ତିମେଅସ୍ ଡାୟଲଗ୍*ରେ ପ୍ଲାଟୋ କହିଚନ୍ତି : Let us state the cause wherefor he who constructed it *did* construct Becoming and the universe । କାରଣ ମନେହୋଇଚି, he was good, and in one that is good no envy of anything else arises. Being devoid of envy, then, he desired that everything should be so far as possible like himself. This, then, we shall be wholly right in accepting from wise men as being above all the sovereign originating principle of Becoming and the cosmos । ସୃଷ୍ଟିର କାରଣ ଓ 'ହୋଇଉଠିବା'ର କାରଣ, ମଙ୍ଗଳ (ଗୁଡ୍)ରେ ଉପନୀତହେବା ଯେହେତୁ ତା ଦୈବୀ ପ୍ରକଳ୍ପ, ଈର୍ଷାଦ୍ୱେଷଶୂନ୍ୟ ସେଇ ମଙ୍ଗଳ ହିଁ ପ୍ଲାଟୋଙ୍କ ଭଗବାନ୍, ଆଇଡିଆର ଆଇଡିଆ । ସେ ମଙ୍ଗଳର ଅଭିପ୍ରାୟ, ସୃଷ୍ଟଜଗଦ୍ ହେବାକୁ ଉଦ୍ୟମକରିବ ମଙ୍ଗଳର ତୁଲ୍ୟମୂଲ୍ୟ । 'ହୋଇଉଠିବା' ତେଣୁ ଡାର୍‌ଉଇନ୍-ପ୍ରବର୍ତ୍ତିତ ଜୀବକୋଷର ମିଉଟେସନ୍ ନୁହେଁ, ସର୍ବାଂଶରେ ଇଣ୍ଟେଲେକ୍‌ଚୁଆଲ୍

ଆକ୍ଟିଭିଟି, ଯା ବଳରେ ବିବର୍ତ୍ତିତହୋଇ ମଣିଷ ହେବ ଦେବତା । ତତ୍ତ୍ୱପ୍ରକରଣର ଏ ଅଭିନବତ୍ୱ ଆସିଚି ଆରିଷ୍ଟୋଟ୍ଲଙ୍କ ଈଶ୍ୱରତତ୍ତ୍ୱରୁ ଅବଶ୍ୟ । ପ୍ଲାଟୋ ଯେମିତି 'ଆଇଡିଆ' କାଢ଼ିଚନ୍ତି, ସେମିତି କାଢ଼ିଚନ୍ତି ଆତ୍ମା(ସୋଅଲ୍) । ଆଇଡିଆ ଶୁଦ୍ଧ ମନନର ଉପଜୀବ୍ୟ ଏବଂ ନିତ୍ୟବସ୍ତୁ । ଆତ୍ମା କିନ୍ତୁ ସ୍ୱୟଂ ମନନକ୍ଷମ ସତ୍ତା (ବିଇଙ୍ଗ୍), ଚିରଅମ୍ଳାନ ଚେତନା । ଆଇଡିଆ ତେଣୁ ସର୍ବଜନୀନ ନିଷ୍କର୍ଷ, ଆତ୍ମା କିନ୍ତୁ ନିର୍ଦ୍ଦିଷ୍ଟ ଓ ବିଶେଷ । କେମିତି ଅବା ହେବ ଉଭୟର ଅନ୍ୱୟ ? ପ୍ଲାଟୋଙ୍କ ଧାରଣା, ଆତ୍ମବିକାଶର ଚରମ ପର୍ଯ୍ୟାୟରେ ଆତ୍ମା ଓ ଆଇଡିଆ ମଧ୍ୟସ୍ଥ ପ୍ରଭେଦ ବିଗଳିତ ହୋଇଯାଏ; ଆତ୍ମା ଆଉ ବାହ୍ୟ ପ୍ରରୋଚନା ଉପରେ ନିର୍ଭରକରେନା, ମଙ୍ଗଳ ପରି ହୁଏ ସ୍ୱୟଂସମ୍ପୂର୍ଣ୍ଣ । କାହିଁକିନା, ଭୂତଗତ ଏଇ ଜଗତ୍ ହୋଇଛି so designed that all its active and all its passive processes occurred within itself and by its own agency, since he that constructed it deemed that it would be better if it were self-sufficient rather than in need of other things । ମଙ୍ଗଳର ଉତ୍ସ ତେଣୁ ସ୍ୱୟଂ ମଙ୍ଗଳ । ସାଧକର ଅସ୍ତିତ୍ୱ ଓ ଉତ୍କର୍ଷ, କିମ୍ବା ଆନନ୍ଦ, ନିର୍ଭରକରେନା ଅନ୍ୟ କୋଉ ବାହ୍ୟ ପ୍ରକରଣ ଉପରେ । ସ୍ପଷ୍ଟତଃ, ସୋକ୍ରେଟିଜ୍, ଏଭଳି ସାଧାରଣ ସମସ୍ୟା ଭିତରକୁ ମୁଣ୍ଡ ପୂରାଇ ନାହାନ୍ତି; ଅନୁସନ୍ଧାନର ଏକମାତ୍ର ବିଷୟ ଥିଲା ଜୀବନଯାତ୍ରାରେ ନୈତିକତା ପ୍ରୟୋଗ । ପ୍ଲାଟୋ କିନ୍ତୁ ଆଇଡିଆ, ଆତ୍ମା ପ୍ରଭୃତି ଉପାଦାନ ସାହାଯ୍ୟରେ ସୋକ୍ରେଟିଜ୍ଙ୍କ ନୀତିବାଗୀଶତା, ଅର୍ଥାତ୍ ସଂଜ୍ଞାନିର୍ଦ୍ଧାରଣରେ ଲଜିକ୍ ପ୍ରୟୋଗକୁ, ରୂପାନ୍ତରିତ କରିଦେଇଚନ୍ତି ଆମୂଳଚୂଳ । ରୂପାନ୍ତରିତ ସେଇ ବିଦ୍ୟାର ଉପାଧି 'ମେଟାଫିଜିକ୍ସ' । କିନ୍ତୁ ମନନ ଯେତେବେଳେ ଆଧିଭୌତିକ, ମିସ୍ଟିସିଜ୍ମ ବା ରହସ୍ୟବାଦ ଅନୁପ୍ରବେଶକରିବା ଅବଧାରିତ, ଏବଂ ସେଇ ଦୁରୂହତା ବିଷୟରେ ସଚେତନ ଥିଲେ ବୋଲି, ଭାଷାର ପ୍ରକାଶସାମର୍ଥ୍ୟକୁ ମଧ୍ୟ ପ୍ରଶ୍ନକରିଚନ୍ତି ପ୍ଲାଟୋ । ଅର୍ଥାତ୍, ମେଟାଫିଜିକ୍ସ ଯୋଉ ସତ୍ୟକୁ ଉଦ୍‌ଘାଟନକରେ, ଆକାଶରେ ବିଦ୍ୟୁତ୍‌ଛଟା ପରି ତା ହଠାତ୍ ଆଲୋକଦର୍ଶନ । ସେ ଦର୍ଶନ ଲାଭକରିବାକୁ ମନନର କଠୋର ପରିଶୀଳନ ଯେମିତି ଜରୁରୀ, ମିତାଚାରୀ ନିରାଡ଼ମ୍ବର ଜୀବନଯାତ୍ରା ମଧ୍ୟ ସେମିତି । ସେଇ ହଠାତ୍-ଅବଲୋକନ ଚିହ୍ନାଇଦିଏ ଜୀବନରେ କଣ ନିତ୍ୟ, କଣ ଅନିତ୍ୟ, ଜଗତରେ କଣ ଅକ୍ଷୟ, କଣ କ୍ଷୟିଷ୍ଣୁ । ସେ ପରିଚୟ ପଞ୍ଚେନ୍ଦ୍ରିୟ ଦେଇପାରେନା, ଦେଇପାରେନା ସଂଜ୍ଞା କି ଗଣିତ । କିନ୍ତୁ ସେ ଅବଲୋକନ ଯେହେତୁ ଜୀବନଯାପନର ଆମୂଳ ପରିବର୍ତ୍ତନ, ମଙ୍ଗଳ ବା ଭଗବାନ୍ ଯଦି ନିଃସଙ୍ଗ କି ନିର୍ବିକାର, ସେଭଳି ପରିବର୍ତ୍ତନ ହେବ କେମିତି ସମ୍ଭବପର ? ମାତ୍ର ଆରିଷ୍ଟୋଟ୍ଲଙ୍କ ଭଗବାନ ମର୍ତ୍ତ୍ୟଲୋକରେ କଣ ଘଟୁଚି କି ନଘଟୁଚି, ସେ ବିଷୟରେ ଚିର-ଉଦାସୀନ । ଅଥଚ ପରିବର୍ତ୍ତନ ଯେ

ଘଟୁଚି, ନମାନି ଉପାୟ ନାହିଁ; ଏବଂ ଏକଥା ମଧ୍ୟ ନମାନି ଉପାୟନାହିଁ ଯେ ପରିବର୍ତ୍ତନ ରୂପାୟିତ କରୁଚି କେବଳ ଭଗବାନଙ୍କ ଉଦ୍ଦେଶ୍ୟ । ତା ହେଲେ ନିର୍ବିକାର ଓ ନିଃସଙ୍ଗ ଅବସ୍ଥାରେ, ଆରିଷ୍ଟୋଟ୍ଲଙ୍କ 'ପରମକାରଣ' ହେବେ କେମିତି ଭଗବାନ ? ଅନ୍ୟାନ୍ୟ କାରଣ ରହିଥିଲେ ସିନା ପରମକାରଣ ଭଳି ଧାରଣା ଆସିବ ମନକୁ ! ଘଟମାନ ଜଗତଠାରୁ ଭଗବାନଙ୍କ ଦୂରତ୍ୱ କି ଔଦାସୀନ୍ୟ ତାହେଲେ ଯୁକ୍ତିସଙ୍ଗତ ହେବନାହିଁ । କାହିଁକିନା, ବିଶ୍ୱଜଗଦ୍‌କୁ ମଙ୍ଗଳର ଆକର ଭାବିବା ମାନେ, ମନନ ଯେମିତି, ଇନ୍ଦ୍ରିୟସଂବେଦନ ସେମିତି, ଦାବିକରିବ ସମାନ ଗୁରୁତ୍ୱ । କାହିଁକିନା, ଇନ୍ଦ୍ରିୟସଂବେଦନ ବ୍ୟତିରେକେ ମନନ ହୋଇପାରେନା ସଚଳ । ଆଇଡିଆ କି ଆତ୍ମା ଆକାଶରୁ ଖସୁନାହିଁ, ଚିନ୍ତାରାଜ୍ୟରେ ଉଭୟଙ୍କ ଅବସ୍ଥିତି, ଏବଂ ଚିନ୍ତା ସମ୍ଭବହୁଏ କେବଳ ବସ୍ତୁସଂସ୍ପର୍ଶରେ; ଯେପରି, ସୂର୍ଯ୍ୟ ସହିତ ପୃଥିବୀର ସଂସ୍ପର୍ଶରୁ ଛାୟା କି ଆଲୁଅ । ଅର୍ଥାତ୍, ଆରିଷ୍ଟୋଟ୍ଲ ଯାହାକୁ ଏସେନ୍ସ କହୁଚନ୍ତି, ଧ୍ୟାନଲବ୍ଧ କୋଉ ଶୂନ୍ୟଗର୍ଭ ଜିନିଷ ନୁହେଁ, ତାର ବି ଆକାର-ପ୍ରକାର ରହିବ; ଅନ୍ୟଥା ହୋଇପାରେନା ବୋଧଗମ୍ୟ । ସେଥିପାଇଁ ଛାୟାର ବି ଅଛି ଆକାର-ପ୍ରକାର, ଯଦିଓ ତା ଇଉନିଭର୍ସାଲ୍, ଏବଂ ସେଇ ସୂତ୍ରରେ, ଆଇଡିଆ କି ଏସେନ୍ସ । ଏବଂ ଜଗତ୍ ଯଦି ଈଶ୍ୱରଙ୍କ ଛାୟା,ତେଣୁ ମଙ୍ଗଳମୟ, ତେବେ ପ୍ଲାଟୋ ଯୋଉ ଗୁମ୍ଫାର ରୂପକ ବ୍ୟବାହାର କରିଚନ୍ତି, ତା ମଧ୍ୟ ଏକ କଣ୍ଟ୍ରାଡିକ୍ସନ୍ । କାହିଁକିନା, ତା ଭିତରେ ଯିଏ ଅଛନ୍ତି, ଯେମିତି ଅଛନ୍ତି, ମଙ୍ଗଳର ଅନୁଶାସନ ସ୍ଥିରକରିଦେଇଚି ସେଇ ବ୍ୟବସ୍ଥା; ସେମାନଙ୍କୁ ସୂର୍ଯ୍ୟାଲୋକକୁ ଆଣି ମୁକ୍ତକରିବାକୁ ଚାହିଁବେ କାହିଁକି ପ୍ଲାଟୋ ? ଯଦି ଚାହିଁବେ, ତେବେ ଜଗତ୍ ମଙ୍ଗଳମୟ ନୁହେଁ କି 'ପରମ କାରଣ' ବୋଲି କିଛି ନାହିଁ । ତେଣୁ ମାନିବାକୁ ହେବ ଯେ ରିଆଲିଟି ଏକ ଦ୍ୱାନ୍ଦ୍ୱିକ (ଡାୟଲେକ୍‌ଟିକ୍ୟାଲ୍) 'ଆଇଡିଆ', ଏବଂ ସେଥିପାଇଁ , ଏକରୈଖିକ ନିଶୁଣି ନୁହେଁ ଯେ ସବାଉପର ପାହାଚରେ 'ତ୍ରିଗୁଣରଜ୍ଜୁ କରେ ଧରି/ମୃଗୀ ନଚାଏ ନରହରି'ର ଭୋଜବାଜି ଚାଲୁଥିବ !

ଓଲଟା ଏଇ କଥାଗୁଡ଼ାକ ଆରିଷ୍ଟୋଟ୍ଲ କହିନାହାନ୍ତି ଅବଶ୍ୟ; ମାତ୍ର ପ୍ଲାଟୋଙ୍କ ଭଳି ଯେହେତୁ ପରମାର୍ଥ-ସନ୍ଧାନୀ ନୁହେଁ, ବାହାରକରିଚନ୍ତି ସିଷ୍ଟେମ୍ । ସେ ସିଷ୍ଟେମ୍‌ରେ ଗଡ୍ କିଛି ଗଢ଼େନା କି ଭାଙ୍ଗେନା । କାହିଁକିନା, ଗଡ୍ ସ୍ୱୟଂସମ୍ପୂର୍ଣ୍ଣ । ଅନ୍ତର୍ନିହିତ ତାଡ଼ନାରୁ ତାକୁ ଯଦି କିଛି ଉତ୍ପନ୍ନକରିବାକୁ ପଡ଼େ, ସ୍ୱୟଂସମ୍ପୂର୍ଣ୍ଣତା ଆଇଡିଆ ତେବେ ମାଡ଼ଖାଇଯିବ, କାହିଁକିନା,ଉତ୍ପାଦନ ମାନେ ଅନ୍ୟ ଉପରେ ନିର୍ଭର । ଗଡ୍ କିନ୍ତୁ ଅନ୍‌ମୁଭ୍‌ଡ୍ ମୁଭର୍; ନିଜେ ହଲଚଲ ନ ହୋଇ ସବୁରକମ ଗତି (ମୋସନ୍)ର ହେତୁ । ତାହେଲେ, ବିଶ୍ୱସଂସାରରେ ତାଙ୍କ ଛଡ଼ା ଅନ୍ୟ ଜିନିଷଗୁଡ଼ାକ ଅଛି କାହିଁକି ? ଆଉ ଥିଲେ ମଧ୍ୟ,

ଦେବୋପମ ହେବା ଯାତ୍ରାରେ ଜମିନ୍-ଆସ୍‌ମାନ ଫରକ୍ ଘଟିବ କାହିଁକି ସହଯାତ୍ରୀଙ୍କ ଭିତରେ ? ଉତ୍ତରରେ ଆରିଷ୍ଟୋଟ୍ଲ କହିଚନ୍ତି, it is not necessary that everything that is possible should exist in actuality । ପୁଣି, it is possile for that which has a potency not to realise it ।

ଅନ୍ୟ ପକ୍ଷରେ, ଆରିଷ୍ଟୋଟ୍ଲ ଦେଖାଇଚନ୍ତି ଧାରାବାହିକତା ବା କଣ୍ଟିନିଉଟି, କାହିଁକିନା, ତେବେ ଯାଇ, ଜଗତ୍ ଯେ ପରିପୂର୍ଣ୍ଣ ଏକ ସ୍ଥିତି, ପ୍ଲାଟୋଙ୍କ ଏଇ ଧାରଣା ହୋଇପାରେ ପରିପୁଷ୍ଟ: Things are said to be continuous whenever there is one and the same limit of both wherein they overlap and which they possess in common । ଯା 'କମନ୍' ତା କେବଳ ପରିମାଣ : ରେଖା, ଆୟତନ, ଘନତ୍ୱ, ଗତିବେଗ (ସଂକ୍ଷେପରେ, କାଳ ଆଉ ସ୍ଥାନ) । ଏକାସାଙ୍ଗରେ ଛନ୍ଦିହୋଇ ପ୍ରସାରିତ ହେବାକୁ ବାଧ । କାହିଁକିନା, ସୃଷ୍ଟିର ଶୃଙ୍ଖଳା ସରଳରୈଖିକ ଏବଂ ତଳ-ଉପର କ୍ରମରେ ସ୍ତରବିଶିଷ୍ଟ; ଯେପରି, ଉଦ୍‌ଭିଦ ଉପରକୁ ପଶୁପକ୍ଷୀ, ତାଙ୍କ ଉପରକୁ ମଣିଷ । କିମ୍ବା ମଣିଷରସ୍ଥାନ; ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଅଥବା କାଳ, ସତ୍ୟ-ଦ୍ୱାପର-ତ୍ରେତା-କଳିଯୁଗ । ଭାରତରେ ଏ ବିନ୍ୟାସ ଖାଲି ପରିମାଣାତ୍ମକ ନୁହେଁ, ଗୁଣାଗୁଣ ବିଚାର ମଧ୍ୟ ରହିଚି । ମାତ୍ର ଆରିଷ୍ଟୋଟ୍ଲ ଗୁଣାଗୁଣ ବିଚାରରେ ନିଶ୍ଚିତ ନୁହେଁ; ଗୁଣଗୁଡ଼ାକ ଯେ ପରିମାଣ ଭଳି ପ୍ରଲମ୍ବିତ ଅଚ୍ଛେଦ୍ୟ ସିରିଜ୍, ସେକଥା ମଧ୍ୟ ଜୋର୍‌ଦେଇ କହିନାହାନ୍ତି । ହେଲେ ସୁଦ୍ଧା, ପ୍ରାକୃତିକ ଜଗତ ଯେ ଇତିହାସ ଭଳି ଧାରାବାହିକ -ଏଇ ପ୍ରତୀତି ତାଙ୍କରି ଅବଦାନ । ସେଇ ପ୍ରତୀତିରେ ରହିଚି ପାର୍ଥକ୍ୟ ଅବବୋଧ : ଶରୀରଗଠନ, ରହିବା-ଖାଇବା, ବୁଦ୍ଧିବିକାଶ, ଅନୁଭବସାମର୍ଥ୍ୟରେ ତାରତମ୍ୟ । ପାର୍ଥକ୍ୟ ପାଇଚନ୍ତି ପର୍ଯ୍ୟବେକ୍ଷଣରୁ, ମାତ୍ର ତଥ୍ୟକୁ ବ୍ୟବହାର କରିନାହାନ୍ତି ବର୍ଗୀକରଣ କାମରେ, ବରଂ ପ୍ରକୃତି ବା ନେଚର୍‌କୁ ଦେଖିଚନ୍ତି : passes so gradually from the inanimate to the animate that their continuity renders the boundary between them indistinguishable; and there is a middle kind that belongs to both orders. For plants come immediately after inanimate things; and plants differ from one another in the degree in which they appear to participate in life. For the class taken as a whole seems, in comparison with other bodies, to be clearly animate; but compared with animals to be inanimate. And the transition from plants to animals is continuous; for

one might question whether some marine forms are animals or plants, since many of them are attached to the rock and perish if they are separated from it । ଜୀବବିଦ୍ୟା ଆଲୋଚନା କରୁନାହାନ୍ତି ଆରିଷ୍ଟୋଟ୍ଲ; ଏ ପର୍ଯ୍ୟବେକ୍ଷଣ ତାଙ୍କ ପରାବିଦ୍ୟାର ଅନ୍ୟତମ ଭିତ୍ତିସ୍ତମ୍ଭ । ଜୀବପିଣ୍ଡ ଏଠି ଇନ୍ଦ୍ରିୟାନୁଭବ ନୁହେଁ, ଆଇଡିଆ । ଏବଂ ଯେହେତୁ ଆଇଡିଆ, ତାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ; ଅସରନ୍ତି ପ୍ରବାହ ଦୃଷ୍ଟ ଶରୀରରେ ବ୍ୟକ୍ତହୋଇଚି କେବଳ । ଅବଶ୍ୟ କ୍ରମାନ୍ୱୟରେ, ଯେପରି ଅଚେତନରୁ ସଚେତନ । ଏବଂ ସେଇ ଧାରାବାହିକତା ହିଁ 'ନେଚର୍' (ସ୍ୱଭାବ) । ଏବଂ ଅଚେତନରୁ ସଚେତନକୁ ଉତ୍ତରଣ ଯେହେତୁ ଧାରାବାହିକ, ପ୍ରକ୍ରିୟାରେ ନାହିଁ ଛେଦ କି ବିରତିବିନ୍ଦୁ; ରହିଚି ଖାଲି ଅଭିସରଣ ବା ଟ୍ରାନ୍‌ଜିସନ୍ । ଯେପରି, ସାମୁଦ୍ରିକ ଜୀବ ସିଲ୍ ଏକାବେଳକେ ଜଳ ଓ ସ୍ଥଳଚର, ବାଦୁଡ଼ି ଏକାବେଳକେ ପଶୁ ଆଉ ପକ୍ଷୀ । ଅର୍ଥାତ୍ ସଂପୂର୍ଣ୍ଣତା ଆହରଣକରିବା ଅଭିଯାତ୍ରାରେ ମଝିବାଟରେ ପହଞ୍ଚିଚନ୍ତି । ବିଚରଣକ୍ଷେତ୍ର ସେଥିପାଇଁ ଉଭୟ ପାଣି ଓ ମାଟି କିମ୍ୱା ଆକାଶ ଓ ପୃଥିବୀ । କେହିହେଲେ ଆପଣା ଜୀବନଟିକୁ ବଞ୍ଚୁନାହାନ୍ତି, ବୃହତ୍ତର ଏକ ଉତ୍ତରଣ ପ୍ରକ୍ରିୟାରେ *ଅଂଶଗ୍ରହଣକରୁଚନ୍ତି* ମାତ୍ର । କାହିଁକିନା, ସ୍ଥାନକାଳ ମାତ୍ରା (ଯେପରି, ଶରୀରଗଠନ, ଖାଦ୍ୟପେୟ, ବାସସ୍ଥଳି, ବୁଦ୍ଧିବିବେଚନା)କୁ ଅତିକ୍ରମକରି ବୃହତ୍ତର ଏକ ଲକ୍ଷ୍ୟକୁ ଜୀବନରେ ଉପଲବ୍ଧିକରିବା ସାମର୍ଥ୍ୟ ସ୍ଥାବରଜଙ୍ଗମ ସର୍ବବସ୍ତୁରେ ରହିଚି ଅନ୍ତର୍ଗୂଢ଼ । ସେଥିପାଇଁ, ନିହିତ ସମ୍ଭାବନାକୁ ଯିଏ ଯେତିକି ବାସ୍ତବାୟିତ କରିପାରିଚି ଜୀବନରେ, ତଦନୁସାରେ ଜଗତରେ ହୋଇଚି ତାର ଆପେକ୍ଷିକ ଅବସ୍ଥାନ, ଯେପରି, ସ୍ତନ୍ୟପାୟୀ ପ୍ରାଣୀଙ୍କ ଭିତରେ ଚତୁଷ୍ପଦରୁ ଦ୍ୱିପଦ, ଚତୁଷ୍ପଦ ବାନରରୁ ଦ୍ୱିପଦ ମାନବ ।

ଚେତନା ବିକାଶର ସମାନ୍ତରାଳ ତେଣୁ ଶରୀରଗଠନ, ଖାଦ୍ୟପେୟର ଧରଣ ଓ ବୁଦ୍ଧିର ଉପଯୋଗ । ଏଇଥିରୁ ବାହାରିଚି ଅରବିନ୍ଦଙ୍କ 'ଅତିମାନସ', କାହିଁକିନା, ମଣିଷକୁ ଭାବିଚନ୍ତି ବିକାଶପର୍ଯ୍ୟାୟରେ ଟ୍ର୍ୟାନ୍‌ଜିସନ୍, ମଧ୍ୟବର୍ତ୍ତୀ ପ୍ରାଣୀ । ଦିବ୍ୟଜୀବନରେ ଉପଗତ ହେବାକୁ ଦରକାର ତାକୁ ଅତିମାନସ ଚେତନା । ତାହେଲେ, ଏସେନ୍ସ ସବୁଠି ସମାନ, ଗଛରେ ଯେମିତି ଗାଈରେ ସେମିତି, ଜିରାଫ୍‌ରେ ଯେମିତି ଗେଣ୍ଡାରେ ସେମିତି, ମାଙ୍କଡ଼ରେ ଯେମିତି ମଣିଷରେ ସେମିତି । ପାର୍ଥକ୍ୟଗୁଡ଼ିକ ତେଣୁ କୃତ୍ରିମ; କିନ୍ତୁ ପାର୍ଥକ୍ୟ ଧାରଣା ଛଡ଼ା, ଭାଷା ପ୍ରକାଶ କରିପାରିବନାହିଁ ବକ୍ତବ୍ୟ; ଏବଂ ଭାଷା ଏକ ସାଧାରଣ ମାନସିକ ବିଭାବ ଯା ମନୁଷ୍ୟେତର ପ୍ରାଣୀ ପାଇନାହିଁ । ଭାଷା ସେଥିପାଇଁ 'ଆଇଡିଆ' ନୁହେଁ । କିନ୍ତୁ ସ୍ଥାବର-ଜଙ୍ଗମ ନିର୍ବିଶେଷରେ ସମସ୍ତେ କାହିଁକି ଦୌଡ଼ୁଚନ୍ତି ନିଜ ଛଡ଼ା ଆଉକିଛି ହେବାକୁ ? ଆରିଷ୍ଟୋଟ୍ଲଙ୍କ କସ୍‌ମୋଲଜି (=ସୃଷ୍ଟିତତ୍ତ୍ୱ) କହୁଚି, ସୃଷ୍ଟି ଯେହେତୁ

ଅପୂର୍ଣ୍ଣ କି ଖଣ୍ଡିତ ନୁହେଁ, ତା ଭିତରେ ଅପୂର୍ଣ୍ଣତାର ସ୍ଥାନ ନାହିଁ; ପ୍ରତ୍ୟେକ ସତ୍ତାକୁ ନିଜ ନିହିତ ସମ୍ଭାବନାର ଶୀର୍ଷବିନ୍ଦୁରେ ପହଞ୍ଚି ପୂର୍ଣ୍ଣତା ଲାଭକରିବାକୁ ପଡ଼ିବ । ସେଇ ତାର ଏକମାତ୍ର ଭବିତବ୍ୟ । ଅନ୍ୟଥା, ସୃଷ୍ଟି ଯିଏ ରଚନାକରିଚି, ତାକୁ 'ମଙ୍ଗଳ' ବା 'ପରିପୂର୍ଣ୍ଣ' କହିହେବ ନାହିଁ । ସୃଷ୍ଟିକର୍ତ୍ତା କିନ୍ତୁ ପ୍ଲାଟୋଙ୍କ ଦୃଷ୍ଟିରେ ଆଇଡିଆ, ଆରିଷ୍ଟୋଟ୍ଲଙ୍କ ଅବଲୋକନରେ ଅବଶ୍ୟ ଦେବତା (ଡେଇଟି), ମାତ୍ର ନିର୍ଗୁଣ । ନିର୍ଗୁଣ ସେଇ ଠାକୁର ଅଗତିର ଗତି । ଏବଂ ସେଥିପାଇଁ, କ୍ରମୋଚ୍ଚ ସୋପାନ-ବିନ୍ୟାସରେ ସାମୁଦ୍ରିକ ଗୁଳ୍ମକୁ ସବାତଳେ ରଖି, ମଣିଷକୁ ରଖିଚି ସବାଉପରେ । ରହିଚି ଏମିତି ଏଗାରଟି ସ୍ତର, ଏବଂ ସ୍ତରାନୁକ୍ରମକୁ ନିରୂପଣକରୁଚି powers of soul । ଏ ସୃଷ୍ଟିତତ୍ତ୍ୱକୁ ମାନିନେଲେ ଅତ୍ୟାଚାର, ଅନ୍ୟାୟ, ଦମନ, ପୀଡ଼ନ ଭଳି ନିତ୍ୟକଷଣ ମିଛ ହୋଇଯିବ, କାହିଁକିନା, ବ୍ୟବସ୍ଥାଟା ବିଧିର ବିଧାନ ! ସର୍ବୋପରି, ଗୋଳମାଳର କାରଣ ଆତ୍ମାର ସାମର୍ଥ୍ୟରେ ଏକାଦଶ ପ୍ରକାରଭେଦ ।

ମାତ୍ର ଅନ୍ୟ ଏକ ନିର୍ଦ୍ଧାରକକୁ ଚିହ୍ନଟକରିଚନ୍ତି ଆରିଷ୍ଟୋଟ୍ଲ, ଯା ଭଗବାନଙ୍କ ବ୍ୟତୀତ ବିବାକ ସ୍ଥାବର-ଜଙ୍ଗମକୁ କରିରଖିଚି ପରାଧୀନ, ଅଳ୍ପ-ବିସ୍ତର । ନାଁ ଦେଇଚନ୍ତି privation । ଆକ୍ଷରିକ ଅର୍ଥରେ ପ୍ରାଇଭେସନ୍, ବଞ୍ଚନାଜନିତ ଅଭାବ । ପରାବିଦ୍ୟାର ପରିଭାଷାରେ କିନ୍ତୁ, ନିହିତ ସମ୍ଭାବନାକୁ ଉପଲବ୍ଧିକରିବା ଅସାମର୍ଥ୍ୟରୁ ଜାତ ଅତୃପ୍ତି, ଯୋଉ ଅତୃପ୍ତିର ତାଡ଼ନାରୁ ଆରମ୍ଭ ମଣିଷର ଏଇ ସରଳରୈଖିକ ତୀର୍ଥଯାତ୍ରା । ପରମକାରଣ ଓ ଅବଶିଷ୍ଟ ଜାଗତିକ ସତ୍ତା ମଧ୍ୟବର୍ତ୍ତୀ ଆତ୍ମାର, ସାମର୍ଥ୍ୟ ଭେଦାଭେଦରେ, ସୋପାନାରୋହଣର ଶୋଭାଯାତ୍ରା । ସେଇ ଶୋଭାଯାତ୍ରା ଅନୁପ୍ରେରିତ କରିଚି ଆଲେକ୍‌ଜାଣ୍ଡାର୍ ପୋପ୍‌ଙ୍କୁ ଲେଖିବାକୁ -

Vast chain of being ! which from God began,
Natures aethereal, human, angel, man,
Beast, bird, fish, insect, what no eye can see
No glass can reach; from Infinite to thee,
From thee to nothing.
-On superior power's
Were we to press, inferior might on ours;
Or in the full creation leave a void,
Where, one step broken, the great scale's destroy'd;
From Nature's chain whatever link you strike,
Tenth, or tenthousandth, breaks the chain alike.

ଅର୍ଥାତ୍, ପଟୁଆର ଭିତରୁ ଗୋଟାଏ କିଛି ଯଦି ଗୋଠଖଣ୍ଡିଆ ହୋଇ ବାହାରିପଡ୍ବେ, ବିଶ୍ୱସଂସାର ହରାଇ ବସିବ ସଂହତି, ଜୀବ-ନିର୍ଜୀବ ହରାଇବସିବେ ଉତ୍ତରଣର ସମ୍ଭାବନା । ଏକ୍ଷଣି, ଏ ଧ୍ରୁବପଦ ବାନ୍ଧିଦେଇଚି ଯିଏ, ତାକୁ ବ୍ୟକ୍ତକରୁଚନ୍ତି ଆରିଷ୍ଟୋଟ୍ଲ-ଶିଷ୍ୟ ପ୍ଲୋଟିନସ୍ (ଖ୍ରୀ. ୨୦୪-୭୦) : The one is perfect because it seeks for nothing, and possesses nothing, and has need for nothing; and being perfect, it overflows, and thus its superabundance produces an Other..... Whenever anything reaches its own perfection, we see that it cannot endure to remain in itself, but generates and produces some other thing. Not only beings have the power of choice, but also those which are by nature incapable of choice, and even inanimate things, send forth as much of themselves as they can; thus fire emits heat and snow cold and drugs act upon other things... How then should the Most Perfect Being and the First Good remain shut up in itself, as though it were jealous or impotent--itself the potency of all things ?... something must therefore be begotten of it.

ଈଶ୍ୱରତ୍ୱ,ତେଣୁ ଏକ ପରିମାଣ ଏବଂ ସେ ପରିମାଣ ଏତେ ପ୍ରଚୁର ଯେ ଉଛୁଳିପଡ଼ି ସୃଷ୍ଟିକରେ 'ଅପର' କିଛି, ନିଆଁ ଯେପରି ସୃଷ୍ଟିକରେ ତାପ କିମ୍ବା ତୁଷାର ସୃଷ୍ଟିକରେ ଶୀତ । ଅରବିନ୍ଦ ତାକୁ କହିଚନ୍ତି ଡିଭାଇନ୍ ଗ୍ରେସ୍ ବା ଦିବ୍ୟକୃପା, ଯା ମୂକଂ କରୋତି ବାଚାଳଂ/ପଙ୍ଗୁଂ ଲଂଘୟେତ୍ ଗିରିମ୍ । ସେ କୃପା ଅଧୋମୁଖ ତ୍ରିଭୁଜ, ତା ସକାଶେ ଉଦ୍‌ଗ୍ରୀବ ଜୀବପିଣ୍ଡ ଊର୍ଦ୍ଧ୍ୱମୁଖ ତ୍ରିଭୁଜ, ଉଭୟର ଇଉନିଟି ଅତିମାନସ । ଅର୍ଥାତ୍, ଏଇ ବାଟରେ ସ୍ଥାବର-ଜଙ୍ଗମ 'ଅଂଶଗ୍ରହଣକରେ' ଦେବତ୍ୱରେ, ଯା ଅପରିସୀମ ଓ ଚିରପ୍ରବହମାନ । ଏବଂ ଆତ୍ମାର ସାମର୍ଥ୍ୟ ଅନୁସାରେ ସ୍ଥିରହୁଏ ଅଂଶଗ୍ରହଣର ଅନୁପାତ ଏବଂ ଅଂଶଗ୍ରହଣ କରୁକରୁଁ ଜୀବ-ନିର୍ଜୀବ ଉପଲବ୍ଧିକରନ୍ତି ପୂର୍ଣ୍ଣମାତ୍ରାରେ ସହଜାତ ସମ୍ଭାବନା, ବିକମିଙ୍ଗ୍ । କିନ୍ତୁ ସେ ସମ୍ଭାବନାର ମଧ ଅନ୍ତ ନାହିଁ ଯେହେତୁ ଈଶ୍ୱରପ୍ରାପ୍ତିହିଁ ଚରମ ଲକ୍ଷ୍ୟ । ମାର୍କ୍ସ, ଯିଏ ଗ୍ରୀକ୍‌ଦର୍ଶନରେ କରିଥିଲେ ଡକ୍ଟରେଟ୍, ଭାବିଚନ୍ତି ଅନ୍ୟ ରକମ । ମଣିଷ ଭିତରେ ଯୋଉ ସମ୍ଭାବନା ନିହିତ ଅଛି, ସେ ସମ୍ଭାବନା ତାକୁ ଠେଲିନେଇ କୋଉଠି ଠେକାଇବ, କଳ୍ପନାଜଳ୍ପନା ଖାଲି ବୌଦ୍ଧିକ ଆଳସ୍ୟ । ବାଟ ଦେଖାଇପାରେ ଏକମାତ୍ର ଇତିହାସ । ଜାଁ ପୋଲ୍ ସାର୍ତ୍ର, ସେଥିପାଇଁ ମାର୍କ୍ସଚିନ୍ତାକୁ ଅଭିହିତ କରିଚନ୍ତି, limitless horizon । ଭାରତରେ ଭାବିଛୁଁ, ଆତ୍ମା ନିମଜ୍ଜିତ

ହୋଇଯାଏ ପରମାତ୍ମାରେ, ମୁକ୍ତହୋଇଯାଏ ଜନ୍ମ-ମରଣ ପାକଚକ୍ରରୁ । ତାକୁ ହିଁ କୁହାଯାଏ ଈଶ୍ୱରପ୍ରାପ୍ତି, ମାତ୍ର ଆରିସ୍ତୋଟ୍ଲଙ୍କ ଚିନ୍ତା (ମେଟାଫିଜିକ୍ସ)ରେ ସୃଷ୍ଟପଦାର୍ଥ ସୃଷ୍ଟିକର୍ତ୍ତା ଅଭିମୁଖରେ ଚାଲିଥାଏ ଯୁଗଯୁଗାନ୍ତର, ଭଗବାନଙ୍କ ଅସ୍ତିତ୍ୱରେ ନିମଜ୍ଜିତହେବା ତାର ସାଧାତୀତ, ଅଂଶ ଗ୍ରହଣ କରିପାରେ କେବଳ । ମାର୍କୋବିୟସ୍ ଦୁଇଟି ଉପମା ସାହାଯ୍ୟରେ ବୁଝାଇବାକୁ ଚେଷ୍ଟାକରିଚନ୍ତି : ଗୋଟିଏ ଉପମା, ଉପରୁ ତଳକୁ ଝୁଲୁଥିବା ଜଞ୍ଜିର,ଅନ୍ୟଟି ଜଞ୍ଜିରର ପ୍ରତିଟି ଶିକୁଳି : ସତେଅବା ଗୋଟିଏ ଗୋଟିଏ ଦର୍ପଣ : Since from the Supreme God Mind arises, and from Mind, Soul, and since this in turn creates all subsequent things and fills them all with life, and since this single radiance illumines all and is reflected in each, as a single face might be reflected in many mirrors placed in a series and since all things follow in continuous succession, degenerating in sequence to the very bottom of the series, the attentive observer will discover a connection of parts, from the Supreme God down to the last dregs of things, mutually linked together and without a break. And this is Homer's golden chain, which God, he says, bade hang down from heaven to earth.

ଆରିସ୍ତୋଟ୍ଲ କିନ୍ତୁ ଭଗବାନଙ୍କର କୋଉହେଲେ ପ୍ରେଡିକେଇଟ୍‌ରେ ଅସ୍ତିତ୍ୱ ସ୍ୱୀକାର କରିନାହାନ୍ତି; ନଚେତ୍ କହିଥାନ୍ତା, ଜଗତ୍ ପ୍ରତି ଭଗବାନଙ୍କ ଅନୁକମ୍ପା ବ୍ୟବସ୍ଥାର ଆବଶ୍ୟକ ସର୍ତ୍ତ, ନେସେସିଟି । କିମ୍ୱା ଭଗବାନ କଣ କରିବେ ନକରିବେ, ସ୍ଥିରକରିବା 'ଫ୍ରିଡମ୍' ଏକମାତ୍ର ଭଗବାନଙ୍କର । ପ୍ରେଡିକେଇଟ୍ ସ୍ୱୀକାରକଲେ କିନ୍ତୁ ଭଗବାନ ହୋଇଯିବେ ସଂଜ୍ଞାଧୀନ । ମେଟାଫିଜିକ୍ସ ବାଟଛାଡ଼ିଦେବ ଡାୟଲେକ୍ଟିକ୍ସ-କୁ । କିନ୍ତୁ ସଂସାରରେ ଯେ ଏତେ ଅସାମ୍ୟ, ଏତେ କଷଣ, କେମିତି ହୋଇପାରେ ମଙ୍ଗଳମୟ ଭଗବାନଙ୍କ ଭିଆଣ ? ପ୍ଲୋଟିନସ୍ ଜବାବ୍ ଦେଇଚନ୍ତି, it was necessary according to the nature of things that it should be so । ଅସାମ୍ୟ ନହେଲେ ରହିଲା ବିବିଧତା ଆଇଡିଆଟାକୁ ବଞ୍ଚାଇରଖିବ ବୋଲି, କିନ୍ତୁ ଅମଙ୍ଗଳ ବା ଇଭିଲ୍ ରହିବ କାହିଁକି ? ପ୍ଲୋଟିନସ୍ ଫେର୍ କହିଚନ୍ତି , He who finds fault with the nature of the universe does not know what he does,

not whither his arrogance is leading him. The reason is that men know not the successive grades of being, first, second, third and so on continually until the last is reached.... We ought not to demand that all shall be good, nor hastily complain because this is not possible.

How, if there is to be a multiplicity of forms, can one thing be worse unless another is better, or one be better unless another is worse?.... Those who would eliminate the worse from the universe would eliminate Providence itself......It is the cosmic Reason that in accordance with rationality produces the things that are called evils, since it did not wish all things to be equally good.... Thus the Reason did not make gods only, but first gods, then spirits, the second natures and then men, and then animals in a continuous series – not through envy, but because its rational nature contains an intellectual variety. But we are like men who, knowing little about painting, blame the artist because the colours in his picture are not all beautiful - not seeing that he has given to each part what was appropriate to it. And the cities which have the best Governments are not those in which all citizens are equal. Or we are like one who should complain of a tragedy because it includes among its characters, not heroes only, but also slaves and peasants who speak incorrectly. But to eliminate these low characters would be to spoil the beauty of the whole; and it is by means of them that it becomes full (=complete)। ଅର୍ଥାତ୍,କିଛି ପ୍ରାଣୀଙ୍କର ଶିଙ୍ଗ ଅଛି ବୋଲି, ସବୁ ପ୍ରାଣୀଙ୍କର ଶିଙ୍ଗ ରହିବ, ଯିଏ ଏ ଦାବିକରେ, ସୃଷ୍ଟିଶୃଙ୍ଖଳାରେ ଅମଙ୍ଗଳ କି ଅସାମ୍ୟର ଯେ ଯୁକ୍ତିସଙ୍ଗତ ଭୂମିକା ଅଛି, ଭୁଲିଯାଏ ବେମାଲୁମ୍ । ଅନ୍ୟ ଶବ୍ଦରେ, ଈଶ୍ୱରସୃଷ୍ଟ ଜଗତ୍‌ଶୃଙ୍ଖଳା ଏକ ମାପକାଠି; ସେ ମାପକାଠି ଦେଖାଇଦେଇପାରେ ଚେତନାର ମାତ୍ରା ଏବଂ ତଦ୍ୱାରା ବିବିଧତା, ପାର୍ଥକ୍ୟ ଓ ସୀମାବଦ୍ଧତା । ସେଇ ମାପକାଠିରେ, ଅନ୍ୟ ସକଳ ଜିନିଷ ଭଳି, ମନୁଷ୍ୟ ଏକ ନିର୍ଦ୍ଦିଷ୍ଟ ବିନ୍ଦୁ ମାତ୍ର । କାହିଁକିନା, ଈଶ୍ୱର ଯେହେତୁ ସ୍ୱୟଂ ପରିପୂର୍ଣ୍ଣତା, ମାନଦଣ୍ଡର କୌଣସି ବିନ୍ଦୁ କେବେ ହୋଇପାରେନା ଶୂନ୍ୟସ୍ଥାନ (=ଭୟଦ୍) । ହରିଣକୁ

ବାଘ ଖାଉଚି, ମନେହୋଇପାରେ ଅମଙ୍ଗଳ; ମାତ୍ର ହରିଣ କି ବାଘ ଆଦୌ ନଥିବା ଅପେକ୍ଷା ଗୋଟାକ ଯଦି ଅନ୍ୟଟାର ଭକ୍ଷ୍ୟହୁଏ, ସୃଷ୍ଟିର ପୂର୍ଣ୍ଣତା ରହିବ ଅକ୍ଷତ । କାହିଁକିନା, ସବୁରକମ ଜୀବ ଓ ଜଡ଼ ଭିତରେ ନିହିତ ରହିଛି ସ୍ୱଭାବ । ଖାଦ୍ୟ ଯେମିତି, ଖାଦକ ସେମିତି, ପୂର୍ଣ୍ଣତା ଉପଲବ୍ଧି ପାଇଁ ଆବଶ୍ୟକ ସର୍ତ୍ତ । କାହିଁକିନା, ଇତରତ୍ୱ ବା ଅଦର୍‌ନେସ୍ ଉତ୍ପନ୍ନକରିବା (ପରସ୍ପର ବିରୁଦ୍ଧ ସତ୍ତାକୁ ଜନ୍ମଦେବା) ହିଁ ଜଗଦ୍‌ସୃଷ୍ଟିର ଏସେନ୍ସ (ସାରବତ୍ତା) ।

ଏଇ ଯଦି ଆରିଷ୍ଟୋଟ୍‌ଲ୍‌ଙ୍କ ଦିବ୍ୟ ଜଗତ୍, ତାର ପରିବର୍ତ୍ତନ କାମନାକରିବା ଆକାଶକୁସୁମ ଚୟନ, କାହିଁକିନା,ମେଟାଫିଜିକ୍ସ ପ୍ରତିପନ୍ନକରେ ସ୍ଥିତାବସ୍ଥାକୁ ଯୁକ୍ତିସଙ୍ଗତ । ମାତ୍ର ଆରିଷ୍ଟୋଟ୍‌ଲ୍‌ଙ୍କ ବହୁଯୁଗ ଉତାରୁ ମାର୍କ୍ସ ଆସି କହିଲେ, ଏତେକାଳ ନାନାଦି କୌଶଳରେ ଫିଲଜଫର୍ ବ୍ୟାଖ୍ୟାକରିଚନ୍ତି ପୃଥିବୀକୁ, ଏକ୍ଷଣି ଆଉ ଟୀକାଟୀପ୍ପଣୀ ନୁହେଁ, ବଦଳାଇବାକୁ ପଡ଼ିବ ପୃଥିବୀକୁ । ଅର୍ଥାତ୍, 'ସତ୍ୟ' କୋଉ ଅନ୍ତର୍ଗୂଢ଼ ରହସ୍ୟ (=ଏସେନ୍ସ) ନୁହେଁ, ସତ୍ୟର ଅବସ୍ଥିତି ଯାପିତ ଜୀବନରେ, ଏବଂ ଯାପିତ ଜୀବନ ମଧ ବିମୂର୍ତ୍ତ କୋଉ 'ଆଇଡିଆ' ହୋଇପାରେନା । ଦାସପ୍ରଥା ଯଦି ଘୃଣ୍ୟ, ଖ୍ରୀଷ୍ଟପୂର୍ବ ଚତୁର୍ଥ ଶକତରେ ସୁଦ୍ଧା ଦାସପ୍ରଥା ଖାଲି ଆଇଡିଆ ନଥିଲା, ଥିଲା ସଂସ୍କୃତିରୁ ଅବିଚ୍ଛେଦ୍ୟ । ସେ ସଂସ୍କୃତି ଇନ୍ଦ୍ରିୟଗ୍ରାହ୍ୟ ଜୀବନଯାତ୍ରା, ସୋକ୍ରଟିଜ୍ ପ୍ଲାଟୋ ଆରିଷ୍ଟୋଟ୍‌ଲ୍ ଯୋଉଥିରେ ସଶରୀର 'ଅଂଶଗ୍ରହଣକରିଚନ୍ତି' ଆମୃତ୍ୟୁ, ଏବଂ ସେ ଅଂଶଗ୍ରହଣ ମେଟାଫିଜିକ୍ସ କି ଏଥିକ୍ସ ନୁହେଁ, ସେ ଅଂଶଗ୍ରହଣ ସମ୍ପତ୍ତିର ବ୍ୟକ୍ତିଗତ ମାଲିକାନାକୁ ଏପରି ବାଗବର୍ଗରେ ଉପଯୋଗ ଯେ ସମାଜର ଅଧିକାଂଶ ଲୋକ ରହିଥିବେ କ୍ରୀତଦାସ କିମ୍ବା ଭୂମିଦାସ; ଅଥବା ପରରାଜ୍ୟ ଆକ୍ରମଣ ସକାଶେ ସେମାନଙ୍କୁ ଏପରି ବ୍ୟବହାର ଯେ ସସାଗରା ମେଦିନୀ ହୋଇପାରିବ ଗ୍ରୀକ୍‌ଶାସିତ ସାମ୍ରାଜ୍ୟ । ଅନ୍ୟ ଶବ୍ଦରେ, ପ୍ରତ୍ୟକ୍ଷ ଉତ୍ପାଦକଙ୍କୁ ଉତ୍ପାଦନର ସାଧନଗୁଡ଼ିକରୁ ନିର୍ବାସିତକରି ଉଦ୍‌ବୃତ୍ତମୂଲ୍ୟର ସ୍ତୂପୀକରଣ, ଏବଂ ସେଇ ପ୍ରକ୍ରିୟାରେ, ନରହତ୍ୟା ଲୁଟ୍‌ତରାଜ ଅବମାନନା ଓ ଅତ୍ୟାଚାରକୁ ପ୍ରଶ୍ରୟ । କି ପ୍ରକାର ଫିଲଜଫି ପ୍ରସବକରିପାରେ ସେଭଳି ଏକ ଉନ୍ନତ ସମାଜ ! ଆଶ୍ଚର୍ଯ୍ୟହେବା ତେଣୁ ଅନୁଚିତ ଯେ ରସେଲ୍ କହିବେ, ଆରିଷ୍ଟୋଟ୍‌ଲ୍‌ଙ୍କ ପ୍ରାଣୀବିଦ୍ୟା-ଆଧାରିତ ମେଟାଫିଜିକ୍ସ ଦୁଇହଜାର ବର୍ଷ ପର୍ଯ୍ୟନ୍ତ, ମଧ୍ୟଯୁଗର ଖ୍ରୀଷ୍ଟଧର୍ମ ଭଳି ବିଜ୍ଞାନ ଓ ଦର୍ଶନଚିନ୍ତାର ଅଗ୍ରଗତିକୁ କରିରଖିଥିଲା ଅବରୁଦ୍ଧ । ଇଉରୋପରେ ଅବଶ୍ୟ ।

ମାର୍କ୍ସଙ୍କ ଯୋଉ ଉକ୍ତି ଉଦ୍ଧାରକରିଚି, ଲଣ୍ଡନ୍ ସହରରେ ସ୍ଥାପିତ ତାଙ୍କ ମୂର୍ତ୍ତି ତଳେ ହୋଇଚି ଖୋଦିତ, କାହିଁକିନା, ଯା ପ୍ରତୀୟମାନ, ଦାର୍ଶନିକ ଧରିନେଇଚନ୍ତି, ସେହି କେବଳ ସାରବସ୍ତୁ । ତା ହେଲେ, ପୃଥିବୀକୁ ବଦଳାଇବା, ଅର୍ଥାତ୍ ଯୋଉ ଭ୍ରାନ୍ତ

ଚେତନା ନିଜ ଅନ୍ତର୍ଗୂଢ଼ ସାମର୍ଥ୍ୟକୁ ଦେଖିବାକୁ ଦେଉନାହିଁ, ସାରବସ୍ତୁ ବା ଏସେନ୍ସକୁ ଢାଙ୍କିପକାଉଛି ପ୍ରତୀୟମାନତା (=ଆପିଏରେନ୍ସ), ତାକୁ ମଣିଷ ଆବିଷ୍କାରକରିବ କେମିତି ? ବ୍ୟାଖ୍ୟା/ଭାଷ୍ୟ ତେଣୁ ସହାୟକ ନୁହେଁ, ଯଦିଓ ବ୍ୟାଖ୍ୟା/ଭାଷ୍ୟ ମଧ୍ୟ ଦାବିକରିପାରେ ଗୁରୁତ୍ୱ; କିନ୍ତୁ ଅସଲ କର୍ତ୍ତବ୍ୟ ନିଜ ଅନ୍ତର୍ନିହିତ ଶକ୍ତିକୁ ଉପଲବ୍ଧି, ଯା ଏକ କର୍ମଭାର । କାହିଁକିନା, ନିହିତଶକ୍ତି ଦ୍ୱାରା ନିଜ ସଂଜ୍ଞା ନିର୍ଦ୍ଧାରଣ କରିବାକୁ ମଣିଷ ହିଁ ଏକମାତ୍ର ସମର୍ଥ । ସେଇ ସାମର୍ଥ୍ୟକୁ ଉପଲବ୍ଧିର ଅନ୍ୟନାମ 'ଚେତନା'; ଯୋଉ ଚେତନା ପ୍ରତୀୟମାନତାକୁ କରିପାରେ ବିଦୀର୍ଣ୍ଣ, ସାରବସ୍ତୁକୁ ଉନ୍ମୋଚନ ।





**ରବୀନ୍ଦ୍ର ପ୍ରସାଦ ପଣ୍ଡା**

ଦ୍ୟାବା ପୃଥିବୀକୁ ଅଧିଗତ କରିବାକୁ ମଣିଷର ଉତ୍‌କଣ୍ଠା ସହଜାତ । କିନ୍ତୁ ଅଲୌକିକ କି ଚମକପ୍ରଦ ରହସ୍ୟ-ଉଦ୍‌ଘାଟନ ବାଟଦେଇ ନୁହେଁ, ଯୁକ୍ତି ହିଁ କରିପାରେ ପ୍ରତୀୟମାନ ଜଗତର ଅନ୍ତର୍ଭେଦ । କାହିଁକିନା, ଯା ପ୍ରତୀୟମାନ, ତା ପ୍ରକୃତ ନୁହେଁ । ଏଇ ଉପଲବ୍ଧିରୁ ଆରମ୍ଭ ତାଙ୍କ ଅନୁସନ୍ଧାନ । ବିଜ୍ଞାନ ମଧ୍ୟ ପ୍ରତୀୟମାନ ପ୍ରପଞ୍ଚକୁ ମନେକରେନା ପ୍ରକୃତ, କାହିଁକିନା, କ୍ଷଣକୁ କ୍ଷଣ ବଦଳିଯାଉଛି ପ୍ରତୀୟମାନ । ନିର୍ଦ୍ଦିଷ୍ଟକୁ ପର୍ଯ୍ୟବେକ୍ଷଣ କରି ବସ୍ତୁଜଗତର ସାଧାରଣ ନିୟମଗୁଡ଼ିକୁ ଠାବକରିବାକୁ ଚେଷ୍ଟାକରେ । ଆରିଷ୍ଟୋଟଲ୍ ମଧ୍ୟ ସେଇ ବାଟରେ ଯାଇଚନ୍ତି, ମାତ୍ର ପ୍ରକୃତ ବୋଲି ଠାବକରିଚନ୍ତି ଯାହାକୁ, ବିଜ୍ଞାନ କହିବ ତାକୁ ମେଟାଫିଜିକ୍ସ ବା ଅଧିବିଦ୍ୟା; ମଣିଷର ଚେତନାକୁ ଯୋଉଥିରୁ ମୁକ୍ତକରିବାକୁ କାର୍ଲ ମାର୍କ୍ସଙ୍କ ପାଖରୁ ଧାଡ଼ିଲାଗିଚି ଜାକ୍ ଦେରିଦାଙ୍କ ପର୍ଯ୍ୟନ୍ତ । ସପ୍ତଦଶ ଶତକରେ ଅବଶ୍ୟ ଗାଲିଲେଓଙ୍କ ଜ୍ୟୋତିର୍ବିଦ୍ୟା ଭାଙ୍ଗିଦେଇଚି ଆରିଷ୍ଟୋଟଲ୍‌ଙ୍କ ଅଧିବିଦ୍ୟାର କର୍ତ୍ତୃତ୍ୱ; ମାତ୍ର ପ୍ରାୟ ଦୁଇହଜାର ବର୍ଷ ଧରି ଯୋଉ ଭାବବାଦ ଆଚ୍ଛନ୍ନ କରି ରଖିଥିଲା । ଇଉରୋପର ମନୋଜଗତ, ତା ପ୍ରଭାବ ମଳୀନ ହୋଇପାରେନା ଅକସ୍ମାତ୍ । ନହେଲେ, କ୍ୟାପିଟାଲିସ୍ଟ ବା ପ୍ରତୀୟମାନ ଧନତନ୍ତ୍ର କାହଁକି ଦିଶୁଚି 'ପ୍ରକୃତ'? କାହିଁକି ତାର ଅନ୍ତର୍ଭେଦ କରିପାରୁନାହିଁ ନିତ୍ୟନିଷ୍ପେଷିତ ଶ୍ରମଜୀବୀ, ଯେପରି କରିପାରିନାହିଁ ଆରିଷ୍ଟୋଟଲ୍‌ଙ୍କ ଜୀବଦ୍ଦଶାରେ, କ୍ରୀତଦାସ କି ଭୂମିଦାସ ? ଅଥଚ ଆରିଷ୍ଟୋଟଲ୍ କହୁଚନ୍ତି, ପ୍ରତୀୟମାନର ଅନ୍ତର୍ଭେଦ କରିବା ଶକ୍ତି ପ୍ରତ୍ୟେକ ଜୀବପିଣ୍ଡର ଅନ୍ତର୍ଗୂଢ଼ । ସେଇ ଶକ୍ତିକୁ କହୁଛୁଁ ଆଜି ଚେତନା । ମାତ୍ର ତାକୁ ଅର୍ଜନକରିବା ଏକ କର୍ମକାଣ୍ଡ, ଧ୍ୟାନ କି ବିଶୁଦ୍ଧ ମନନ ନୁହେଁ, ଏକେବାରେ ଗଳଦ୍‌ଘର୍ମ ପ୍ରୟାସ, କାହିଁକିନା, ବିନା ମତଲବରେ ମଣିଷ କୁଟାଖଣ୍ଡକୁ ବି ଦିଖଣ୍ଡ କରେନା । ଅଥଚ ଅଧିବିଦ୍ୟା କହୁଚି, ଗଡ୍ ସେଇଡ୍ ଲେଟ୍ ଦେୟାର ବି ଲାଇଟ୍ ଆଣ୍ଡ୍ ଦେୟାର୍ ୱାଜ୍ ଲାଇଟ୍ । ତା ହେଲେ, ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାରକଲେ କେମିତି ନିଉଟନ୍ ? ଏ ବୈପରୀତ୍ୟକୁ ବିଗଳିତ କରିପାରିବା ମାନେ 'ପ୍ରକୃତ' ଓ 'ପ୍ରତୀୟମାନ' ମଧ୍ୟସ୍ଥ ବିବାଦଭଂଜନ । ଏବଂ ସଂଗ୍ରାମୀ ଚେତନା ପାଇଁ ଅପରନ୍ତି ସାହାଭରସା । ଇଂରେଜୀରେ ରିସୋର୍ସ ଅବ୍ ହୋପ୍ ।